# କବିତାର ଉଦ୍‌ଭାସନ ଓ ନବ୍ୟାଲୋଚନା

ଡକ୍ଟର ପ୍ରତିଭା ଶତପଥୀ

ବିଦ୍ୟାପୁରୀ

KABITĀRA UDVĀSANA O NABYĀLOCHANĀ
By Dr. Prativa Satapathy

Published by Vidyapuri, Balubazar, Cuttack 753 002

ISBN 978-81-7411-960-5

ପ୍ରଥମ ପ୍ରକାଶ ଫେବୃଆରୀ ୨୦୧୫
ଦ୍ୱିତୀୟ ମୁଦ୍ରଣ ଫେବୃଆରୀ ୨୦୨୦

ପ୍ରକାଶକ
ଜୀବାନନ୍ଦ ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ପ୍ରଚ୍ଛଦ
ବିଜୟ କୁମାର ପ୍ରଧାନ

ମୁଦ୍ରଣ
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୧୧୦-୦୦

# ଆପଣମାନଙ୍କ ପାଇଁ

ଏକଦା କବିତା ପତ୍ରିକାଟିଏ କରିବାର ଝୁଙ୍କ୍‌ରୁ ୨୦୦୩ ମସିହା ଆରମ୍ଭରେ ସଂପାଦନା କଲି ସଂଭ୍ରାନ୍ତ କବିତା ପତ୍ରିକା 'ଉଦ୍‌ଭାସ'କୁ । ଓଡ଼ିଶାର କବିକୁଳ ଓ ପାଠକଗଣ ଆନନ୍ଦିତ ଓ ଆଶାନ୍ୱିତ ହୋଇଥିଲେ । ସୁନ୍ଦର, ମାର୍ଜିତ, ପ୍ରାୟତଃ ନିର୍ଭୁଲ ଏହାର ମୁଦ୍ରଣ ଓ ବିଷୟ ଚୟନ ଓଡ଼ିଆ ପତ୍ରିକାମାନଙ୍କ ମଧ୍ୟରେ ବିଶିଷ୍ଟତା ଲାଭ କରିଥିଲା । ମାତ୍ର ୮ ବର୍ଷର ପ୍ରକାଶନ ପରେ ଆଉ ଏହାର ପ୍ରକାଶନ ସମ୍ଭବ ହୋଇପାରିଲା ନାହିଁ । ପ୍ରଖ୍ୟାତ ଓଡ଼ିଆ କବି, ଲେଖକ, ପାଠକ ଏହାର ସଂପାଦକୀୟର ଅନନ୍ୟତା ଦର୍ଶାଇ ଏଗୁଡ଼ିକ ଏକତ୍ର ପ୍ରକାଶ କରିବାପାଇଁ ପରାମର୍ଶ ଦେଇଥିଲେ ।

କେତେକ ଯୁବକବିଙ୍କ କବିତାର ପ୍ରାୟୋଗିକ ଆଲୋଚନା ମୁଁ 'ମେଘ' ନାମକ ଏକ ସାମୟିକ ପତ୍ରିକାରେ ଲେଖିଥିଲି । ପରବର୍ତ୍ତୀ ସମୟରେ ଘଟଣାକ୍ରମେ ଚାରି ଜଣ ପ୍ରତିଷ୍ଠିତ କବିଙ୍କ କବିତାର ପ୍ରାୟୋଗିକ ଆଲୋଚନା ମଧ୍ୟ ଏଥି ସହିତ ସଂଯୁକ୍ତ କରାଗଲା । ପୁନଶ୍ଚ କବିର ଅନ୍ତର୍ମନ ଓ କବିତାର ରହସ୍ୟ ଉନ୍ମୋଚନ କରିବାର ଅଭିପ୍ରାୟ ହେତୁ କେତୋଟି ପ୍ରବନ୍ଧ ରଚନା କଲି ଓ ଏଗୁଡ଼ିକ ପାଠକୀୟ ଆଦୃତି ଲାଭ କଲା । ଏହି ଛଅ ଗୋଟି ପ୍ରବନ୍ଧକୁ 'ନବ୍ୟାଲୋଚନା' ନାମରେ ସ୍ଥାନିତ କରିଅଛି । କବିତାକୁ ପଢୁ ପଢୁ ବୁଝୁ ବୁଝୁ ଯେଉଁ ବିହ୍ୱଳତା ଓ ହୃତ୍-ସ୍ପନ୍ଦନ ମୋତେ ଅଭିଭୂତ କରିଥିଲା, ଯେଉଁ ବିସ୍ତାରର ଅନ୍ତଃଦର୍ଶନ ମୁଁ ପ୍ରାପ୍ତ ହୋଇଥିଲି, ସେଗୁଡ଼ିକୁ ମୁଁ ଏଠାରେ ଉପସ୍ଥାପନ କରିବାର ପ୍ରୟାସ କରିଛି । ମୁଁ ଭୁଲି ନାହିଁ ଯେ, ନୀରବତା ହିଁ ସର୍ବଶ୍ରେଷ୍ଠ ଶକ୍ତି ଓ ଏହାର ପ୍ରତିବାଦୀ କେହି ନାହିଁ । ଏକଥା ମଧ୍ୟ ଜାଣେ, କବିତାର ଦିଗ୍‌ବିଦିଗ ପ୍ରସାରକୁ ମୋର କତିପୟ ଆଲୋଚନା, ଏପରି କିଛି ନୂତନ ଆଲୋକରେ ଉଦ୍ଭାସିତ କରିପାରିବା ଏକ ଆସ୍ପର୍ଦ୍ଧା । ତଥାପି, କବିତା ପ୍ରତି ଅବିକଳ୍ପ ଆନ୍ତରିକତା ହେତୁ ୩ଗୋଟି କବିତା ପୁସ୍ତକର ସମୀକ୍ଷା କରିଛି । ତେବେ ଏ ସମସ୍ତ କବିତା ଓ ଏହାର ସର୍ଜକମାନଙ୍କ ପ୍ରତି ମୋର ଘନିଷ୍ଠ ଶ୍ରଦ୍ଧାହିଁ ଏଠାରେ ଅଭିବ୍ୟକ୍ତ ହୋଇଛି ।

ଶେଷରେ ଏହି ପୁସ୍ତକର ପ୍ରକାଶନ ନିମିତ୍ତ ବିଶିଷ୍ଟ ପ୍ରକାଶନ ସଂସ୍ଥା ବିଦ୍ୟାପୁରୀ ଓ ସୁହୃଦ୍ ପୀତାମ୍ବର ମିଶ୍ରଙ୍କୁ ଧନ୍ୟବାଦ ଜଣାଉଛି ।

୧ ଜାନୁଆରୀ ୨୦୧୫

**ପ୍ରତିଭା ଶତପଥୀ**

# ସୂଚୀ



□□□

# ଉଦ୍‌ଭାସନ

॥ ଏକ ॥

'ଉଦ୍‌ଭାସ'ର ଜନ୍ମଲଗ୍ନରେ ଆକାଶରେ କେଉଁ ନକ୍ଷତ୍ରର ଆଧିପତ୍ୟ ରହିଛି – ମୁହୂର୍ତ୍ତଟି ଅଭିଜିତ କି ନାହିଁ; ଜାଣେନା । ତଥାପି ମନେହେଉଛି 'ଉଦ୍‌ଭାସ'ର ଆଭା ଅଭିନବ । ନଗ୍ନସତ୍ୟ ପରି ଏକଥା ପ୍ରତୀତ ହେଉଛି ଯେ, କବିତା ପତ୍ରିକା, ପୁଣି ଏ ଯୁଗରେ; ଯେତେବେଳେ ପୁସ୍ତକ ପଠନ ପ୍ରତି ଚାରିଆଡୁ ଘୋର ଆକ୍ରମଣ ! ଏ ଦିଗରେ ମୁଁ ଅବଶ୍ୟ ସ୍ୱପ୍ନପ୍ରବଣ, ବାସ୍ତବତାର କ୍ଷତକୁ ସ୍ୱପ୍ନର ପ୍ରଲେପ ମାଧ୍ୟମରେ ଆରୋଗ୍ୟ କରାଯାଇପାରେ ବୋଲି ବିଶ୍ୱାସ କରେ । ତେଣୁ ଏହି ପତ୍ରିକାର ପରିକଳ୍ପନା । କବିତା ସହ ଦୀର୍ଘ ୪୦ ବର୍ଷର ସମ୍ପୃକ୍ତି ସଂଜାତ, ଏହା ଏକ ପରିଶୀଳିତ କଳ୍ପନା–ବାସ୍ତବ ହେବାରେ ଏହାର ସାମର୍ଥ୍ୟ କମ୍ ହୋଇ ନ ପାରେ !

ଅନେକ ଭଲ କବିତା ବୃହଦାକାର ପତ୍ରିକାର କଳେବର ମଧ୍ୟରେ ନିଜ ସଂକ୍ଷିପ୍ତ ଆୟତନକୁ ନେଇ ହୁଏତ ନିଜକୁ ଜାହିର୍ କରିବାରେ ଅସୁବିଧା ଭୋଗୁଛନ୍ତି । କ୍ଷୁଦ୍ରାୟତନ, କେବଳ କବିତା; ପତ୍ରିକାଟିରେ ସ୍ଥାନିତ ହେଲେ, କବିତାଗୁଡ଼ିକ ହୁଏତ ପାଠକକୁ ନିବିଷ୍ଟ କରିପାରିବ । ଅଥଚ, ମୁଁ ନିଜେ ଭଲରୂପେ ବୁଝିଛି ଯେ, ଭଲ କବିତା ବିଜୁଳିପରି ଚମକିଉଠି ପାଠକକୁ ଟାଣିନେଇଯାଏ । ତଥାପି କେବଳ କବିତାକୁ ଗୁରୁତ୍ୱ ଦେଇ ତା'ର ସଂକ୍ଷିପ୍ତପଣକୁ ସ୍ୱୀକାର କରି, ତା'ର ସ୍ୱାଭାବିକ ନୀରବତାକୁ ମୁଖର କରିବା ଦିଗରେ ସମ୍ପାଦନାମଣ୍ଡଳୀର ଯେ ଏକ ପଦକ୍ଷେପ । ସ୍ୱତନ୍ତ୍ର କବିତା ପତ୍ରିକାଟିଏ ତିଆରି କରିବାର ଅନ୍ୟ ଏକ କାରଣ ହେଲା, ଅସଂଖ୍ୟ ପତ୍ରିକା ମଧ୍ୟରେ ପ୍ରକାଶିତ ମୁଦ୍ରଣତ୍ରୁଟି ଓ ତଜ୍ଜନିତ କବିତାର ବିକଳାଙ୍ଗପଣ ମୋତେ ଆଘାତ ଦେଇଛି । କବିତାକୁ ମୁଦ୍ରଣ ରାକ୍ଷସ କବଳରୁ ଯଥାସମ୍ଭବ ବଞ୍ଚାଇବା 'ଉଦ୍‌ଭାସ'ର ପ୍ରଥମ ଓ ମୁଖ୍ୟ ଲକ୍ଷ୍ୟ; ଯଦିଓ ଏ ଦିଗରେ ଆମେ କେତେଦୂର ସଫଳ ହେଉଛୁ, ତାହା ସମୟ କହିବ ।

ଏହି ପତ୍ରିକାର ସମ୍ପାଦନାମଣ୍ଡଳୀର ପ୍ରତିଟି ସଦସ୍ୟଙ୍କର ସମ୍ପାଦନା ଦିଗରେ ବେଶ୍ ଅଭିଜ୍ଞତା ରହିଛି । ଭାରତବର୍ଷର କୌଣସି କୌଣସି ବିଶିଷ୍ଟ ଗଳ୍ପ ପତ୍ରିକାରେ

ସୁନିର୍ବାଚିତ କେତେକ କବିତାକୁ ମଧ୍ୟ ସ୍ଥାନିତ କରାଯାଇଥିବା ଦୁର୍ଲକ୍ଷ୍ୟ ନୁହେଁ । ଏହି କାରଣରୁ 'ଉଦ୍‌ଭାସ' ମୂଳତଃ କବିତା ପତ୍ରିକା ଭାବେ ଆତ୍ମପ୍ରକାଶ କରୁଥିଲେ ହେଁ, ନିର୍ବାଚିତ ଗଳ୍ପ କେତୋଟିକୁ ସ୍ଥାନିତ କରିବା କଦାପି ଅବାନ୍ତର ହେବ ନାହିଁ ।

ଏକବିଂଶ ଶତକର ଅଗ୍ରଗତି ପଥରେ ଓଡ଼ିଆ କବିତା ନିଜସ୍ୱ ରୁଚିନିଷ୍ଠ, ଉତ୍ତମ ପରମ୍ପରା ନିମିତ୍ତ ଗର୍ବ କରେ । ସେଥିପାଇଁ ପୁରୋଦୃଷ୍ଟି ସହ ସିଂହାବଲୋକନ କାବ୍ୟଚେତନାକୁ କମ୍ ଉତ୍ସାହଦୀପ୍ତ କରେ ନାହିଁ । ଏହି ଲକ୍ଷ୍ୟରେ କବି ସାରଳା ଦାସଙ୍କଠାରୁ ବିଂଶ ଶତକର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ସମୟ ଖଣ୍ଡ ମଧ୍ୟରେ ସଂରଚିତ କାବ୍ୟାଂଶ ଓ କବିତାଦ୍ୱାରା ଏହି ପତ୍ରିକାର ଅଳ୍ପ କେତୋଟି ପୃଷ୍ଠା ମଣ୍ଡିତ ହେବା ନିମିତ୍ତ ଆମେ ଯୋଜନା କରିଛୁ ।

ଯାହାହେଲେ ବି କବିତାର ପାଠକସଂଖ୍ୟା ସ୍ୱଳ୍ପ । ଏହି ସ୍ୱଳ୍ପତା ନିମିତ୍ତ କେତେଗୋଟି କାରଣ ରହିଛି । କବିତାର ବକ୍ତବ୍ୟ କବିର ନିଜ ସ୍ୱର ଓ କବି ପ୍ରାୟ ନିର୍ଦ୍ଦିଷ୍ଟଭାବେ କାହାକୁ ଉଦ୍ଦେଶ୍ୟ କରି କହେ ନାହିଁ । ପୁଣି କାଳ୍ପନିକ ଜଗତରୁ ଶୁଭୁଥିବା ତା'ର ବିପୁଳ ସ୍ୱର ପ୍ରତି ପାଠକ ମଧ୍ୟରେ ପ୍ରସ୍ତୁତି ରହି ନ ଥାଏ । କବିତାର ସ୍ୱର ପ୍ରାୟ ଅସୀମତାକୁ ପ୍ରକଟ କରୁଥାଏ ଓ ସେଥିପାଇଁ ଏହି ସ୍ୱର ବହିର୍ବିଶ୍ୱଠାରୁ ଅନେକ ଭାବରେ ଅଲଗା । ପୁନଶ୍ଚ, କବିର ଆତ୍ମ-ଆବିଷ୍କାର ବାସ୍ତବତାକୁ ସମୟ ବିଶେଷରେ ଅଧିକ ରହସ୍ୟାଚ୍ଛନ୍ନ କରିପକାଏ । ତେଣୁ ନିର୍ଦ୍ଦିଷ୍ଟ କୌଣସି ଜ୍ଞାନ ଅପେକ୍ଷା କବିତା ମାଧ୍ୟମରେ ସ୍ଫୁରିତ ଅନିର୍ଦ୍ଦିଷ୍ଟ ଏକ ଅବବୋଧ ଭିତରେ ରହିବା ପାଠକକୁ ଅସୁବିଧାଜନକ ମନେହୁଏ । ପ୍ରସିଦ୍ଧ ହିନ୍ଦୀକବି ଦିନ୍‌କର କବିତା ସଂରଚନା ସମ୍ପର୍କରେ କହିଥିଲେ, ''ସ୍ପଷ୍ଟ ଶବ୍ଦ ମତ୍ ଚୁନୋ, ଚୁନୋ ଯୋ ଧୁନ୍ଦିୟାଲୀ ହୈ'' – କବିତାର ଶବ୍ଦ ଅସ୍ପଷ୍ଟ ହେବା ବାଞ୍ଛନୀୟ । ଅବଶ୍ୟ ଏହି 'ଅସ୍ପଷ୍ଟ' ଶବ୍ଦଟିକୁ ବିଶ୍ଳେଷଣ କରିବା ନିମିତ୍ତ ଏକ ବିସ୍ତୃତ ପ୍ରେକ୍ଷାପଟ ଆବଶ୍ୟକ । ତେଣୁ ତାହା ସମୟକ୍ରମେ ଆଲୋଚିତ ହେବ । ତେବେ କବିତାରେ ବ୍ୟବହୃତ ଶବ୍ଦର ଅର୍ଥ ବେଳେବେଳେ ଅଭିଧାର୍ଥଠାରୁ ସିଧାସଳଖ ବିପରୀତ ଅର୍ଥଦ୍ୟୋତକ ହେବା ମଧ୍ୟ ଅଭିନନ୍ଦନୀୟ । କବି ଦାବି କରେ ଯେ, ତା' କବିତା ବହୁ ପାଠକ ପଢ଼ନ୍ତୁ ଓ ପସନ୍ଦ କରନ୍ତୁ । କିନ୍ତୁ ପାଠକ ତା' ଅସ୍ତିତ୍ୱର ନିଜସ୍ୱ ବିଶ୍ୱାସ, ବିଚାର, ରୁଚି, ଆସକ୍ତି ଓ ଧାରଣାକୁ ସଂଯୁକ୍ତ କରି କବିତାଟିକୁ ଗ୍ରହଣ କରିଥାଏ । ତେଣୁ କବିତା ପ୍ରତି ଆଗ୍ରହ ରଖୁଥିବା ବ୍ୟକ୍ତିଙ୍କ ସଂଖ୍ୟା କାଳେ କାଳେ ସୀମିତ । ଏଥିରେ ମର୍ମାହତ ହେବାର କିଛି ନାହିଁ ।

କବିତା ପତ୍ରିକା ପ୍ରତି ମୋର ଆଶଙ୍କାକୁ ଲକ୍ଷ୍ୟକରି ଜଣେ ବିଶିଷ୍ଟ ଲେଖିକା କହିଲେ, ''ମଣିଷ ବିଭିନ୍ନ ଦୁର୍ଦ୍ଦଶା ଭୋଗେ ବୋଲି କ'ଣ ଜନ୍ମ ନିଏ ନାହିଁ ?'' ତଥାପି ଦୀକ୍ଷିତ, ସୁଜାଣ ପାଠକମାନଙ୍କ ସମ୍ମୁଖରେ 'ଉଦ୍‌ଭାସ' ଆତ୍ମପ୍ରକାଶ କରୁଛି । ଯେଉଁ କବି ଲେଖକଗଣ ସ୍ୱରଚନାକୁ 'ଉଦ୍‌ଭାସ'ର ପ୍ରଥମ ସଂଖ୍ୟାରେ ସ୍ଥାନିତ ହେବା ନିମିତ୍ତ ପଠାଇଛନ୍ତି, ସେମାନଙ୍କୁ ମୋର ଅଜସ୍ର ଧନ୍ୟବାଦ । 'ଉଦ୍‌ଭାସ' ତା'ର ପ୍ରଥମ ପଦପାତରେ ଯଦି କିଞ୍ଚିତ୍ ଆଭା ଓ ସଂତୃପ୍ତି ପ୍ରକଟ କରିପାରିଲା, ତେବେ ମୋର ଏ ପ୍ରୟାସ ଧନ୍ୟ ହେବ ।

॥ ଦୁଇ ॥

'ଉଦ୍‌ଭାସ'ର ଦ୍ୱିତୀୟ ସଂଖ୍ୟା କଳେବର ଗ୍ରହଣ କରୁଛି । ଏହି ପରିପ୍ରେକ୍ଷୀରେ ଏହାର ଆଭିମୁଖ୍ୟ ସମ୍ପର୍କରେ ସମ୍ୟକ୍ ସୂଚନା ପ୍ରଦାନ କରିବା ପ୍ରାସଙ୍ଗିକ ମନେ କରୁଛି । ସୁଜାଣ ପାଠକଙ୍କ ମନରେ କିଛି ପ୍ରଶ୍ନ ଉଦ୍ଭିତ ହୋଇଥିବା ମୋ ଦୃଷ୍ଟିକୁ ଆସିଛି । ଓଡ଼ିଆ ଭାଷାରେ, ୧୯୫୦ ପରବର୍ତ୍ତୀ ଓ ୧୯୮୦ ପରବର୍ତ୍ତୀ କାଳରେ ସଂରଚିତ କବିତା ମଧ୍ୟରେ କେତେକ ଭିନ୍ନତା ପରିଲକ୍ଷିତ ହୋଇଛି । ଉପନିବେଶବାଦୀ ପ୍ରଭାବକୁ ପ୍ରତିହତ କରି ଓ ଆଧୁନିକତାର ପ୍ରଚଣ୍ଡ ନିଷ୍ଫଳତାଜନିତ ଅବବୋଧକୁ ପରିତ୍ୟାଗ କରି, ୧୯୮୦ ପରବର୍ତ୍ତୀ କାଳରେ ଯେଉଁ କବିତା ରଚିତ ହୋଇଛି, ତାହା ଉତ୍ତର-ଆଧୁନିକ ଚେତନାର କେତୋଟି ବିଭାବଦ୍ୱାରା ପରିପୁଷ୍ଟ । ଉପନିବେଶବାଦୀ ସଂସ୍କୃତି ଓ ପରାଧୀନ ରାଷ୍ଟ୍ରର ସଂସ୍କୃତି ମଧ୍ୟରେ ହଜି ନ ଯାଇ ସ୍ୱମୂଳଠାରେ ଗୁରୁତ୍ୱାରୋପ କରିବା, ସ୍ୱକୀୟ ଉପାଦାନକୁ ବାଛି ଲୁପ୍ତପ୍ରାୟ ଜୀବନଚର୍ଯ୍ୟାକୁ ସାହିତ୍ୟିକ ପ୍ରତିଷ୍ଠା ଓ ପ୍ରାଧାନ୍ୟ ଦେବା ମାଧ୍ୟମରେ ବିଦେଶୀ ସଂସ୍କୃତି ଓ ଜଗତୀକରଣର ଅଖଣ୍ଡ ପ୍ରଭାବକୁ କ୍ଷୁଣ୍ଣ କରିବା ଏକାଳର କବିତାର ଲକ୍ଷ୍ୟ । ଉତ୍ତର-ଆଧୁନିକ ଚେତନା ଆଧୁନିକ ଚେତନାର ଏକ କ୍ରମବର୍ଦ୍ଧିଷ୍ଣୁ ଅଂଶ ହେଲେହେଁ ଅନେକ ସ୍ଥଳରେ ଏହି ଦୁଇ ଚେତନା ମଧ୍ୟରେ ଭିନ୍ନତା ସୂଚିତ ।

ଇତିହାସ, ମିଥ୍, ଫାଣ୍ଟାସି କବିତାର ଉପାଦାନ ହେଲେହେଁ ମିଥ୍‌ର ଖଣ୍ଡାଂଶ ଉତ୍ତର-ଆଧୁନିକ କବିତାରେ ଗୁରୁତ୍ୱ ଲାଭ କରିଛି । ପଦେ କଥା, ଧାରେ ଚାହାଣି, ବିଜୁଳି ପରି ଝକ୍ କରି ଅନ୍ତର୍ହିତ ହେବାର ଶାଣିତତା, ଉତ୍ତର-ଆଧୁନିକ କବିତାର ନିଷ୍କର୍ଷ । ଲୋକସଂସ୍କୃତିରୁ ଉପାଦାନ ଚୟନ କରି ପ୍ରଯୁକ୍ତ କରିବାର ସଚେତତା

ଓ ଫାଣ୍ଟାସିର ଶିହରଣ ଏ ଯୁଗର କବିତାକୁ ନୂତନ ସ୍ୱରରେ ଋଦ୍ଧିମନ୍ତ କରିଛି । ୧୯୮୦ ପରବର୍ତ୍ତୀ କବିତାରେ ବହୁ-ଅର୍ଥଦ୍ୟୋତକତା, ଅର୍ଥର ବିଚ୍ଛୁରଣ ସହିତ ଅର୍ଥପ୍ରତୀତିର ପ୍ରଚୁର ସମ୍ଭାବନା ବିସ୍ତାରିତ । ଏହା ଉତ୍ତର-ଆଧୁନିକ କବିତାର ଅନ୍ୟ ଏକ ବୈଶିଷ୍ଟ୍ୟ ।

କବିତାର ବକ୍ତବ୍ୟରେ ସମୟ ବିଶେଷରେ କେତେକ ପରିବର୍ତ୍ତନ ଆସି ଯୁଗୋପଯୋଗୀ ଶୈଳୀଦ୍ୱାରା ଜନସମାଜରେ ଆଦୃତ ହୋଇଥାଏ । ଯଦି କାବ୍ୟବକ୍ତବ୍ୟ ଓ ପ୍ରକାଶଭଙ୍ଗୀରେ ଦ୍ୱନ୍ଦ୍ୱ ଉପୁଜେ, ତେବେ କେବଳ ପ୍ରକାଶଭଙ୍ଗୀର ଚାତୁରୀ କାବ୍ୟମୂଲ୍ୟକୁ ପ୍ରାଣସ୍ପର୍ଶୀ କରିପାରେନା । ଭଙ୍ଗୀସର୍ବସ୍ୱ ଅନେକ ରଚନା ନିଜକୁ ରକ୍ଷା କରିପାରି ନ ଥିବାର ପ୍ରଚୁର ଦୃଷ୍ଟାନ୍ତ ରହିଛି । ତେଣୁ ବକ୍ତବ୍ୟ ତୀକ୍ଷ୍ଣ ଓ ଗଭୀର ହେଲେ ଏବଂ ପ୍ରକାଶଭଙ୍ଗୀ ତଦନୁରୂପ ହେଲେ କାବ୍ୟ ବକ୍ତବ୍ୟ ଚିରକାଳୀନ ହେବାର ମର୍ଯ୍ୟାଦା ଲାଭ କରେ । ନାନା ବାଦ ଓ ଯୁଗଚେତନାକୁ ନିଜ ଭିତରେ ସ୍ଥାନ ଦେଇ କାବ୍ୟଶିଖର ଉତ୍ତରୋତ୍ତର ପରିବର୍ତ୍ତିତ ହେଉଛି । ନୂତନତାଦ୍ୱାରା ସମୃଦ୍ଧ ହେଉଛି । ନିର୍ଦ୍ଦିଷ୍ଟ ନିୟମବଦ୍ଧ ରଚନା ଗୌଣ ମନେହେଲାବେଳକୁ, ସକଳ ବାଦ ଓ ଯୁଗଚେତନାକୁ ଅସ୍ୱୀକାର କରି ମଧ୍ୟ ଉନ୍ନତ କାବ୍ୟଚିନ୍ତନଟିଏ ନିଜକୁ ପ୍ରତିଷ୍ଠା କରିପାରୁଛି ।

ଆଜିର ଆଶ୍ୱାସ : ବର୍ତ୍ତମାନର ପରିପ୍ରେକ୍ଷୀରେ ଯୁଦ୍ଧ, ହିଂସା, ସନ୍ତ୍ରାସର ତାଣ୍ଡବ ମଧ୍ୟରେ ଯଥାର୍ଥ ଜ୍ଞାନୀ, ମାନୀ ମଣିଷର ଯେ କିଛି ବିଶିଷ୍ଟତା ରହିଛି, ଏହା ସ୍ୱୀକାର କରିବାକୁ ଅପ୍ରସ୍ତୁତ ଲାଗେ । ସୃଷ୍ଟିର ପ୍ରାରମ୍ଭରୁ କେତେ ସାଧୁସନ୍ଥ, କଳାକାର, କବି, ଭାସ୍କର, ଚିତ୍ରକର, ଗାୟକ ମଣିଷ ଜୀବନର ଅର୍ଥପୂର୍ଣ୍ଣ, ମଧୁର ଆବେଗ ଜଡ଼ିତ ଦିଗଗୁଡ଼ିକୁ ବିକଶିତ କରିବାରେ ଲାଗିଛନ୍ତି । ସାଧନାର ସୁଗନ୍ଧ, ସୁଚିନ୍ତନର ସତ୍‌ପ୍ରଭାବ କେଉଁଠି ଯେମିତି ହଜିଯାଉଛି, ଉଭେଇ ଯାଉଛି । ଅର୍ଥ, କ୍ଷମତା, ହୃଦୟହୀନତା ମଣିଷର ଚେତନାକୁ କବଳିତ କରି ମହାସଂହାରରେ ତା'ର ଶକ୍ତି ଓ ଚିନ୍ତାକୁ ନିୟୋଜିତ କରୁଛି । କବି ଏହିଭଳି ଏକ ଧୂମାଚ୍ଛନ୍ନ, ଆସନ୍ନ ଧ୍ୱଂସର ପଟ୍ଟଭୂମିରେ ନିଜ ସାଧ୍ୟମତେ ସହୃଦୟତାର ସ୍ୱର ଶୁଣାଇବାରେ ବ୍ୟାପୃତ ରହିବା ସ୍ୱାଭାବିକ । କିନ୍ତୁ ଯୁଦ୍ଧର ନିରାକରଣ କରିବାର ଶକ୍ତି କବିଠାରେ କେତେଦୂର ରହିଛି – ଏହି ପ୍ରଶ୍ନ ବଡ଼ ନିଷ୍ଠୁର । କବିମାନଙ୍କ ଜଗତ ଅନ୍ତର୍ମନର ଉଚ୍ଚାରଣ, ଗଭୀର ସମ୍ବେଦନଶୀଳତା, କଳ୍ପନା ଓ ସ୍ୱପ୍ନର ଯାଦୁଦ୍ୱାରା ସଙ୍ଗଠିତ ଏକ ବିଶ୍ୱସନୀୟ ଜଗତ । ଏହି ଜଗତ ଚିରକାଳ

ବସ୍ତୁବାଦଦ୍ୱାରା ଆକ୍ରାନ୍ତ । ତଥାପି ଯୁଦ୍ଧଧ୍ୱସ୍ତ ପୃଥିବୀକୁ ମାନବିକତାଦ୍ୱାରା ସମୃଦ୍ଧ କରିବାକୁ ଓ ଉଦ୍ଧାର କରିବାକୁ ଏହା ସମର୍ଥ ହୋଇଛି, ହେବ ମଧ୍ୟ ।

ଶେଷକୁ, କବିତା ପତ୍ରିକାର ବିଡ଼ମ୍ବନା ଭୋଗିବାକୁ ହେଉଛି ସତ: ମାତ୍ର ଶୋଚନା ନାହିଁ । ପତ୍ର ଓ ଦୂରଭାଷ ଜରିଆରେ ଅସଂଖ୍ୟ ପାଠକ 'ଉଦ୍‌ଭାସ'ର ଅନନ୍ୟତା ସ୍ୱୀକାର କରିଛନ୍ତି । ଏହା ମୋର ଆତ୍ମବିଶ୍ୱାସର ମୂଳଧନ.।

କୌଣସି ଆନୁଷ୍ଠାନିକ ଆମନ୍ତ୍ରଣକୁ ଅପେକ୍ଷା ନ କରି ଓଡ଼ିଶାର କୋଣ ଅନୁକୋଣରୁ କବିମାନଙ୍କର ଉତ୍କୃଷ୍ଟ କବିତା ସର୍ବାଗ୍ରେ ଆସି 'ଉଦ୍‌ଭାସ' ନିକଟରେ ପହଞ୍ଚୁ । ଏହା ମୋର ଚିରପୋଷିତ ଇଚ୍ଛା । କବିତା ସ୍ଥାନିତ ହେବା ବିଷୟରେ ମୁଁ କେବଳ ଏତିକି ଭରସା ଦେଇପାରେ ଯେ, କବିତାର ମାନ ହିଁ ମନୋନୟନର ଏକମାତ୍ର ମାପକାଠି । ଯେତେ ଅଲଙ୍ଘନୀୟ ହେଲେ ବି, ଅନ୍ୟ କିଛି ନୁହେଁ ।

## ।। ତିନି ।।

ଓଡ଼ିଆ କବିତାର ସ୍ୱରୂପ ବର୍ତ୍ତମାନ କେଉଁପରି ? ମୋତେ ବକ୍ତବ୍ୟ ରଖିବାକୁ ହେବ – ସମୟ ୧୫-୨୦ ମିନିଟ୍ ମାତ୍ର । ଜୁଲାଇ ମାସ ୩ରୁ ୬ ତାରିଖ ପର୍ଯ୍ୟନ୍ତ 'ଓଡ଼ିଶା ସୋସାଇଟି ଅଫ୍ ଆମେରିକାନ୍ସ' (O.S.A.)ର ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥାଏ । ୪ ଦିନ ବ୍ୟାପୀ ଏହି ଉତ୍ସବର ୩ୟ ଦିନ ଅର୍ଥାତ୍ ୫ ତାରିଖରେ ହେବାକୁ ଥାଏ କବିତା ଅଧିବେଶନ, ସକାଳ ୮ଟାରୁ ୧୦.୩୦ ପର୍ଯ୍ୟନ୍ତ । ଅନ୍ୟ ସବୁ ଅଧିବେଶନ ସମାଜ, ରାଜନୀତି, ବାଣିଜ୍ୟ ସମ୍ପର୍କରେ ଉଦ୍ଦିଷ୍ଟ ଥିଲାବେଳେ, କାର୍ଯ୍ୟକ୍ରମରେ ସାହିତ୍ୟ ସମ୍ପର୍କୀୟ ଅଧିବେଶନ ଏଇ ଗୋଟିଏ ମାତ୍ର । ଆମେରିକାର ନ୍ୟୁଜର୍ସି ରାଜ୍ୟର ପ୍ରିନ୍ସଟନ୍ ସହରସ୍ଥିତ ହୋଟେଲ 'ଡୋରାଲ୍ ଫରେଷ୍ଟାଲ୍' ହଲ୍‌ରେ ଏହି କବିତା ଅଧିବେଶନ । ବହୁ ଆଗ୍ରହୀ ଶ୍ରୋତାଙ୍କ ସମାଗମ । ମୋତେ କି'ନୋଟ୍ ଆଡ୍ରେସ୍ (ବୀଜବକ୍ତବ୍ୟ) ଦେବା ଓ 'ତନ୍ମୟଧୂଳି'ରୁ କବିତା ପଢ଼ିବା ନିମନ୍ତେ ନିମନ୍ତ୍ରଣ ଥାଏ ।

ସେମାନଙ୍କୁ କବିତା ସମ୍ପର୍କରେ କ'ଣ କହିବି ପ୍ରକୃତରେ ! ତଥାପି ମୁଁ ମୋର ବକ୍ତବ୍ୟ ଆରମ୍ଭ କଲି ଏହିପରି – "ଅନିବାସୀ ଓଡ଼ିଆ ବନ୍ଧୁଗଣ ! ହିମାଳୟ ପରି ସୁଉଚ୍ଚ ଓ ପରିବ୍ୟାପ୍ତ ଓଡ଼ିଆ କାବ୍ୟ ପରମ୍ପରାର କି ପରିଚୟ ବା ମୁଁ ଏତେ କମ୍ ସମୟ ମଧ୍ୟରେ ଆପଣମାନଙ୍କୁ ଦେଇପାରିବି ? ଆପଣ, ଯେଉଁମାନେ କି

ଅନେକ ଦିନ ଧରି ଓଡ଼ିଆ କବିତାର ପ୍ରତ୍ୟକ୍ଷ ସମ୍ପର୍କରେ ନାହାନ୍ତି, ନାନା କାରଣରୁ ଯୋଗାଯୋଗ କ୍ଷୀଣ ହୋଇଯାଇଛି, ସୁଦୂରରେ ଥିବାରୁ ପ୍ରତିନିୟତ ଓଡ଼ିଆ କବିତା ପଢ଼ିବାକୁ ପାଉ ନାହାନ୍ତି, ଆପଣମାନଙ୍କ ସମକ୍ଷରେ ଓଡ଼ିଆ କବିତାର ଗତି ଓ ସ୍ଥିତିକୁ ମୁଁ କିପରି ବା ଉପସ୍ଥାପିତ କରିପାରିବି ?'' ପ୍ରତିବାଦ ଆସିଲା – ''ଆମେ ପଢୁ, ଆପଣ ସେପରି ମନେ କରନ୍ତୁ ନାହିଁ ଆଦୌ । ଅଗତ୍ୟା ମୁଁ ସୌଜନ୍ୟ ଦୃଷ୍ଟିରୁ କହିଲି – ''ମନା କରୁ ନାହିଁ, ହୁଏତ ପଢୁଥିବେ, ମାତ୍ର କେତେଜଣ ? ଆପଣମାନେ ଆଗ୍ରହୀ ହେଲେ ବି ଆଗ୍ରହ ପରିତୃପ୍ତିପାଇଁ ସୁବିଧା ସୁଯୋଗ ହିଁ ନ ଥିବ ।''

କେବଳ ଓଡ଼ିଆ ଭାଷାର କବିତା ନୁହେଁ, ସମଗ୍ର ଭାରତର ଆଞ୍ଚଳିକ ଭାଷାମାନଙ୍କରେ ରଚିତ କବିତାର ସ୍ୱରୂପ ଊଣା ଅଧିକେ ସେହି ସମାନ ଭାବଧାରାର ଅନୁଗାମୀ । ସାମସମୟିକ କବିତାର ପର୍ଯ୍ୟାଲୋଚନା କରିବାକୁ ଯାଇ ମୁଁ ଆପଣମାନଙ୍କ ସମ୍ମୁଖରେ ମାତ୍ର ଦୁଇଟି ଦିଗକୁ ସ୍ପଷ୍ଟ କରିବାକୁ ଚାହେଁ । ପ୍ରଥମତଃ, ବର୍ତ୍ତମାନର କବିତା ମଧ୍ୟରେ ମଣିଷ ନିଜକୁ ଖୋଜିବାକୁ ବ୍ୟଗ୍ର । ମଣିଷର ଅନ୍ତରଙ୍ଗତା ପ୍ରତି କବିତା ଅଧିକ ଉନ୍ମୁଖ । ଜଗତୀକରଣଦ୍ୱାରା ବ୍ୟକ୍ତି, ବସ୍ତୁ, ସ୍ଥାନ ଆଦି ସର୍ବସାଧାରଣ ହୋଇପଡ଼ିଲାବେଳକୁ, ମଣିଷ ତା' ନିଜ ଜୀବନ, ପ୍ରିୟଜନ, ପ୍ରିୟ ପରିବେଶ ତଥା ଅଭିଳାଷ ପ୍ରତି ଅଧିକ ନିବିଡ଼ ହେବାକୁ ଚାହୁଁଛି । ସବୁ ଗତାନୁଗତିକତା ଓ ପାରମ୍ପରିକତା ଭାଙ୍ଗିପଡ଼ିବାର ଆଶଙ୍କା ବଳବତ୍ତର ହେବାବେଳକୁ କବିତା ମାଧ୍ୟମରେ ସବୁକିଛିକୁ ନୂତନଭାବେ ଅର୍ଥାନ୍ୱିତ କରିବା ନିମିତ୍ତ କବିଗଣ ପ୍ରଯତ୍ନ କରୁଛନ୍ତି । ବ୍ୟକ୍ତିଗତତାକୁ ସର୍ବସାଧାରଣ କରିଦେବାର ଏଇ ଯୁଗରେ କବିଟି କାତର ହୋଇପଡୁଛି । ସମ୍ପର୍କହୀନତା ବ୍ୟାପିଯାଉଥିବାବେଳେ ସେ ନିଜ ସମ୍ପର୍କର ଖିଅକୁ ଜାବୁଡ଼ି ଧରି ତା'ର ଅନନ୍ୟତାକୁ ପ୍ରତିଷ୍ଠା ଦେବାକୁ ତତ୍ପର ହୋଇଉଠୁଛି । ମଣିଷର ଅନ୍ତର୍ବେଦନା ଓ ମନୋଭାବ ଏ ଦିଗରେ କିପରି କ୍ରିୟାଶୀଳ, ତାହା କବିମାନଙ୍କ ରଚନାରେ ପ୍ରମୂର୍ତ୍ତ ହେଉଛି । ଏହାର ନଜିର୍ ଦେବାକୁ ଯାଇ ମୁଁ ମୋର ବକ୍ତବ୍ୟରେ କବି ସୀତାକାନ୍ତଙ୍କ 'ପ୍ରଦକ୍ଷିଣ' ତଥା ଅନ୍ୟ କବିଙ୍କ ରଚନାରୁ କେତେକ ଉଦାହରଣ ଉପସ୍ଥାପନ କଲି । ସେଠାକାର ଶ୍ରୋତାବର୍ଗ ଏକଦା ଯଦିଓ ଓଡ଼ିଆ କବିତାପ୍ରେମୀ ଥିଲେ: କିନ୍ତୁ ବର୍ତ୍ତମାନର କବିତାର ଧାରା ପ୍ରତି ବିଶେଷ ଅବହିତ ନୁହନ୍ତି । ତେଣୁ ସାମ୍ପ୍ରତିକ କବିତାର ନୂତନ ଧାରା ଓ ନୂତନ ସ୍ୱର ସମ୍ପର୍କରେ କିଛିଟା ସୂଚନା ପ୍ରଦାନ କରିବାକୁ ମୁଁ ପ୍ରାସଙ୍ଗିକ ମନେକଲି ।

ବର୍ତ୍ତମାନର ଅର୍ଥାତ୍ ୧୯୮୦ ପରବର୍ତ୍ତୀ କାଳର କବିତାରେ ସ୍ପଷ୍ଟ ହୋଇଥିବା ନୂତନତ୍ୱକୁ ମୁଁ ମୋ ବକ୍ତବ୍ୟର ଦ୍ୱିତୀୟ ଭାଗ ଭାବେ ଚିହ୍ନିତ କରିବାକୁ ଯଥାର୍ଥ ଭାବିଲି । କହିଲି – ''ଏହି କାଳରେ ଓଡ଼ିଆ କବିମାନେ ନାରୀ ଅସ୍ତିତ୍ୱର ବାସ୍ତବତା ପ୍ରତି ଅଧିକ ସଚେତନ ହୋଇଛନ୍ତି । ନାରୀର ଅନ୍ତର୍ମୂଲ୍ୟ ପ୍ରତିଷ୍ଠା, ନାରୀବ୍ୟକ୍ତିତ୍ୱର ବିଚାର ପ୍ରତି ନିବିଷ୍ଟତା ଏ ସମୟର କବିତାରେ ବେଶ୍ ଲକ୍ଷ୍ୟଣୀୟ । ଏହା ପାଶ୍ଚାତ୍ୟ ଦୃଷ୍ଟିର 'ଫେମିନିଜିମ୍' ପ୍ରଭାବରେ ଅବଶ୍ୟ ନୁହେଁ, ଏହା ଅଧିକଭାବେ ମାନବିକତା ଓ ଯୁଗବାର୍ତ୍ତାଦ୍ୱାରା ଉଦ୍‌ବୋଧିତ ।

ଏହି ପରିପ୍ରେକ୍ଷୀରେ କହିବାକୁ ହେଉଛି ଯେ, ନାରୀକୁ ବାଦ୍‌ଦେଇ ବିଶେଷ କବିତା ରଚନା କରାଯାଇ ନାହିଁ । କେବେ ଦେବୀ, କେବେ ପ୍ରେୟସୀ, କେବେ ଛଳନାମୟୀ କେବେ ବା ସର୍ବଂସହା ଧରିତ୍ରୀ – ଏଇସବୁ ନାରୀର ପ୍ରତୀକରୂପେ ସ୍ୱୀକୃତ ହୋଇଛନ୍ତି । କିନ୍ତୁ ଆଲୋଚ୍ୟ ସମୟର କବିଗଣ ଭିନ୍ନଭାବେ ସଚେତନ ଓ ସମ୍ବେଦନଶୀଳ ହୋଇଛନ୍ତି । ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଲାଭ କରିଥିବା ଦୁଇଟି ନାରୀଚରିତ୍ର 'ପ୍ରତିମା ନାୟକ' ଓ 'ଅଳକା ସାନ୍ୟାଲ'ଙ୍କୁ ବ୍ୟବଚ୍ଛେଦ କଲେ ଏକଥାର ଠିକ୍ ଅବଧାରଣା କରିହେବ । ଆଧୁନିକ କବିତା କ୍ଷେତ୍ରରେ ପ୍ରମୁଖ ମାନ୍ୟତାପ୍ରାପ୍ତ, ଉପରୋକ୍ତ କବିତାଦ୍ୱୟକୁ ଦୁଇ କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଓ ଶ୍ରୀ ଗୁରୁପ୍ରସାଦ ମହାନ୍ତି ଆଧୁନିକ ନାରୀକୁ ନେଇ ଶ୍ଳେଷ ଓ ରସିକତା, ତଥା 'ହାଲୋ, ହାଏ' ସମ୍ଭାଷଣରେ ଆକର୍ଷଣୀୟ କରିଛନ୍ତି । ଶ୍ଳେଷ ଓ ରସିକତା ଆଧୁନିକ କବିତାର ଦୁଇଟି ବିଶିଷ୍ଟ ଗୁଣ । କିନ୍ତୁ ଜୀବନସଙ୍କଟର ଦୋମୁହାଣିରେ ଛଟପଟ ନାରୀକୁ ନେଇ କବିଙ୍କର ସହାନୁଭୂତି ଓ ସମମର୍ମିତା ଏଥିରେ ପ୍ରକଟିତ ହୋଇ ନାହିଁ । ''ପଚାରିଲି, 'ଭଲ ଅଛ ?' କଣ୍ଠେ ତା'ର ବିଷଣ୍ଣ ଗୋଧୂଳି ।'' (ପ୍ରତିମା ନାୟକ) କିମ୍ବା ''ମୁଁ ତୁମର ସ୍ୱପ୍ନ ଦେଖେ ମୋର ଢିଲା ପାଇଜାମା, କାମିଜର ଅମରାବତୀରେ ।'' (ଅଳକା ସାନ୍ୟାଲ) ଏଠାରେ ନାୟିକାର ଆତ୍ମିକ ଅସହାୟତାଠାରୁ କବିଚେତନାର ଦୂରତ୍ୱ ସହଜେ ପ୍ରତିପନ୍ନ ହୁଏ । ଆଧୁନିକ ନାରୀର ଏ ଚିତ୍ର ନୈର୍ବ୍ୟକ୍ତିକ ସତ୍ୟ; ମାତ୍ର ତା'ର ଅନ୍ତରାତ୍ମାକୁ, ଗ୍ଳାନିକୁ, ଲୁହବୁନ୍ଦାକୁ କବି ସ୍ପର୍ଶ କରିବାକୁ ଚାହି ନାହାନ୍ତି । ଯଦିବା ରମାକାନ୍ତ ରଥଙ୍କ 'ଚନ୍ଦ୍ରମାର ଚୁଡ଼ି'ରେ କବିଙ୍କ ପରୋକ୍ଷ ଦରଦ ମର୍ମସ୍ପର୍ଶୀ ହୋଇପାରିଛି । ସେ ଯୁଗର ଦୃଷ୍ଟି ସେହିପରି ହିଁ ଥିଲା । କିନ୍ତୁ ବର୍ତ୍ତମାନର କବି ନାରୀର ଅନ୍ତର୍ନିହିତ ସତ୍ତା ଉଦ୍‌ଘାଟନ କରିବା ସହିତ, ତା'ର ଅନ୍ତରାତ୍ମାକୁ ଚିହ୍ନି, ତା'ର ପରାକ୍ରମ

ଓ ପରାଜୟ ଉଭୟକୁ ଉପଲବ୍ଧି କରୁଛି । କବିର ନାରୀବ୍ୟକ୍ତିତ୍ୱ ପ୍ରତି ଏହି ଧ୍ୟାନଶୀଳତାର ପୃଷ୍ଠପଟରେ ରହିଛି ନାରୀର ନିଜସ୍ୱ ସଚେତନତା ଓ ନିରୀକ୍ଷଣ ଶକ୍ତି ତଥା ପ୍ରକାଶଦକ୍ଷତା । ଚିରନ୍ତନ ନାରୀର ଅଭୀପ୍‌ସା ପୁରାଣକଳ୍ପ ମାଧ୍ୟମରେ 'ଶ୍ରୀରାଧା' ଓ 'ଶବରୀ' ଆଦି କାବ୍ୟ ଚରିତ୍ରରେ ଚିହ୍ନିତ ହେଲାବେଳକୁ, ପଲ୍ଲୀର ନିରିମାଖି ଝିଅର ଅନ୍ତଃସୌନ୍ଦର୍ଯ୍ୟ ମଧ୍ୟ 'ଧାନସାଉଁଟା ଝିଅ' ଆଦି କବିତାରେ ବିଶିଷ୍ଟତା ଲାଭ କରିଛି । ପୁନଶ୍ଚ ବର୍ତ୍ତମାନ ଓଡ଼ିଆ କବିତା କ୍ଷେତ୍ରରେ ୨୫ରୁ ୪୦ ବର୍ଷ ବୟସ ମଧ୍ୟରେ କେତେକ ନାରୀ ଅତ୍ୟନ୍ତ ମାର୍ମିକ, ଭାବଉଦ୍‌ବୋଧକ ଓ ବାସ୍ତବ ସଚେତନ ସ୍ୱର ପ୍ରକଟ କରୁଛନ୍ତି । ଏହା ଯେ ଏକ ନୂତନ ଦିଗର ସୂଚନା ଦେଉଛି, ସ୍ୱୀକାର ନ କରିବାର ଉପାୟ ନାହିଁ ।

ଓଡ଼ିଆ କବିତାରେ ୧୯୫୦ ବେଳକୁ ଏଲିଅଟ୍‌ଙ୍କ "escape from personality. ××× escape from emotion" ଖୁବ୍ ପ୍ରଭାବ ବିସ୍ତାର କରିଥିଲା । ତାଙ୍କ ମତ ଥିଲା, କବିତାରେ ଆବେଗ ରହିବ ନାହିଁ । ଅଥଚ ଆବେଗବିଯୁକ୍ତ ସଂରଚନା କବିତା ହୋଇ ନ ପାରେ, ଯଦିଓ କେବଳ ଆବେଗର ପ୍ରାଚୁର୍ଯ୍ୟ ମଧ୍ୟ କଦାପି କବିତା ନୁହେଁ । ଏହା ମୋର ବ୍ୟକ୍ତିଗତ ମତ । ଏହାସତ୍ତ୍ୱେ ପାଶ୍ଚାତ୍ୟ ପ୍ରଭାବିତ ଆଧୁନିକ କବିମାନେ ଆବେଗକୁ ଅପ୍ରକଟ ରଖିବାକୁ ଯତ୍ନଶୀଳ ଥିଲେ । ଏହା ଥିଲା ସେହି ସମୟର କବିତାର ଯଥାର୍ଥ ସ୍ଥିତି, ଯାହା ପରବର୍ତ୍ତୀକାଳର କବିତାରେ କ୍ରମଶଃ ଏକ ଭିନ୍ନ ରୂପ ଗ୍ରହଣ କରିଛି । ମୋର ବକ୍ତବ୍ୟ ସରି ଆସୁଥାଏ । ଉପସ୍ଥିତ ଶ୍ରୋତାଙ୍କ ତରଫରୁ ମୋତେ ଅନୁରୋଧ ଆସିଲା, ଗୁରୁପ୍ରସାଦଙ୍କ କବିତାଟିଏ ଆବୃତ୍ତି କରିବା ଲାଗି । ଦୈବକ୍ରମେ ମୋ ସ୍ମୃତି ମୋର ଅନୁକୂଳ ଥିବାରୁ ମୁଁ ସହସା ଗୁରୁପ୍ରସାଦଙ୍କ 'ଚମ୍ପାଫୁଲ' କବିତାଟି ଆବୃତ୍ତି କରିପାରିଲି । ପ୍ରକାଶଥାଉକି ସଚ୍ଚି ରାଉତରାୟଙ୍କ 'ଛୋଟ ମୋର ଗାଆଁଟି' ଆବୃତ୍ତିରୁ କବିତା ପାଠୋତ୍ସବ ଆରମ୍ଭ ହୋଇଥିଲା । ମୋର ସୌଭାଗ୍ୟ ଯେ, ଶ୍ରୋତାମାନେ ସଚ୍ଚି ରାଉତରାୟ, ଗୁରୁପ୍ରସାଦ ଓ ରମାକାନ୍ତଙ୍କ କବିତା ସମ୍ପର୍କରେ କିଛିଟା ଅବଗତ ଥିଲେ ଓ ସେ ଦିଗରେ କେତେକ ପ୍ରଶ୍ନୋତ୍ତର ମଧ୍ୟ ହେଲା । ଶେଷକୁ ଯୁବକବିମାନଙ୍କର ଏକ ଇଂରାଜୀ କବିତା ପ୍ରତିଯୋଗିତାରେ ପୁରୋଧା ରୂପେ ମୁଁ ପୁରସ୍କାର ବିତରଣ କଲି । ବର୍ତ୍ତମାନର କବିତା ପ୍ରତି ଅନିବାସୀ ଓଡ଼ିଆ କବିତାପ୍ରେମୀମାନଙ୍କର ଥିବା ଔତ୍ସୁକତା ସମ୍ପର୍କରେ 'ଉଦ୍‌ଭାସ' ପାଠକବର୍ଗଙ୍କୁ କିଛିଟା ଅବହିତ କରାଇବା ଲକ୍ଷ୍ୟରେ ସେଠାରେ ପ୍ରଦାନ କରିଥିବା ମୋର ବକ୍ତବ୍ୟର ଯେ କ୍ଷୁଦ୍ର ଅବତାରଣା ।

'ଉଦ୍‌ଭାସ'ର ଏହି ସଂଖ୍ୟା ପ୍ରତି ସଂଖ୍ୟା ପରି ସମ୍ପାଦନାମଣ୍ଡଳୀଙ୍କ ପ୍ରଚୁର ଶ୍ରମ ଓ ଅବଧାନତା ମଧ୍ୟରେ ପ୍ରସ୍ତୁତ ହୋଇଛି । ତଥାପି ବିଗତ ସଂଖ୍ୟାର ସମ୍ୟକ୍ ତ୍ରୁଟି ପ୍ରତି ଆମେ ଅବହିତ ଓ ଏହାର ପୁନରାବୃତ୍ତି ନ ହେବା ନିମିତ୍ତ ଆମର ଯତ୍‌ପରୋନାସ୍ତି ଉଦ୍ୟମ ଜାରିରହିଛି ।

ପାଠକେ ! ଶକ୍ତିପୂଜା (ମା' ଦୁର୍ଗା ଓ ମା' କାଳୀଙ୍କର) ଅବସରରେ ଆପଣମାନଙ୍କୁ ଆମର ଆନ୍ତରିକ ଶୁଭେଚ୍ଛା ଓ ବିନମ୍ର ଅଭିନନ୍ଦନ ।

## ।। ଚାରି ।।

ନାନା ଆଶା-ଆଶଙ୍କା ସତ୍ତ୍ୱେ 'ଉଦ୍‌ଭାସ' ଦ୍ୱିତୀୟ ବର୍ଷରେ ପଦାର୍ପଣ କଲା । ବହୁ କବି ଓ ପାଠକଙ୍କର ପ୍ରେରଣା ଓ ଶୁଭେଚ୍ଛା ଏହାର ପୃଷ୍ଠପଟରେ ଅବଶ୍ୟ ବିଦ୍ୟମାନ । ଏଠାରେ କହିବାକୁ ହେଉଛି ଯେ, 'ଉଦ୍‌ଭାସ'ର ପ୍ରତିଟି ସଂଖ୍ୟାପାଇଁ ଆମକୁ ୨୦ରୁ ୨୫ଟି କବିତା ଚୟନ କରିବାକୁ ହୋଇଥାଏ । ପହଞ୍ଚୁଥିବା କବିତାରୁ ଅଧିକାଂଶ ଆମକୁ ଯଥେଷ୍ଟ ଆତ୍ମସନ୍ତୋଷ ଦେଇପାରୁ ନାହିଁ । କେଉଁଠି ଶବ୍ଦ ପ୍ରୟୋଗରେ କବିଙ୍କର ଅବଧାନତା ରହୁ ନାହିଁ ତ କେଉଁଠି ସମୁଦାୟ ବକ୍ତବ୍ୟଟି ସ୍ୱଚ୍ଛନ୍ଦ ହୋଇପାରୁ ନାହିଁ ।

କବିତା ନିମିତ୍ତ ଗଭୀର ଭାଷାବୋଧ ଆବଶ୍ୟକ । ଭାଷାର ସାମର୍ଥ୍ୟକୁ ଆବିଷ୍କାର କରିବା, ଭାଷାକୁ କ୍ଷିପ୍ର ଭାବେ ଦୂରରୁ ଦୂରକୁ ସଂଚରଣଶୀଳ କରାଇପାରିବା ଓ ସଂପ୍ରେଷଣ କ୍ଷମତାକୁ ତ୍ୱରାନ୍ୱିତ କରିବା କବିତାର ମୁଖ୍ୟ ଭୂମିକା । କେବଳ ସେତିକି ନୁହେଁ, ପାଠକର ଚିନ୍ତାଶକ୍ତିକୁ ମଧ୍ୟ ତ୍ୱରାନ୍ୱିତ କରାଇବା କବିତାର ଦାୟିତ୍ୱ । ଅନ୍ୟ ଭାବରେ ଉପସ୍ଥାପନ କଲେ, କବିତା ଏକ ଅତ୍ୟନ୍ତ ବ୍ୟକ୍ତିଗତ କଳା । ହୃଦୟର ଗଭୀରତାରୁ ଓ ନୀରବତାରୁ ଏହାର ସ୍ୱର ପ୍ରକଟିତ ହୋଇଥାଏ । କବିତାରେ ନୂତନତ୍ୱ କବିତାର ଏକ ଆଶ୍ଚର୍ଯ୍ୟପଣ । ଏହି ନୂତନତାର ସ୍ୱରୂପ ପୁଣି ଭିନ୍ନ ଭିନ୍ନ ହୋଇପାରେ । କବିତାର ବିଷୟ ନୂଆ ହୋଇଥିଲେ କିମ୍ବା ସତେଜତା ଥିଲେ କବିତା ଅଭିନବ ପ୍ରତିପନ୍ନ ହୁଏ, ଉଦ୍‌ବୁଦ୍ଧ କରେ । ଘଷରା କବିତା ଧାର ନ ଥିବା ଦନ୍ଥଡ଼ା ଛୁରି ପରି ଅବବୋଧ ମଧ୍ୟକୁ ପ୍ରବେଶ କରିପାରେ ନାହିଁ । ଭଲ କବିତା ସତେଜ ହେବା ଜରୁରୀ: ଆନ୍ତରିକ, ପ୍ରତ୍ୟକ୍ଷ ଓ ସରଳ ହେବା ମଧ୍ୟ ବାଞ୍ଛନୀୟ । ଭଲ କବିତାରେ ଉଦ୍ଭାବିକା ଶକ୍ତି, ବୌଦ୍ଧିକ ଆସକ୍ତି ଓ ବିସ୍ମୟ ଭାବ ଯୁଗପତ୍ ରହିଥାଏ । ଭଲ କବିତା ପଢ଼ିବାକୁ

ମିଳିବା ସୁସ୍ଥ ସାଂସ୍କୃତିକ ଚେତନାର ଲକ୍ଷଣ । ଗୋଟିଏ ଭାଷାରେ କବିତା ଲେଖିବା ଓ ପଢ଼ିବାର ଚାହିଦାରୁ ବହୁ ଲୋକ ଶିକ୍ଷିତ ଓ ଜୀବନ୍ତ ଥିବା ପ୍ରମାଣିତ ହୋଇଥାଏ ।

ଯୁବକବିଗଣ କିଛି ସୌନ୍ଦର୍ଯ୍ୟାନୁଭବ ଉତ୍ତରାଧିକାର ସୂତ୍ରରେ ପାଇଥା'ନ୍ତି । ସେଥିରେ ଭାଷା ସହ ମୂଳ ସମ୍ପର୍କଟି ବଡ଼ ସମସ୍ୟାସଙ୍କୁଳ ହୋଇ ରହିଥାଏ । ଏ ସମ୍ପର୍କରେ ସେମାନେ ନିଜ କୃତିକୁ ନିର୍ଦ୍ଦିଷ୍ଟ ଭାବେ ଖେଳୁଆଡ଼୍ ପରି ଗ୍ରହଣ କରିବାଦ୍ୱାରା ଯନ୍ତ୍ରଣାଦାୟକତା, ଆଗ୍ରହାତିଶଯ୍ୟ ଓ ଅସ୍ୱଚ୍ଛତା ଆଦି କେତେକ ଦାୟରେ ଭରିଦେଇଥା'ନ୍ତି ।

ବିଗତ ଦୁଇ ଦଶକ ମଧ୍ୟରେ କବିତା ପ୍ରତି ପାଠକ ସଚେତନତା କିଛିଟା ବୃଦ୍ଧି ପାଇଛି । ଗଣମାଧ୍ୟମ ମଧ୍ୟ ଏଥିରେ ସାମିଲ୍ ହୋଇଛି । କବିତା ପାଠୋତ୍ସବ, କବିତାକର୍ମଶାଳା ଆଦି ବହୁ ସ୍ଥାନରେ, ବହୁ ଅବକାଶରେ ଅନୁଷ୍ଠିତ ହେଉଛି । ଅଥଚ କବିଗଣ ନିଷ୍ଠାପର ସାଧନା ମାଧ୍ୟମରେ କବିତାର ମାନ ଉନ୍ନତ କରିବାକୁ ପରାଙ୍ମୁଖ । କବି-ପ୍ରତିଭାକୁ ଲାଳନ କରିବା, କବିତା ପ୍ରତି ଶ୍ରଦ୍ଧାଳୁହୋଇ ଅଧିକତର ମାର୍ଜିତ, ଗ୍ରହଣଶୀଳ ଓ ସୃଜନଶୀଳ କରି ରଖିବା ବର୍ତ୍ତମାନ କବିମାନଙ୍କର ମୁଖ୍ୟ ଧ୍ୟେୟ ହୋବା ସ୍ପୃହଣୀୟ ନୁହେଁ କି ? ସତ୍‌କବି ବାରବାର ଏକ ଅସହାୟତା ଅନୁଭବ କରେ: ତାକୁ ଲାଗେ, କବିତା ଭଲ ହେଉ ନାହିଁ, ଆଉ ବୋଧେ କେବେବି ଭଲ ହେବ ନାହିଁ । ମୋ ହାତରେ ଆଉ ଉତୁରିବ ନାହିଁ କବିତା, ଏହି ଆଶଙ୍କାରେ କବି ପ୍ରତିନିୟତ ଗ୍ରସ୍ତ ହେଉଥାଏ । ଏହା 'ସ୍ନେହାଦ୍ ଶଙ୍କମାନ' ଅବସ୍ଥା–କବିତା ପ୍ରତି ନିବିଡ଼ ଆନ୍ତରିକତାରୁ ଯେ ଆଶଙ୍କା ଉପୁଜି ଥାଏ ।

କବିତା ବହୁଯୁଗରୁ ସଂରଚିତ ହୋଇଆସୁଛି । ଭିନ୍ନ ଭିନ୍ନ ସମୟରେ ଜ୍ଞାନବିଜ୍ଞାନ ଓ ସାମାଜିକତାର ପ୍ରଭାବରେ ମଣିଷ ଜୀବନର ବାହ୍ୟସ୍ଥିତିଗୁଡ଼ିକ ପରିବର୍ତ୍ତିତ ହୋଇଚାଲିଛି । ମାତ୍ର ତା'ର ଆଭ୍ୟନ୍ତରୀଣ ଗୁଣଗୁଡ଼ିକ, ଭାବଗୁଡ଼ିକ ଅପରିବର୍ତ୍ତିତ ରହିଛି । ଆଶ୍ଚର୍ଯ୍ୟର ସହ ଲକ୍ଷ୍ୟ କରିବାର କଥା ଯେ, ଏତେ ଦୀର୍ଘକାଳ ଧରି ଲେଖା ହୋଇଆସୁଥିଲେ ବି, କବିତା କେବେହେଲେ ପୁରୁଣା ହେଉ ନାହିଁ । କବି ତା'ର ତ୍ୟାଗ ଓ ତପସ୍ୟା ବିନିମୟରେ କବିତାକୁ ଅହରହ ନିତ୍ୟନୂତନ କରିଚାଲିଛି । ଏପରି କବିତାକୁ ଗ୍ରହଣ କରିବାରେ ବିବେକୀ ଗ୍ରାହକର ପରିତୃପ୍ତିର ମଧ୍ୟ ବିଳୟ ଘଟୁ ନାହିଁ ।

ପ୍ରାତ୍ୟହିକ ନବୀକରଣଦ୍ୱାରା କବିମାନେ କବିତାର ବାସ୍ତବ ଅସ୍ତିତ୍ୱକୁ ବଞ୍ଚାଇ ରଖିଛନ୍ତି, ଅର୍ଥାତ୍, ତାତ୍ପର୍ଯ୍ୟପୂର୍ଣ୍ଣ ସୌନ୍ଦର୍ଯ୍ୟ ସୃଷ୍ଟି କରୁଛନ୍ତି । ଆଜିର କବିତାରେ (କେତେକ ବ୍ୟତିକ୍ରମକୁ ବାଦ୍‌ଦେଇ) ଏହି ସୌନ୍ଦର୍ଯ୍ୟାନୁଭୂତିର ଅନୁପସ୍ଥିତି ଯେକୌଣସି ଦାୟିତ୍ୱଶୀଳ କବି ଓ ପାଠକକୁ ବ୍ୟଥିତ କରିବ, ଏଥିରେ ସନ୍ଦେହ ନାହିଁ । ଏହି ସଙ୍କଟରୁ କବିତା କିପରି ଉତ୍ତୀର୍ଣ୍ଣ ହେବ, ସେ ସମ୍ପର୍କରେ ବିଚାର-ବିମର୍ଶର ଆବଶ୍ୟକତା ରହିଚି ।

ଶେଷରେ, କବି ଓ ପାଠକବର୍ଗଙ୍କୁ ୨୦୦୪ ବର୍ଷ ପାଇଁ 'ଉଦ୍‌ଭାସ'ର ବହୁତ ବହୁତ ଶୁଭେଚ୍ଛା ।

॥ ପାଞ୍ଚ ॥

'ଉଦ୍‌ଭାସ' ମାତ୍ର ଚାରୋଟି ପାହାଚ ଅତିକ୍ରମ କରିଛି । ଏହି ସ୍ୱଳ୍ପକାଳ ମଧ୍ୟରେ ଅନେକ ଆଦର ସହିତ କେତେକ ଅଭିଯୋଗ ମଧ୍ୟ ଅର୍ଜନ କରିଛି । ପ୍ରସଙ୍ଗତଃ, ଜଣେ କବି ଚିଠିଟିଏ ଲେଖିଲେ, ତାଙ୍କର କହିବାର ଥିଲା, 'ଉଦ୍‌ଭାସ'ର ସମ୍ପାଦକୀୟରେ କବିତାର ଯେଉଁ ସାମର୍ଥ୍ୟର କଥା କୁହାଯାଉଛି, ଏଥିରେ ପ୍ରକାଶିତ କବିତାଗୁଡ଼ିକ ମଧ୍ୟରୁ ଅନେକଙ୍କଠାରେ ସେହି ସାମର୍ଥ୍ୟ ଅନୁପସ୍ଥିତ ମନେହୁଏ । 'ଉଦ୍‌ଭାସ'ର ଯେଉଁ ସଂଖ୍ୟାକୁ ଉଦ୍ଦେଶ୍ୟ କରି କବିଜଣକ ତାଙ୍କର ଏହି ଚିଠିଟି ଲେଖିଥିଲେ, ସେହି ସଂଖ୍ୟାରେ ତାଙ୍କର ନିଜର ଏକ କବିତା ମଧ୍ୟ ସ୍ଥାନିତ ହୋଇଥିଲା । ଚିଠିଟିର ଉତ୍ତର ମୁଁ ଦେଇ ନାହିଁ । ମୁଁ ଜାଣେ, କବିତା ତା'ର ସମ୍ଭାବନାଠାରେ ପହଞ୍ଚିବା ଏତେ ସହଜ ନୁହେଁ । ଶକ୍ତି ଦୃଷ୍ଟିରୁ ଦେଖିଲେ, ପ୍ରକାଶ ପାଉଥିବା କବିତାଗୁଡ଼ିକ ମଧ୍ୟରୁ କେତେକ ଯେ ଅସମର୍ଥ, ଏହାକୁ ଅସ୍ୱୀକାର କରାଯାଇ ନ ପାରେ । ହେଲେ ବି, ଯେଉଁମାନେ ସମକାଳରେ ଓଡ଼ିଆ କବିତାର ସର୍ଜକ, ସେହିମାନଙ୍କ କୃତି ହିଁ କବିତା ବିଭାଗରେ ସ୍ଥାନ ପାଉଛି । ସେହି କୃତିଗୁଡ଼ିକର ସଫଳତା ବା ବିଫଳତା ଭିତ୍ତିରେ 'ଉଦ୍‌ଭାସ' ମୂଲ୍ୟାୟିତ ହୋଇପାରେ । ମାତ୍ର ଆମର ଲକ୍ଷ୍ୟ ହେଉଛି, ସୃଜନପ୍ରତିଭାକୁ ଲାଳନ କରି ବଞ୍ଚାଇ ରଖିବା ଓ କବିତା ପ୍ରତି ଶ୍ରଦ୍ଧାକୁ ଉତ୍ତରୋତ୍ତର ବୃଦ୍ଧି କରାଇବା ।

କବିତାକୁ ଏକାନ୍ତ ଆପଣାର, ସବୁଠୁଁ ବେଶି ଗ୍ରହଣଯୋଗ୍ୟ ଓ ସର୍ବୋତ୍ତମ ସୃଜନ ସ୍ଥିତିରେ ପହଞ୍ଚାଇବା ନିମିତ୍ତ ପ୍ରୋତ୍ସାହନ ଦେବା 'ଉଦ୍‌ଭାସ'ର ଅନ୍ୟ ଏକ

ଲକ୍ଷ୍ୟ । କବିତାର ସମ୍ଭାବନାଠାରେ କବିତା ପହଞ୍ଚୁଯାଉ, ଏ ଦିଗରେ ଆମର ଉଦ୍ୟମ ଜାରି ରହିଛି । ଏପରି ହେଲେ, ହୁଏତ ଦିନେ ଓଡ଼ିଆ କବିତା ଅଧିକରୁ ଅଧିକ ଐଶ୍ୱର୍ଯ୍ୟମଣ୍ଡିତ ହେବ । ବହୁସଂଖ୍ୟକ କବି ଗଭୀର ଓ ମନନଶୀଳ ରଚନାରେ ଓଡ଼ିଆ କବିତାକୁ ସମୃଦ୍ଧ କରିଚାଲିବେ ।

ତେବେ, କବିତା ଯଦି ତା'ର ସମ୍ଭାବନାଠାରେ ପହଞ୍ଚୁପାରୁ ନାହିଁ, ତା'ର ଦୁଇଟି କାରଣ ଥାଇପାରେ । ପ୍ରଥମଟି ହେଲା – କାବ୍ୟକବିତାର ସମାଲୋଚନା, ଯାହାକି ଏକ ଉନ୍ନତ କଳା, ତାହା ତ୍ରୁଟିପୂର୍ଣ୍ଣ ଆକାଡେମିକ୍ ଅଭ୍ୟାସ ଯୋଗୁଁ ବିପଦାପନ୍ନ ହୋଇଛି । ଏପରିକି ଓଡ଼ିଶାରେ ଏହି କଳା ନିରପେକ୍ଷ ମର୍ଯ୍ୟାଦାର ବାହକ ହୋଇପାରୁ ନାହଁ । ସାହିତ୍ୟ ବିବେଚନାର ମାପକାଠିରେ ସମାଲୋଚନାକୁ ଉପଯୁକ୍ତ ଗୁରୁତ୍ୱ ଦିଆଯାଉ ନାହିଁ । ଅପର କାରଣଟି ଏୟା ହୋଇପାରେ ଯେ, ସ୍ୱ-ରଚନାରେ କବିତା ସର୍ଜକମାନଙ୍କର ନିଷ୍ଠା ଓ ଅଧ୍ୟବସାୟର ଅଭାବ ଏବଂ ଆନ୍ତରିକତାର ଅନୁପସ୍ଥିତି, ସହଜ ଯଶଲିପ୍‌ସାର ବ୍ୟାକୁଳତା । କବି ବ୍ୟକ୍ତିନିରପେକ୍ଷ କବିତା ରଚନା ନିମିତ୍ତ ପ୍ରୟାସୀ ହେଉଥିବା କାଳରେ, ତା'ର ଚେତନା କେତେକାଂଶରେ ବ୍ୟକ୍ତିକୈନ୍ଦ୍ରିକ ଭାବ ମଧ୍ୟରେ ମଜ୍ଜି ରହିବା ବିଚିତ୍ର ନୁହେଁ । ତେଣୁ କବିତାରେ ବ୍ୟକ୍ତିକୈନ୍ଦ୍ରିକ ଭାବ ସ୍ୱତଃ ପ୍ରାଧାନ୍ୟ ପାଇଯାଉଛି । ଏହା କବିତା ନିମନ୍ତେ ଅହିତକର ନୁହେଁ । ବ୍ୟକ୍ତିକୈନ୍ଦ୍ରିକତା ଓ ବସ୍ତୁକୈନ୍ଦ୍ରିକତାର ଆନୁପାତିକ ଉପାଦାନରେ ନିର୍ମିତ କବିତା ସଫଳତାପ୍ରାପ୍ତ ହୋଇଥାଏ ।

କବିର ବ୍ୟକ୍ତିଗତ ଜୀବନ ଶୈଳୀରେ, ଅସ୍ତିତ୍ୱରେ ରାଜନୀତିକ ଘଟଣାବଳୀ, ପ୍ରାତ୍ୟହିକ ସମ୍ବାଦ, ଆଳାପ-ଆଲୋଚନା, ସମ୍ପର୍କିତ ସ୍ମୃତି ଆଦି ମିଶି ରହିଥାଏ । ଶବ୍ଦମାନେ ଆସିଲାବେଳକୁ ନିଜର ଉପରୋକ୍ତ ଅସ୍ତିତ୍ୱ ସମ୍ପର୍କରେ କବି ସଚେତନ ନ ଥାଏ । ଶବ୍ଦଗୁଡ଼ିକ ଯେ ଖୁବ୍ ଅପ୍ରତ୍ୟାଶିତ (unpredictable) ଏକଥା ବା କେଉଁ କବି ନ ଜାଣେ ? ସେମାନେ କେବେ ଭାଷାକୁ, ବ୍ୟାକରଣକୁ ଚିରିପକାନ୍ତି ତ କେବେ ବସ୍ତୁ ଓ ମନନଶୀଳତାକୁ ଦି'ଫାଳ କରି ଫାଡ଼ିଦିଅନ୍ତି । ଶବ୍ଦର ଏତାଦୃଶ ଆଚରଣ ନିକଟରେ କବି ମୁହ୍ୟମାନ ହୋଇପଡ଼େ ନା ଶବ୍ଦ କବିଚେତନାର ବଶୀଭୂତ ହେବା ନିମିତ୍ତ ଅମଙ୍ଗ ହେଉଥିବାରୁ ଏପରି ଘଟିଥାଏ – ଏହା ନିର୍ଣ୍ଣୀତ ହୋଇପାରି ନାହିଁ ଏଯାଏଁ । ଏକଥା ସତ ଯେ, ପ୍ରତିଟି କବି ଶବ୍ଦର ଗୂଢ଼ ସତ୍ତାକୁ ଚିହ୍ନେ ଓ ଶବ୍ଦର ଗୂଢ଼ତା ପ୍ରତି ଯତ୍ନଶୀଳ ହୋଇଥାଏ । କବି-ମନୀଷିଗଣ ଏକଥା ମଧ୍ୟ ବିଶ୍ୱାସ କରନ୍ତି ଯେ, କବିର ସୁସମୃଦ୍ଧ ଚେତନା ପ୍ରତି

ଆକର୍ଷିତ ହୋଇ ଶବ୍ଦପଟଳ ଆସିଥାଆନ୍ତି । କବିତା ରଚନା ତେଣୁ ଏକ ସୂକ୍ଷ୍ମ ବ୍ୟାପାର ହୋଇପଡ଼େ ।

ଭଲ କବିତା ତା'ର କୌଣସି ସଂଜ୍ଞାର ଅନୁବର୍ତ୍ତୀ ହୋଇ ନ ପାରେ, ସଂଜ୍ଞାକୁ ଅସ୍ୱୀକାର କରିପାରେ, ଏପରିକି ସଂଜ୍ଞା ବହିର୍ଭୂତ ବି ହୋଇପାରେ । ଏ କ୍ଷେତ୍ରରେ କୌଣସି ତତ୍ତ୍ୱର ବିଶିଷ୍ଟତା ନାହିଁ । ତଥାପି ପ୍ରତ୍ୟେକ ସତ୍‌କବି କେତେକ ତତ୍ତ୍ୱ ଓ ତଥ୍ୟ ପ୍ରତି ସଚେତନ ରହିଥା'ନ୍ତି ନିଶ୍ଚୟ । ସାଧାରଣତଃ ରଚିତ କବିତା ତିନିପ୍ରକାରର ହୋଇଥାଏ, ପ୍ରଥମଟି ହୋଇପାରେ ପରମ୍ପରାକୁ ସମର୍ଥନ କରୁଥିବା କବିତା, ଯାହା କବିର ଧ୍ରୁପଦୀ-ମନସ୍କତାକୁ ଅଭିବ୍ୟକ୍ତ କରିଥାଏ । ଦ୍ୱିତୀୟଟି ହୋଇପାରେ ପୁଲକବାଦୀ, ଏକାଧାରରେ ଆଧୁନିକ ମଣିଷର ଅନ୍ତର୍ଜଗତର ମନୋବିଜ୍ଞାନଗର୍ଭିତ ଓ ବହିର୍ଜଗତର ବାସ୍ତବଦୃଷ୍ଟିସମ୍ପନ୍ନ କବିତା । ତୃତୀୟଟି ପରୀକ୍ଷାମୂଳକ, ତୀବ୍ର ଆବେଗଯୁକ୍ତ ଯାହା ବିଷୟବସ୍ତୁ ଅପେକ୍ଷା ଶୈଳୀରେ ଅଧିକ ଗୁରୁତ୍ୱ ଦେଇଥାଏ । ଅବବୋଧ ଅପେକ୍ଷା ଆବେଗକୁ ପ୍ରାଧାନ୍ୟ ଦେଇଥାଏ । ଏସବୁ ନିର୍ଣ୍ଣୟ ତତ୍ତ୍ୱାଶ୍ରୟୀ । ମାତ୍ର ସର୍ବୋତ୍ତମ ସୃଜନ ବେଳେ ବେଳେ କୌଣସି ନିର୍ଦ୍ଦିଷ୍ଟ ପ୍ରକାରର ନ ହୋଇ ଉପରୋକ୍ତ ତିନି ପ୍ରକାରର ସମ୍ଭାବନାକୁ ନିଜ ମଧ୍ୟରେ ପ୍ରତିବିମ୍ବିତ କରିଥାଏ ।

ଏତେ ଅନିଶ୍ଚିତତା ସତ୍ତ୍ୱେ, ଏଭଳି ଏକ ଜଟିଳ ସୃଜନକର୍ମରେ ତଥାପି ମନଃପ୍ରାଣ ନିବେଶ କରିଥିବା କବିକୁ ଲକ୍ଷ୍ୟକଲେ, ଯେତିକି ଆଶ୍ଚର୍ଯ୍ୟ ଲାଗେ, ଆଶ୍ୱସ୍ତ ଲାଗେ ମଧ୍ୟ ସେତିକି ।

ପରିଶେଷରେ, 'ଉଦ୍‌ଭାସ'ର ଏହି ସଂଖ୍ୟାଟି ପ୍ରାବୃଟର ସମ୍ଭାଷଣ । ପ୍ରାବୃଟ ହେଉ ମଙ୍ଗଳପ୍ରଦ, ହେଉ ସୃଜନମୁଖୀ ।

॥ ଛଅ ॥

ଚଳିତ ବର୍ଷର ନିର୍ଦ୍ଦିଷ୍ଟ ଗୋଟିଏ ଋତୁରେ ମୃତ୍ୟୁର ଅଭିଯାନ ବଳବତ୍ତର ରହିଲା । ଓଡ଼ିଆ ସାହିତ୍ୟାକାଶର ମହା ମହା ନକ୍ଷତ୍ର ଲିଭିଗଲେ ଜଣକ ପରେ ଜଣେ । ଯେଉଁ କବିଙ୍କ ରଚନା କୈଶୋରଠାରୁ ଏଯାବତ୍ ଆମ୍ଭମାନଙ୍କୁ ଦୀକ୍ଷିତ ଓ ଉଦ୍‌ବୁଦ୍ଧ କରି ରଖିଲା, ସେମାନେ ପ୍ରସ୍ଥାନ କରିଗଲେ । କବି ସଚ୍ଚି ରାଉତରାୟ, କବି ଗୁରୁପ୍ରସାଦ ମହାନ୍ତି, କବି ବେଣୁଧର ରାଉତଙ୍କ ଦେହାନ୍ତ ଓଡ଼ିଆ କବିତାପ୍ରେମୀଙ୍କ ନିମିତ୍ତ ନିଦାରୁଣ ଆଘାତ । ଏହି ଦିବଂଗତ ଆତ୍ମାଙ୍କ

ପ୍ରତି ମୁଁ ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ବରେଣ୍ୟ କବିତ୍ରୟଙ୍କ ଉଦ୍ଦେଶ୍ୟରେ ନିବେଦିତ ମୋର ନିମ୍ନୋକ୍ତ ଆଲେଖ୍ୟ :

## କାକଜ୍ୟୋସ୍ନା, କାକଜ୍ୟୋସ୍ନା, ଜ୍ୟୋସ୍ନା କ'ଣ ମିଛ ?

ସଚ୍ଚି ରାଉତରାୟଙ୍କ କବିତା ପ୍ରାୟ ଗୋଟିଏ ସମଗ୍ର ଶତାବ୍ଦୀରୁ ଅଧିକ କାଳ ଜନମାନସକୁ ରସସିକ୍ତ ଓ ଉଦ୍‌ବୁଦ୍ଧ କରିଛି । ତାଙ୍କର କବିତ୍ୱ ବିରଳ ମାନବିକ ସୌଭାଗ୍ୟର ଅଧିକାରୀ । ସେ କେବେ ସାମ୍ୟବାଦୀ ତ କେବେ ରମ୍ୟବାଦୀ । ଯେଉଁ ମତବାଦ ପୋଷଣ କରନ୍ତୁ ନା କାହିଁକି, ତାଙ୍କର ଶୈଳୀ ଉଜ୍ଜ୍ୱଳ ଓ ଆକର୍ଷଣୀୟ, ବକ୍ତବ୍ୟ ସରସ ଓ ଉଦ୍‌ବୋଧକ । ତାଙ୍କ କବିତାର ଏତାଦୃଶ ଯାଦୁକରୀରେ ମୁଁ ମୁଗ୍ଧ ହୋଇଥିଲି, କିଶୋର କାଳରେ । ନା ବୁଝିଥିଲି 'ବାଦ', ନା ତା'ର ନିହିତାର୍ଥ । କିନ୍ତୁ କି ମାଦକତା ଥିଲା କେଜାଣି ସେ ଧାଡ଼ିଗୁଡ଼ିକରେ – 'କାକଜ୍ୟୋସ୍ନା, କାକଜ୍ୟୋସ୍ନା / ଜ୍ୟୋସ୍ନା କ'ଣ ମିଛ / ସକାଳର ନିର୍ଲଜ୍ଜ ଛଳନା ?' ମୁଖସ୍ଥ କରି ମନ ଭିତରେ ଗୁଣୁଗୁଣୋଉଥିଲାବେଳେ ସତକୁ ସତ ଜହ୍ନରାତି ଠିଆ ହୋଇଯାଉଥିଲା ସାମ୍ନାରେ, ଶୁଭିଯାଉଥିଲା କୁଆର ରାବ... କଲେଜରେ ପ୍ରଥମବର୍ଷ ପଢ଼ିବା ପର୍ଯ୍ୟନ୍ତ ।

ମୁଁ ତାଙ୍କୁ ପ୍ରଥମେ ଦେଖେ ୧୯୬୪ ମସିହା 'ଚାରଣ କବି ସମ୍ମିଳନୀ'ରେ ଶହୀଦ ଭବନରେ । ଗୁଜୁରାଟରୁ ଆସିଥା'ନ୍ତି କବି ଚାରି ଜଣ । ଚୀନ୍ ଆକ୍ରମଣର ପରବର୍ତ୍ତୀକାଳରେ, ଜାତୀୟତାର ଅଭ୍ୟୁତ୍‌ଥାନ ଲକ୍ଷ୍ୟ ନେଇ ଏହି କବିମାନେ ସାରା ଭାରତ ଘୂରି ଉଦ୍‌ବୋଧନ ଦେଉଥା'ନ୍ତି । ସେହିଠାରେ ଚାରଣକବିଙ୍କ ପରିଚୟ ପ୍ରଦାନ କରି, ସୂଚନା ଦେଉଥିଲେ କବି ସଚ୍ଚିଦାନନ୍ଦ ରାଉତରାୟ । ପରିଧାନ ଖଦଡ଼ ଟ୍ରାଉଜର୍ ପଞ୍ଜାବି, ମୁଣ୍ଡରେ ଖଦଡ଼ ଟୋପି । ଆଉ ଥରେ ସେ ମୋତେ କବିତା ରଚନା ନିମିତ୍ତ ଉତ୍ସାହିତ କରିଥିଲେ । ୧୯୬୪/୬୫ ମସିହା ହେବ, 'ଝଙ୍କାର'ରେ ମୋର ଗୋଟେ କବିତା ପ୍ରକାଶ ପାଇଥାଏ । ତତ୍କାଳର କୌଣସି ଏକ ସାହିତ୍ୟ ସଭାରେ ସେ ମୋ ପାଖକୁ ଆସି କବିତାଟିକୁ ଖୁବ୍ ତାରିଫ୍ କରିଥିଲେ । ମୁଁ ବିହ୍ୱଳ ହୋଇପଡ଼ିଥିଲି ।

ତା'ପରେ ତାଙ୍କ ସହ ଅନେକବାର ଆଳାପ ହୋଇଛି, ପୁଣି ତାଙ୍କ କୃତି ସମ୍ପର୍କରେ ମୋତେ ବକ୍ତବ୍ୟ ରଖିବାକୁ ହୋଇଛି । ୨୦୦୩ ଜାନୁଆରୀରେ 'ଉଦ୍‌ଭାସ' ନିମିତ୍ତ ଏକ ସାକ୍ଷାତ୍‌କାରପାଇଁ ମୁଁ ତାଙ୍କ ଘରକୁ ଯାଇଥିଲି । ଏପରି ଗୋଟେ କବିତା ପତ୍ରିକା ନୂଆହୋଇ ପ୍ରକାଶ ପାଉଛି ଜାଣି ସେ ଆନନ୍ଦିତ

ହୋଇଥିଲେ । ତାଙ୍କୁ ଦେଖାକରିବାକୁ ମତେ ବାରବାର ଖବର ପଠାଇଥିଲେ । ମୋର ସୌଭାଗ୍ୟ, 'ଉଦ୍‌ଭାସ'ର ପ୍ରଥମ ସଂଖ୍ୟାରେ ତାଙ୍କ ସହ ଏକ ଅର୍ଥପୂର୍ଣ୍ଣ ସାକ୍ଷାତ୍‌କାର ପ୍ରକାଶ କରିପାରିଥିଲି । ଓଡ଼ିଆ ପାଠକର ମନୋଭୂମିରେ ସେ ଅଜର, ଅମର । ଏକ କାବ୍ୟିକ ପ୍ରସଙ୍ଗରେ, ଯଥାର୍ଥରେ କବି ଗୁରୁପ୍ରସାଦ ସଂଯୁକ୍ତ କରିଥିଲେ ଏ ଦୁଇଟି ଶବ୍ଦ 'ତାରା ଆଉ ସଚ୍ଚି ରାଉତରା' ।

## ଅରୁନ୍ଧତୀ ତାରାର ଆଲୁଅ

ସେ ଅଲୋକାଭିଳାଷୀ-ଦେହର ବିଭୋରପଣ, କାମନାର ବିକାର ଓ କ୍ଷୟଶୀଳତାକୁ ଶରୀରର ଓ ଆତ୍ମାର ପ୍ରତିଟି ଅଣୁରେ ସେ ତୀବ୍ର ଭାବେ ଅନୁଭବ କରିଛନ୍ତି । କବି ଗୁରୁପ୍ରସାଦ ଯେତିକି ନିବିଡ଼ରେ ବୁଝିଛନ୍ତି ଅଲଙ୍ଘ୍ୟ କାମନାକୁ, ସେତିକି ନିବିଡ଼ରେ ବୁଝିଛନ୍ତି ଅମୋଘ ମୃତ୍ୟୁକୁ । ତାଙ୍କର 'ଭଲପାଇବା' – ଦେହର ସମ୍ଭାର ତା'ର ମୂଳଭୂମି, ଅଥଚ ଦେହର ନଷ୍ଟଶୀଳତା ଓ ହ୍ରସ୍ୱପଣରୁ ସେ କାତର ହୋଇ ମୁକ୍ତି ଖୋଜନ୍ତି – ''ମହାପ୍ରଭୁ ମୁକ୍ତିଦିଅ... ଏହି ଯାତ୍ରା ହେଉ ମୋର ଶେଷ ଯାତ୍ରା ଏ ଦେହରୁ... ।''

'ଭଲ ପାଇବା'ର ସାଧନାରେ ତାଙ୍କର କବିତ୍ୱ ଓ ବ୍ୟକ୍ତିତ୍ୱ ଏକ ଓ ଅବିଚ୍ଛେଦ୍ୟ ହୋଇପଡ଼ିଛି। ସ୍ୱ-ଆବେଗ ସପକ୍ଷରେ ସେ ସ୍ପର୍ଦ୍ଧାର ସହ ଛିଡ଼ା ହୋଇଛନ୍ତି । ଆବେଗକୁ ମୂଲ୍ୟ ଦେବାପାଇଁ କମ୍ ବିଡ଼ମ୍ବନା ସହ୍ୟ କରି ନାହାନ୍ତି ସେ । ନିଜକୁ ପ୍ରେମାବେଗର ଭୂମି ରୂପେ ପ୍ରସ୍ତୁତ କରିଛନ୍ତି – ଅଥଚ ତାଙ୍କ ଅନ୍ତର୍ମନର ପ୍ରଜ୍ଞା ଓ ବାସ୍ତବ ସଚେତନତାର ତୁଳନା ନାହିଁ । ଏହି କବିଙ୍କ କବିତା ପଢ଼ିଲାବେଳେ ଦିଶିଯାଏ କଟକ ଷ୍ଟେସନ୍ ନିକଟବର୍ତ୍ତୀ ରେଭେନ୍‌ସା କଲେଜ ଅଞ୍ଚଳର ଦୃଶ୍ୟ, ପୁଣି କେବେ ଦିଶିଯାଏ ଶୈଶବର ଆମ୍ବଗଛରେ ମାଡ଼ିଥିବା ସେଇ ଚେକାଏ ନିର୍ମୂଳୀ ଲଟା ।

କବି ଗୁରୁପ୍ରସାଦଙ୍କ ରଚନା ସମ୍ଭାର ନିଶ୍ଚୟ 'ମିତଞ୍ଚ ସାରଞ୍ଚ'ର ବିଶିଷ୍ଟତା ପ୍ରତିପାଦନ କରେ । ତାଙ୍କ ସଂରଚନାରେ ଜଣେ ସତ୍‌କବିର ଅନ୍ତର୍ଜଗତର ପ୍ରତ୍ୟାହାର-ପ୍ରବଣତା, ପ୍ରକାଶର ତୀକ୍ଷ୍ଣତା, ବହୁଶାସ୍ତ୍ରଦର୍ଶିତା ଏବଂ ସାହିତ୍ୟିକ ପରମ୍ପରାର, କିମ୍ବଦନ୍ତୀ ଓ ଇତିହାସର ଗଭୀର ଜ୍ଞାନ, ପରିବେଶ ସହ ଆତ୍ମୀୟତା ତଥା ଜୀବନବୋଧର ତିକ୍ତ ମଧୁର ଚିତ୍ର ଉତ୍କୀର୍ଣ୍ଣ । ପ୍ରାଚ୍ୟ ସଂସ୍କୃତିର ଆତ୍ମିକ ନିର୍ଯ୍ୟାସ ସହ ପାଶ୍ଚାତ୍ୟର ବିକାଶମୁଖୀ ଚିନ୍ତାଧାରାର ସମନ୍ୱୟ ଘଟାଇ ସେ ଓଡ଼ିଆ କବିତାକୁ ଐଶ୍ୱର୍ଯ୍ୟମୟ କରିଛନ୍ତି ।

**ନୀରବିତ ବିପଞ୍ଚୀ**

'ପିଙ୍ଗଳାର ସୂର୍ଯ୍ୟ'ର କବିଙ୍କ କବିତା ରଚନା ସଂଖ୍ୟାଦୃଷ୍ଟିରୁ ସୀମିତ । ମାତ୍ର ଭାଗବତର ଚିରନ୍ତନ ନାରୀସତ୍ତା 'ପିଙ୍ଗଳା'ର ଅଧ୍ୟାତ୍ମ ଉପଲବ୍‌ଧିକୁ ସେ ମାଟିଗଢ଼ା ଦେହଠାରୁ ନକ୍ଷତ୍ରଲୋକ ପର୍ଯ୍ୟନ୍ତ ସମ୍ପ୍ରସାରିତ କରିଛନ୍ତି । ବାସ୍ତବରେ ଅସୀମ ସହ ସଂଯୁକ୍ତ ନ ହେଲେ ସସୀମ ସ୍ଥିତିହୀନ ଓ ନିରର୍ଥକ ହୋଇଯାଏ । ଦେହର ସ୍ଥିତି ମଧ୍ୟରେ ହିଁ ବିଦେହର ଅସତ୍ତା ଉଦିତ ହୋଇଥାଏ । ଏହି ଅଭିବ୍ୟକ୍ତି ତାଙ୍କର ଏଇ ଦୀର୍ଘ କବିତାଟିରେ ପ୍ରକଟିତ । ତାଙ୍କ କବିତା 'କାଠଘୋଡ଼ା ପାଣି ପି', 'ମଳୟର ଆତ୍ମହତ୍ୟା', 'ସୁନାସିଂହର ସ୍ୱପ୍ନ' ଉତ୍ତର ସ୍ୱାଧୀନତା କାଳର ସମାଜ ଓ ରାଜନୀତିକୁ ପ୍ରତୀକିତ କରିଥାଏ । ଲୋକକଥା ତାଙ୍କ କାବ୍ୟକଳାର ଅନ୍ୟ ଏକ ଉପାଦାନ । ତେବେ ଦେହ ଓ ବିଦେହର କବି ସେ । ଏକାଧାରରେ ଲୋକଭାଷା ପୁଣି ତତ୍‌ସମ ଭାଷାର ସେ ଦକ୍ଷ ବିନ୍ଧାଣି ।

**ଶାଶ୍ୱତ ଶରତ**

ଆମ ସନ୍ନିଧିକୁ ଆଜି ଶିଶିରଭିଜା ଗଙ୍ଗଶିଉଳି ଉପରେ ରକ୍ତଚନ୍ଦନ ରଙ୍ଗର ପାଦ ଥାପି ଦେବୀ ଆସିଛନ୍ତି । ମହାମାୟା ଦୁର୍ଗା ଓ ମହାକାଳୀ ଲୋକ ସକଳକୁ ଶାନ୍ତି ମୈତ୍ରୀରେ ଉଦ୍‌ବୁଦ୍ଧ କରନ୍ତୁ – ଆଶୀର୍ବଚନରେ ଧନ୍ୟ କରନ୍ତୁ, ଏହାହିଁ ମୋର ବିନମ୍ର ଆଶା ।

॥ ସାତ ॥

ସୃଜନଶୀଳ ରଚନା ମଧ୍ୟରୁ କେତେକକୁ ଚୟନ କରିବା ଏକ କଷ୍ଟକର ବ୍ୟାପାର । ଖୁବ୍ ନିଷ୍ଠାରେ ବସିଲେ ଚୟନ କରି ବି ଶେଷକୁ ଜଣାଯିବ ଯେ, କୋଉଠି କିଛି ସାଲିସ୍ କରାଯାଇଛି; ଯାହା ଆଦୌ ସନ୍ତୋଷଜନକ ନୁହେଁ । 'ଉଦ୍‌ଭାସ' ସମ୍ପାଦନାମଣ୍ଡଳୀଦ୍ୱାରା ଦୁଇ ତିନିବାର ତନଖି ହେବା ପରେ ହିଁ କବିତା ନିର୍ବାଚନ ଶେଷ ହୁଏ । ମିଳିଥିବା କବିତାଗୁଡ଼ିକ ମଧ୍ୟରୁ ଚବିଶ ପଚିଶଟି ବାଛିବାପାଇଁ ସବୁ କବିତା ପଢ଼ିବାକୁ ପଡ଼େ । ବହୁ କବିତା ପଢ଼ିଲା ପରେ ପରେ ମନରୁ ଲିଭି ଯାଆନ୍ତି । ବାରି ହୋଇପଡୁଥିବା କବିତା ନିଜକୁ ପ୍ରତିଷ୍ଠା କରେ, ଯଦିଓ ସେପରି କବିତା ଥାଏ ଅଳ୍ପ କେତୋଟି ।

ଏପରି କେତୋଟି କବିତା ଥାଏ – ଯେଉଁଗୁଡ଼ିକର ଯୋଗ୍ୟତା ସମସ୍ତରର । ତା' ଭିତରୁ ଗୋଟିକୁ ବାଛିବା କଷ୍ଟକର ହୋଇପଡ଼େ । ମୋର ମୁଖ୍ୟ ଲକ୍ଷ୍ୟ

ହେଉଛି, କବିତା ପ୍ରତି ପାଠକୀୟ ଶ୍ରଦ୍ଧା ଓ କାବ୍ୟିକ ବିଶ୍ୱାସ ବଳବତ୍ତର ରହୁ । ଏହି ପ୍ରଚେଷ୍ଟା ଏଯାବତ୍ ସାର୍ଥକ ହୋଇଛି ବୋଲି କହିହେଉ ନାହିଁ । ତେବେ ପତ୍ରିକା ମାଧ୍ୟମରେ ନୂଆ କବିତାର ଆବିଷ୍କାର ଓ ମୁଦ୍ରଣକୁ ତ୍ରୁଟିରହିତ କରିବାର ଯତ୍‌ପରୋନାସ୍ତି ଉଦ୍ୟମ ଆମର ସକ୍ରିୟ ଅଛି ।

କବିତାର ଚୟନ କେଉଁ ନିୟମରେ ହେବ, କେଉଁ ମୂଳ କାରଣକୁ ଭିତ୍ତି କରି ହେବ ? ଭଲ କବିତାର ଦାବିକୁ କିପରି ଉପସ୍ଥାପିତ କରାଯିବ ? କବିତାର ଭଲପଣର ବାସ୍ତବ ପ୍ରଭାବ କିପରି ? ଅପରପକ୍ଷରେ ଅତି ଭଲ କବିତା ନିଜକୁ ଚିହ୍ନାଇବାର ସମସ୍ତ କାରଣକୁ ବି ଅତିକ୍ରମ କରିଯାଇପାରେ । ସତ୍ କବିତାପ୍ରେମୀ ଏକଥା ଜାଣେ ଓ ବିଶୁଦ୍ଧ କାବ୍ୟିକ ବାସ୍ନାକୁ ବାରିପାରେ । ତେବେ, କବିତାଟି ଯେ ଭଲ ଲାଗୁଛି – ଏହି ଉପଲବ୍‌ଧି ଭଲ କବିତାର ତ୍ରୁଟିହୀନ ସମୀକ୍ଷାତ୍ମକ ଦିଗ୍‌ଦର୍ଶକ ହୋଇପାରେ । ପତ୍ରିକାଟିରେ କବିତା ଚୟନ ଭଲ ହେବାପାଇଁ ବିଶ୍ୱାସ ଓ ଆସ୍ଥା ନିହାତି ଜରୁରୀ । ଗୋଟିଏ ପାଠକ ଗୋଷ୍ଠୀ ଯେ, ପତ୍ରିକାଟିକୁ ଅପେକ୍ଷା କରିଛନ୍ତି, ଏଇ ବିଶ୍ୱାସ ସମ୍ପାଦକଙ୍କଠାରେ ରହିଥିବା ଯେତିକି ଗଠନମୂଳକ, ସମ୍ପାଦକଙ୍କ ବିଚାର ପ୍ରତି ପାଠକର ଆସ୍ଥା ରହିବା ସେତିକି ଅପରିହାର୍ଯ୍ୟ । ବହୁବାର ପଠିତ ହେବା ନିମିତ୍ତ ଯୋଗ୍ୟ କବିତା ଏବେ ନିଶ୍ଚୟ ଲେଖାଯାଉଛି, ସଂଖ୍ୟାରେ ଅଳ୍ପ ହେଉ ପଛେ । ଏଗୁଡ଼ିକୁ ବାଛି, ଆକର୍ଷଣୀୟ ଭାବେ ଉପସ୍ଥାପିତ କରିବା 'ଉଦ୍‌ଭାସ' ସମ୍ପାଦନାର ଦାୟିତ୍ୱ । ଏଇ ଇଲେକ୍‌ଟ୍ରୋନିକ୍ ପତ୍ରିକା ଯୁଗରେ ଯେଉଁ ପାଠକର କବି ପ୍ରତି କୌତୂହଳ ଅଛି, ସଦିଚ୍ଛା ଅଛି, ସେହି ପାଠକକୁ ଉଦ୍‌ଭାସ ସହ ସମ୍ବନ୍ଧିତ କରିବା ଲକ୍ଷ୍ୟ ନେଇ ଏଇ ଦାୟିତ୍ୱ ନିର୍ବାହ କରିବାରେ ଆମେ ଆଗ୍ରହୀ ।

ଗୋଟିଏ ଭଲ କବିତାରେ କହିବାର ବାଗ, କହିବାର କଥା ଓ ହୃଦୟବତ୍ତା ମିଶି ରହିଥାଏ । ଥାଏ ବି ସଂକ୍ଷିପ୍ତତା, ଉଦ୍‌ବୋଧକ ବର୍ଣ୍ଣନା ଓ ବ୍ୟଙ୍ଗ ଦୃଷ୍ଟି । କବି ତରୁଣ ବା ପ୍ରବୀଣ ହୁଅନ୍ତୁ, କବିତା ଯଦି ଭଲ, ତାହା ନିଶ୍ଚୟ ଉପରୋକ୍ତ ବିଭାବସମ୍ପନ୍ନ ହୋଇଥାଏ । ସଂଖ୍ୟାଧିକ ତରୁଣ କବିଙ୍କ ରଚନା ନିଶ୍ଚୟ ଆକର୍ଷଣୀୟ, ଯେଉଁଥିରେ ସହର ଓ ଗ୍ରାମାଞ୍ଚଳର ବର୍ଣ୍ଣନା ରହିଛି, ଅଧିକ ମାତ୍ରାରେ ଗ୍ରାମାଞ୍ଚଳର ବର୍ଣ୍ଣନା ହିଁ ରହିଛି । ରହିଛି ଅନ୍ତର୍ଜଗତର ସୂକ୍ଷ୍ମ ଉଦ୍‌ବେଳନକୁ ଭାଷାଗତ କରିବାର ଆନ୍ତରିକ ପ୍ରୟାସ ।

କବିତାର ମୂଳକଥା ହେଲା, ପରିଚିତର ଚିତ୍ରଦେବା ସହିତ ଅପରିଚିତ ଜଗତ ଓ ସେ ଜଗତର ସତ୍ୟ ସମ୍ପର୍କରେ ପରିଚୟ ପ୍ରଦାନ କରିବା ।

ଭଲ କବିତାଟିଏ ତା'ର ଶୈଳୀର ବୈଦ୍ୟୁତିକ ବିଭାବ, ବକ୍ତବ୍ୟ, ସ୍ୱରର ନୂଆପଣଦ୍ୱାରା ଆମ ପ୍ରତ୍ୟେକଙ୍କ ରୁଚିକୁ ସନ୍ତୁଷ୍ଟ କରିଥାଏ । ଅଧିକାଂଶ ସମୟରେ ପାଠକର ରୁଚିବୋଧକୁ ଏପରି ବାନ୍ଧିରଖେ, ଚେତନାକୁ ଏପରି ତୀବ୍ରଭାବେ ପ୍ରକାଶୋନ୍ମୁଖୀ କରାଏ, ଯାହାଫଳରେ ଏହା ମସ୍ତିଷ୍କରେ ବଞ୍ଚିରହେ ଓ ଆଜୀବନ ଉତ୍ତରୋତ୍ତର ଅଭିବୃଦ୍ଧି ପ୍ରାପ୍ତ ହେଉଥାଏ । କବିତାର ପାଠକ ଥରକୁ ଥର ତାକୁ ମନେ ପକାଏ, ଆବୃତ୍ତି କରେ । ସମ୍ପାଦକ ମଧ୍ୟ ପ୍ରଚଳିତ ରୁଚିକୁ ଅଧିକ ପରିମାର୍ଜିତ କରିବା ସହ, କବିତାର ସମ୍ଭାବନା ପ୍ରତି ସଚେତନ ରହିଥାଏ । ଆଜିକାଲିର ପାଠକ ଭଲ କବିତାକୁ ଗ୍ରହଣ କରିବାପାଇଁ କବିତାର ପ୍ରଥମ ଧାଡ଼ି ତାକୁ ଆକୃଷ୍ଟ କରୁ – ଏହା ଆଶା କରେ । କବିତା ଆଉ କିଛି କରୁ ନ କରୁ ପ୍ରଥମେ ପାଠକକୁ ଟାଣି ନେବାର ଯୋଗ୍ୟତା ହାସଲ କରିବା ଦରକାର । ଏସବୁ ଭଲ କବିତାର ସମ୍ଭାବନା । ଏହାକୁ ଆଖିଆଗରେ ରଖି 'ଉଦ୍‌ଭାସ' ତା'ର ଗତିପଥକୁ ନିୟନ୍ତ୍ରଣ କରିଥାଏ ।

## ବର୍ଣ୍ଣନାତ୍ମକ କବିତାର ରିସ୍କ

ଆଜିକାଲି ଗୋଟେ ନିର୍ଦ୍ଦିଷ୍ଟ ଧରଣର କବିତା ଅଧିକ ସଂଖ୍ୟାରେ ପତ୍ରିକାରେ ପ୍ରକାଶ ନିମିତ୍ତ ଆସୁଛି । ସେସବୁରେ ଗୋଟିଏ ଘଟଣାକୁ କବିତା ରୀତିରେ ବର୍ଣ୍ଣନା କରାଯାଉଛି । ସତ୍ୟ ବା କଳ୍ପନାର ପରିଧିରୁ ଘଟଣାଟିକୁ ନେଇ ତା'ର ବର୍ଣ୍ଣନାରେ କବିକୁ ସତେଜ କାବ୍ୟିକ ଶୈଳୀର ପ୍ରୟୋଗ ଓ ପ୍ରାଣସତ୍ତାର ପ୍ରତିଷ୍ଠା କରିବାକୁ ହେବ । କାରଣ ଘଟଣାଟିର ବର୍ଣ୍ଣନା ଯଦି ବାସ୍ତବ ହେଉ ହେଉ ପାଲଟିଗଲା ଅପରିପକ୍ୱ ଓ ତୁଚ୍ଛ, ତେବେ ବର୍ଣ୍ଣନାଟି ସମ୍ବାଦଧର୍ମୀ ହୋଇଗଲା । କାବ୍ୟିକ ଆବେଦନ ହରାଇଲା – ତା'ର ପ୍ରାଣ ଚଳମାନ ହେଲା ନାହିଁ । ରଚନା କଳାବ୍ୟଞ୍ଜିତ ହେଲେ ହିଁ କବିତାର ରୂପ ନିଏ । ତେଣୁ କୌଣସି ସାମାନ୍ୟ ବା ଅସାମାନ୍ୟ ଘଟଣାକୁ କାବ୍ୟରୂପ ପ୍ରଦାନ କଲାବେଳେ ତାକୁ ଜୀବନ୍ୟାସ ଦେବା କବି ପକ୍ଷରେ ଏକାନ୍ତ ବାଞ୍ଛନୀୟ । ବର୍ଣ୍ଣନାତ୍ମକ କବିତା ରଚନା କିଛି ସହଜ କର୍ମ ନୁହେଁ । ଆତ୍ମସତ୍ତାର ଗଭୀର ନିମଜ୍ଜନ ବ୍ୟତିରେକେ ଏହା କାବ୍ୟିକତା ହରାଇବା ଅବଶ୍ୟମ୍ଭାବୀ । କବିତା ରଚନା ପ୍ରଚୁର ଅବଧାନତା, ଗତିଶୀଳ ପ୍ରାଣବତ୍ତା ଓ ଜୀବନ୍ତ ଭାଷା ଜ୍ଞାନର ଅପେକ୍ଷା ରଖେ । ତେଣୁ ବର୍ଣ୍ଣନାତ୍ମକ କବିତାର ପ୍ରମାଦ ରହିଛି । କବି ଏ ଦିଗରେ ଶାଣିତ ଓ ସତର୍କ ଦୃଷ୍ଟି ରଖିଲେ ଯାଇ କବିତା ସଫଳତା ଦିଗକୁ ଅଗ୍ରସର ହେବ ।

ନୂଆ ବର୍ଷ, ନୂଆ ସମୟ ଦେଇ ଆମେ ଗତି କରିଚାଲିଛେ । ମୁଁ ଆଶା କରେ, ଏହି ନୂଆ ସମୟ ଅଧିକ ସମ୍ଭାବନାପୂର୍ଣ୍ଣ ହେଉ, ହେଉ ଅଧିକରୁ ଅଧିକ କଳା-ସଚେତନ ଓ ଏହା ମଣିଷକୁ ସମ୍ବେଦନଶୀଳ କରିବାରେ ସହାୟକ ହେଉ ।

॥ ଆଠ ॥

ଉଦ୍‌ଭାସର ଅଷ୍ଟମ ସଂଖ୍ୟା ଆଲୋକକୁ ଆସୁଛି । ଏହି ପରିପ୍ରେକ୍ଷୀରେ ଏହାର ସମ୍ପାଦନାର ନାନାଦି ସମସ୍ୟା ମନରେ ଉଙ୍କିମାରୁଛି; ମାତ୍ର କବିତା ପତ୍ରିକାଟିର ମୁଖ୍ୟ ସମସ୍ୟାକୁ ହିଁ ଏଠାରେ ଉପସ୍ଥାପନ କରିବା ପ୍ରାସଙ୍ଗିକ ହେବ ବୋଲି ମନେକରୁଛି ।

## କବିତା ଓ କୋଳାହଳ

ଆଜିର କବିତାରେ ଶବ୍ଦ ଉପରେ ଶବ୍ଦ ଗଦା ହୋଇପଡ଼ି, ବିଛେଇ ହୋଇପଡ଼ି ଚାରିଆଡ଼ ରୁନ୍ଧି ଦେଉଛି, ଅସ୍ପଷ୍ଟ କରିଦେଉଛି । ହୃଦୟରୁ ହୃଦୟକୁ ସେତୁଟିଏ ବାନ୍ଧିବାର ସାମର୍ଥ୍ୟ ହରାଉଛି । ଯଦି ଆମେ ମିଥ୍ୟା କହୁଚେ, ତେବେ ନୀରବ ରହିଯିବା ଭଲ । କିଛି ନ କହିବା ଭଲ । ଏହି ଚିନ୍ତା ମଧ୍ୟ ଏକ ପଳାୟନପନ୍ଥୀ ମନୋଭାବ । ସତ୍‌ଲେଖକ ସତ୍ୟର ଉଚ୍ଚାରଣ କରିବ ନିଶ୍ଚୟ । ଭାଷାଦ୍ୱାରା ଭାଷାର ମିଥ୍ୟାକୁ ଜୟ କରିବାକୁ ହେବ । ଭାଙ୍ଗି ଯାଉଥିବା, ମିଥ୍ୟାରେ ପୋତି ପଡୁଥିବା ଜୀବନର, ସମାଜର ଆଟୋପରୁ ମୁହଁ ଫେରାଇ ନ ନେଇ ତହିଁରେ ସଂସ୍କାର ଆଣିବାର ପ୍ରୟାସକୁ ଉଜ୍ଜୀବିତ କରିବାକୁ ହେବ । କେତେ ରଙ୍ଗିନ ପ୍ରଚ୍ଛଦରେ କବିତା ବହି ଛପାଯାଉଛି । କେତେ କେତେ ଉପଲବ୍‌ଧିହୀନ ଉଚ୍ଚାରଣ, କୋଳାହଳ ପ୍ରକଟିତ ହେଉଛି । କବି ଯାହା ଚିନ୍ତା କରୁଛି, ଯାହାକୁ ବିଶ୍ୱାସ କରୁଛି, ଯେଉଁପରି ଜୀବନଯାପନ କରୁଛି କବିତା ତା'ର ପ୍ରତିବିମ୍ବକୁ ଧାରଣ କରିବା ଆବଶ୍ୟକ । ମାତ୍ର ଏହା ପ୍ରାୟ ଘଟୁ ନାହିଁ । ଏପରି କେତେକ କବିତା ଅଛି, କବିର ଉପଲବ୍‌ଧି ନ ଥାଉ ବରଂ, ଯେଉଁପରି କହିଲେ ତାରିଫ୍ ମିଳିବ, ସମ୍ମାନ ମିଳିବ ବୋଲି କବି ଅନୁମାନ କରୁଛି, କବିତାରେ ସେହିପରି କରୁଛି । ମାତ୍ର ଏହି ଯୁଗ କବିତାରେ ଏକ ସ୍ୱଚ୍ଛତାକୁ ସ୍ୱୀକାର କରେ । ଏହି ସ୍ୱଚ୍ଛତା ସରଳତାରୁ ସଂଜାତ । ଅଜ୍ଞତା ନୁହେଁ, ଜ୍ଞାନର ସାଗରକୁ ଅତିକ୍ରମି ନିରାଡ଼ମ୍ବର ଭାବେ ନିଜକୁ ପ୍ରକାଶ କରିବା ହିଁ ଏହି ସରଳତାର ପରିଭାଷା । ଆଡ଼ମ୍ବରମୟ

ମିଥ୍ୟାଚାରୀ କବିତା ଯେ ବିଫଳ ଓ ତାହାର କୋଳାହଳଦ୍ୱାରା ମଣିଷ ଅତିଷ୍ଠ ହୁଏ, ଏହା ଅବିସମ୍ବାଦିତ । କବିତାରେ ଶବ୍ଦର କୋଳାହଳ ରସପିପାସୁ ବ୍ୟକ୍ତିକୁ କ୍ଳାନ୍ତ ଓ ଅବସନ୍ନ କରି ତୋଳେ । କୋଳାହଳ ଏକପ୍ରକାର ବିଡ଼ମ୍ବନା ।

ହୃଦୟହୀନତା ଓ ମିଥ୍ୟାଚାରର ଏଇ ଜଗତରେ ଏକବିଂଶ ଶତକର ବ୍ୟକ୍ତିଟି ବଡ଼ ଆକ୍ରାନ୍ତ । ବିଜ୍ଞାପନର ଅତିଚାର, ପ୍ରତିଯୋଗିତାର ଚିତ୍କାର, ମୁଦ୍ରାର ରଣଝଣ – ଏଇ ଧୂମପଟଳ ମଧ୍ୟରେ ବୁଦ୍ଧିଜୀବୀଟି ରୁଦ୍ଧଶ୍ୱାସ । ଅତିକାୟ ନଗରୀ ଜୀବନରେ ମସ୍ତିଷ୍କ ଅଛି, ଅଥଚ ହୃଦୟ ନାହିଁ । ଆଜିର ବୁଦ୍ଧିଜୀବୀ ଏହି ଅସହାୟତାରେ ପୀଡ଼ିତ । ଏଥିରୁ ନିଜକୁ ବଞ୍ଚାଇବାପାଇଁ ସେ ତା' ଲେଖାରେ ଶବ୍ଦ ଅଜାଡ଼ି ପକାଉଛି, ଅର୍ଥହୀନ ଶବ୍ଦର ସାଞ୍ଚୁଟିଏ ତିଆରି କରିଦେଉଛି । ଶବ୍ଦର ଜାଲ ଗୁଡ଼ାଇ ହୋଇଥିବାରୁ ବ୍ୟକ୍ତି ଏକ ଅପରକୁ ସ୍ପଷ୍ଟ ଦେଖିପାରୁ ନାହିଁ । ଜଗତକୁ ବୁଝିବାପାଇଁ, ପ୍ରତୀକିତ କରିବାପାଇଁ ଏକଦା ବ୍ୟକ୍ତି ହିଁ ଶବ୍ଦକୁ ତିଆରି କରିଥିଲା । କିନ୍ତୁ ବର୍ତ୍ତମାନ ଶବ୍ଦକୁ ତା' ଦାୟିତ୍ୱରୁ ଅବ୍ୟାହତି ଦେଇ ବୁଦ୍ଧିଜୀବୀ ହିଁ ଶବ୍ଦର ଅର୍ଥପାତ ଘଟାଇଲା । ଏପରି ବିଡ଼ମ୍ବନାରୁ କେବଳ ସେଇ କବି ହିଁ ନିଜକୁ ତଥା ସମାଜକୁ ମୁକ୍ତ କରାଇ ପାରିବ । ସେଥିପାଇଁ ତାକୁ ସତ୍ୟଶୀଳ ହୋଇ ସୌନ୍ଦର୍ଯ୍ୟକୁ ଗଢ଼ିବାକୁ ପଡ଼ିବ । କଥା ଓ କାର୍ଯ୍ୟ ଉଭୟର ସହଯୋଗରେ ଆବେଗକୁ ଆନୁପାତିକ ଭାବେ, ସତେଜଭାବେ ବଞ୍ଚାଇ ରଖିବାକୁ ପଡ଼ିବ । କବିର ସତ୍ ଆଳାପ ଯଦି ଏହି ମିଥ୍ୟାଚାରୀ ଯୁଗରେ କେହି ନ ଶୁଣନ୍ତି, ତଥାପି ସତ୍‌ବକ୍ତବ୍ୟର ଶକ୍ତି କଦାପି କ୍ଷୟ ହୁଏ ନାହିଁ । ଏ ପ୍ରସଙ୍ଗରେ ତାକୁ ଭବଭୂତିଙ୍କୁ ସ୍ମରଣରେ ରଖିବାକୁ ହେବ ।

## କବିତାର ଅବବୋଧ

ରାଜଧାନୀରେ ରାଜ୍ୟସ୍ତରୀୟ ଏକ ସାହିତ୍ୟ ଆସରରେ ସେଦିନ କବିତା ସମ୍ପର୍କୀୟ ଆଲୋଚନା ଚାଲିଥିଲା । ସମସ୍ତ ବକ୍ତା ଥିଲେ ଉତ୍ସର୍ଗୀତ ସାହିତ୍ୟ ସାଧକ, କାବ୍ୟସାଧକ । ସମସ୍ତେ ଏକମତ ହେଲେ ଯେ କବିତା ସମ୍ପର୍କୀୟ କିଛି ଆଲୋଚନା ନିମିତ୍ତ ବକ୍ତା ଓ ଶ୍ରୋତା ଉଭୟଙ୍କର କାବ୍ୟଦୀକ୍ଷା ଏକାନ୍ତ ଜରୁରୀ । ତେବେ ଏଇ କାବ୍ୟଦୀକ୍ଷାଟି କ'ଣ ? କବିତା ପଢ଼ିବା ପ୍ରତି ଆଗ୍ରହ, ଗଭୀର ଭାଷାଜ୍ଞାନ, ସଂସ୍କୃତି ସଚେତନତା – ଏସବୁ ମିଶିଲେ ହିଁ ବ୍ୟକ୍ତି ଦୀକ୍ଷିତ ହୋଇଥାଏ । କାରଣ କବିତା ଭାଷାଗତ କଳା ମଧ୍ୟରେ ଅଧିକ ସୂକ୍ଷ୍ମ ଓ ସୂଚନାତ୍ମକ । ଏହାର ଅବବୋଧ ଓ ଆସ୍ୱାଦନପାଇଁ ରସିକତା ଆବଶ୍ୟକ । ପ୍ରାଚୀନ ଓ ମଧ୍ୟଯୁଗୀୟ କବିଗଣ ରସିକ

ଗ୍ରାହକଙ୍କୁ ଉଚ୍ଚ ସମ୍ମାନ ଦେଇଛନ୍ତି । ଏହାହିଁ କଳାଦୀକ୍ଷା । ବ୍ୟକ୍ତିର ରୁଚିବୋଧ, ତୀକ୍ଷ୍ଣ କଳାତ୍ମକ ଚେତନା କବିତାର ରସାସ୍ୱାଦନରେ କ୍ରିୟାଶୀଳ ହୋଇଥାଏ । ନଚେତ୍ ଝରଣା ଜଳରେ ବୁଡ଼ିଥିବା ବାଲିଗରଡ଼ାର ଅଭ୍ୟନ୍ତର ଶୁଷ୍କ ରହିଗଲା ଭଳି, ବାହାରକୁ ଦେଖାଣିଆ କବିତାପ୍ରେମ ବିଫଳ ହୋଇଯାଏ । ପ୍ରକୃତ କବିତା ଆଦର ପାଏ ନାହିଁ । ଏଥିରେ କବିତା କେବଳ କ୍ଷତିଗ୍ରସ୍ତ ହୁଏ, ତାହା ନୁହେଁ: ସଂସ୍କୃତି ଓ କଳାର ଆରାଧନା ମଧ୍ୟ ଭ୍ରଷ୍ଟ ହୋଇଯାଏ । ଏହି ପରିପ୍ରେକ୍ଷୀରେ ସାହିତ୍ୟ ଆସରର ସଭାପତି, ଯେ କି ସମ୍ପ୍ରତି ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି, ପ୍ରଫେସର ଗଣେଶ୍ୱର ମିଶ୍ର, ତାଙ୍କର ଏକ ବକ୍ତବ୍ୟ ଉପସ୍ଥାପନ କରେଁ, ଯାହାର ପ୍ରଭୂତ ପ୍ରାସଙ୍ଗିକତା ଏହି ଅବତାରଣାଟି ସହ ରହିଥିବାରୁ 'ଉଦ୍‌ଭାସ'ର ପାଠକମାନଙ୍କ ଉଦ୍ଦେଶ୍ୟରେ ମୁଁ ସେହି ବକ୍ତବ୍ୟର ସାରାଂଶ ନିମ୍ନରେ ପ୍ରକାଶ କରୁଛି ।

ସେ କହିଲେ – "ପ୍ରସ୍ତୁତି ଓ ସଂସ୍କାର ନ ଥାଇ କବିତା ଲେଖୁଥିବା, ପଢୁଥିବା ବ୍ୟକ୍ତି ଅଶିକ୍ଷିତ ।" ଭାଷା ସାହିତ୍ୟରେ ସମ୍ୟକ୍ ଜ୍ଞାନ ନ ଥିବା, ରୁଚିବୋଧ ନ ଥିବା ବ୍ୟକ୍ତିକୁ ହିଁ ବାସ୍ତବରେ 'ଅଶିକ୍ଷିତ' କୁହାଯିବା ସଙ୍ଗତ । କାବ୍ୟରସିକ ବ୍ୟକ୍ତିର ଚେତନା ଓ ରୁଚିବୋଧ ସରସ ତଥା ଶାଣିତ । 'ସାକ୍ଷାତ୍ ପଶୁ ପୁଚ୍ଛ ବିଶାଣହୀନ' ଏହି ଅର୍ଥରେ ହୁଏତ ପ୍ରଫେସର ମିଶ୍ର ତାଙ୍କ ବକ୍ତବ୍ୟରେ 'ଅଶିକ୍ଷିତ' ଶବ୍ଦର ପ୍ରୟୋଗ କଲେ । ଉପସ୍ଥିତ ସମଗ୍ର ଜନତା ଓ ଅତିଥିବୃନ୍ଦ ସଭାପତିଙ୍କର ଏହି ଉକ୍ତିଟିକୁ ସେଦିନ ସମର୍ଥନ କରିଥିଲେ । ତେବେ, 'କବିତା' ଅର୍ଥ କେବଳ କବିତା ନୁହେଁ – 'ବାକ୍ୟଂ ରସାତ୍ମକଂ କାବ୍ୟଂ' ଅର୍ଥାତ୍ ଗଳ୍ପ, ଉପନ୍ୟାସ, ନାଟକାଦି ସକଳ ଭାଷାଗତ କଳାର ଉତ୍କର୍ଷ ହିଁ 'କାବ୍ୟ' ରୂପେ ଅଭିହିତ ହେବ । ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସମାନଙ୍କରେ ଛତ୍ରେ ଛତ୍ରେ କବିତା ଯେ ଲୀଳାୟିତ ହୋଇ ଉପସ୍ଥିତ ଥାଏ, ଏହା କାବ୍ୟାମୋଦୀ ମାତ୍ରେ ଅନୁଭବ କରିଥା'ନ୍ତି ।

'ଉଦ୍‌ଭାସ' ନିମିତ୍ତ କବିତା ପଠାଉଥିବା କବିମାନଙ୍କୁ ଏଠାରେ ମୁଁ ପଦିଏ କଥା କହେଁ । ଗୋଟିଏ ମାତ୍ର କବିତା ପଠାଇ, ସେହି କବିତାଟି ପ୍ରକାଶିତ ନ ହେଲେ, 'ମୋର କବିତା ଉଦ୍‌ଭାସ ଛାପିବ ନାହିଁ' ଏଭଳି କେହି କେହି ଅଭିମାନରେ କହୁଥିବା ମୁଁ ଶୁଣିଛି । ଏ ପ୍ରସଙ୍ଗରେ ମୋର କହିବାର କଥା ଯେ କବିତାଟି ଛପା ନ ହେବା ପଛରେ ନିଶ୍ଚୟ କିଛି କାରଣ ଥିବ । ତେଣୁ ସେହି

କବି ପୁନର୍ବାର ତାଙ୍କର କବିତା ପଠାନ୍ତୁ । ଏପରି କହିବାର ଉଦ୍ଦେଶ୍ୟ ହେଉଛି – ପ୍ରକୃତରେ 'ଉଦ୍‌ଭାସ' ନିକଟରେ ପ୍ରକାଶନ ନିମିତ୍ତ ଭଲ କବିତା ପହଞ୍ଚିବାର ସଂଖ୍ୟା-ନ୍ୟୂନତା ଦେଖାଦେଉଛି ।

## ସାରସ୍ୱତ ଶରତ

ପାର୍ବଣ ଆସନ୍ନ । ସମଗ୍ର ଭାରତୀୟ ଭାଷା ସାହିତ୍ୟମାନଙ୍କରେ ଶାରଦୀୟ ସଂଖ୍ୟାମାନ ନାନା ଅଳଂକରଣରେ ପ୍ରକାଶ ଲାଭ କରିବ । ଏହି ଅବକାଶରେ 'ଉଦ୍‌ଭାସ' ତା'ର ପାଠକ ଓ ଲେଖକମାନଙ୍କୁ ଆନ୍ତରିକ ଶାରଦୀୟ ଶୁଭେଚ୍ଛା ଜ୍ଞାପନ କରୁଛି । ଏଥରର ଶରତ ହେଉ ସେମାନଙ୍କପାଇଁ ସାରସ୍ୱତ-ଶରତ ।

॥ ନଅ ॥

୨୦୦୫ ବର୍ଷରେ ସତେ କି ଦୁଇଟି ଋତୁ – ଗୋଟିଏ ଥିଲା ଗ୍ରୀଷ୍ମ, ଆଉ ଏବେ ବର୍ଷା। ଶରତ ହରାଇଲା ତା'ର ଅଧାଅଧି ସୁକୁମାରପଣ । ହେମନ୍ତ ବି ଆଡ଼େଇ ରହିଛି । ତଥାପି ମେଢ଼, ପୂଜା, ଆଲୋକସଜ୍ଜା କୋଉଥିରେ କମ୍ ନାହିଁ କିଛି । ପ୍ରକୃତି ଭାରସାମ୍ୟ ହରାଇଲେ ମଣିଷର ସ୍ଥିତି କାହିଁ ? ଆସନ୍ତୁ, ଆମେ ପ୍ରକୃତିକୁ ଆପଣାର ମଣିବା, କୋଳେଇ ନେବା ।

## ବାସ୍ତବତାର ପୁନର୍ନିର୍ମାଣ ଓ କବିତା

ମଣିଷ ଜୀବନପାଇଁ କବିତା କେତେ ଉପଯୋଗୀ, କେତେ ଆବଶ୍ୟକ, କୌଣସି କାଳରେ ବି ଏହା ଏକ ତର୍କସମ୍ମତ ବିଷୟ ନ ଥିଲା । କାରଣ, କବିତାକୁ କୌଣସି ନିତିଦିନିଆ ବସ୍ତୁ, କୌଣସି ସାମର୍ଥ୍ୟ କିମ୍ବା ପ୍ରବୃତ୍ତି ସହ ତୁଳନା କରାଯାଇ ନ ପାରେ । ତଥାପି ବେଳେ ବେଳେ ଅବୋଧ ପ୍ରଶ୍ନଟେ ମୁଣ୍ଡଟେକେ – ଏଇ ଯେ କବିତା, ତାହା କ'ଣ କ୍ଷୁଧାର୍ତ୍ତର ଜଠରାଗ୍ନିକୁ ନିର୍ବାପିତ କରିପାରେ, ଭୟାର୍ତ୍ତର ହୃଦୟକୁ ସାହସ ଯୋଗାଇପାରେ, ଆହତର ଶିରାପ୍ରଶିରାରୁ ଯନ୍ତ୍ରଣା ଉପଶମ କରିପାରେ ? ତେବେ ? ଏସବୁ ଉପରେ କବିତାର ପ୍ରଭାବ କ'ଣ ? କବିତା ଏଠି ବୃଥା ନୁହେଁ କି ? ସୁନାମୀ, ଭୂକମ୍ପ, ଦୁର୍ଘଟଣା, ମହାବାତ୍ୟାର ପ୍ରାବଲ୍ୟକୁ ଶିଥିଳ କରିବା ନିମିତ୍ତ କବିତା ସମର୍ଥ କି ? ବାହ୍ୟ ଦୃଷ୍ଟିରୁ ଦେଖିଲେ ଉପରୋକ୍ତ ଦୁର୍ବିପାକଗୁଡ଼ିକ ସାମ୍ନାରେ ଆଦର୍ଶବାଦର ସ୍ଥାନ ନାହିଁ । ଏହି ବିପର୍ଯ୍ୟୟର ଭୂମିରେ ବୈକୁଣ୍ଠର ପରିକଳ୍ପନା ପୂରାପୂରି ନିରର୍ଥକ, ତେଣୁ ନଷ୍ଟଭ୍ରଷ୍ଟ ।

ମହାକାବ୍ୟ 'ଏନିଡ୍'ରେ କବି ଭର୍ଜିଲ କହିଥିଲେ – ''ମହାବିପତ୍ତିକୁ କିଏ ବା ଶବ୍ଦରେ ବର୍ଣ୍ଣନା କରିପାରିବ ? କାଳରାତ୍ରିର ମୃତ୍ୟୁଲୀଳାକୁ ଶବ୍ଦରେ ଧରି ରଖିପାରିବ ? ଦୁର୍ବିପାକର ସମାଷ୍କନ୍ଦ କାରୁଣ୍ୟ ଓ ଅଶ୍ରୁକୁ କିଏ ସୃଷ୍ଟି କରିପାରିବ ?'' ମହାବାତ୍ୟା କାଳରାତ୍ରିର ସେଇ ପ୍ରକୋପ, ପବନର ହିଁ ହିଁ ଗର୍ଜନ ଓ ଧ୍ୱଂସର ଦେବୀ ମହାକାଳୀଙ୍କର ଲେଲିହାନ ଜିହ୍ୱାବିସ୍ତାର ଓ ନର୍ତ୍ତନ, ତାହାକୁ କେଉଁ କବି ଶବ୍ଦଗତ କରି ଯଥାଯଥ ଉପସ୍ଥାପିତ କରିପାରିବ ? ଆକସ୍ମିକ ଦୁର୍ଘଟଣାରେ ମୃତ, ରକ୍ତାକ୍ତ ବ୍ୟକ୍ତିର ଯନ୍ତ୍ରଣା କିଏ ବା ଠିକ୍ ଭାବେ ଆଙ୍କିପାରିବ ? ଏହି ଅସମର୍ଥତା ହିଁ ବାସ୍ତବତା । ତଥାପି ଭର୍ଜିଲ 'ଟ୍ରୟନଗରୀର ପତନ'କୁ ଶବ୍ଦରେ ହିଁ ବର୍ଣ୍ଣନା କଲେ । ସେହି ବର୍ଣ୍ଣନା ଆମ ସମ୍ମୁଖରେ ଟ୍ରୟନଗରୀର ଧ୍ୱସ୍ତବିଧ୍ୱସ୍ତ ରୂପକୁ ଦେଖାଇଛି । ମହାଭାରତ ଯୁଦ୍ଧର ବିଭୀଷିକା, କ୍ଷୟକ୍ଷତି, ଆଶଙ୍କା, ଯନ୍ତ୍ରଣାକୁ ଆମେ କବି ବ୍ୟାସଦେବଙ୍କ ବର୍ଣ୍ଣନାରୁ ହିଁ ଜାଣିବାକୁ ପାଉଁ । ଯେକୌଣସି ଏକ ମହାସମର ବା ବିଶ୍ୱଯୁଦ୍ଧର ବର୍ଣ୍ଣନା ଆମେ କବି ରମାକାନ୍ତଙ୍କ 'ଶ୍ରୀପଳାତକ'ରୁ ବି ପାଇଥାଉ । ସେହିପରି ମନୁଷ୍ୟ ଜାତିର ସକଳ ଦୁଃସ୍ଥିତିର ଚିତ୍ର ଆମେ କାବ୍ୟ କବିତାରୁ ପାଇଥାଉ । କବି ଦିନ୍‌କର୍‌ଙ୍କର 'କୁରୁକ୍ଷେତ୍ର', କବି ଧର୍ମବୀର ଭାରତୀଙ୍କର 'ଅନ୍ଧାଯୁଗ'ର ବର୍ଣ୍ଣନାରୁ ଏକ ନୂତନ ବ୍ୟାଖ୍ୟାଦ୍ୱାରା ମହାଭାରତ ଯୁଦ୍ଧ ତଥା ତତ୍କାଳର ଦୁଃସ୍ଥିତିର ଏକ ନୂତନ ବ୍ୟାଖ୍ୟା ଆମର ଚେତନାକୁ ଆଲୋଡ଼ିତ କରେ । ଅଥଚ ଏସବୁ ମର୍ମାନ୍ତିକ ଯୁଦ୍ଧର, କ୍ଷୟର ବାସ୍ତବ ତଥା ଉପଯୁକ୍ତ ବର୍ଣ୍ଣନା ଶବ୍ଦଗତ ହୋଇପାରେ କି ? ହୋଇପାରେ ନାହିଁ । ପ୍ରତ୍ୟେକ କବି ଏ ବିଷୟରେ ସଚେତନ । ଅଥଚ ତା' ପାଖରେ ଶବ୍ଦ ଭିନ୍ନ ଆଉ କେଉଁ ଉପକରଣ ବା ଉପାଦାନ ଅଛି, ଯାହା ବାସ୍ତବାଶ୍ରୟୀ ତଥା ତା'ର କଳ୍ପନା ଚକ୍ଷୁରେ ପ୍ରତ୍ୟକ୍ଷ କରିଥିବା ବିଭୀଷିକାକୁ ପ୍ରମୂର୍ତ୍ତ କରିପାରିବ ?

ଅନ୍ୟ ଅର୍ଥରେ ପ୍ରକୃତିର ବର୍ଣ୍ଣବିଳାସ, ପ୍ରାଣୀସମୂହର ଆବେଗ ଉଲ୍ଲାସ, ଏପରିକି ମାନବ-ହୃଦୟର ସବୁଠାରୁ ଶକ୍ତିଶାଳୀ ଆବେଗ 'ପ୍ରେମ'କୁ ଯଥାଯଥ ବର୍ଣ୍ଣନା କରିବା ସମ୍ଭବ କି ? ପ୍ରକୃତିର ମହାସର୍ଜକ ସନ୍ଧ୍ୟା ଆକାଶରେ ଯେଉଁ ବର୍ଣ୍ଣବିଭାର ବିଚ୍ଛୁରଣ ଘଟାନ୍ତି, ଶବ୍ଦ ବା ରଙ୍ଗ କେହି କେବେ ତାକୁ ଯଥାଯଥ ରୂପ ପ୍ରଦାନ କରିପାରିଛି କି ? ବିଖ୍ୟାତ ଭାରତୀୟ ଲେଖକ (ମରାଠୀ ଭାଷାର) ବିଷ୍ଣୁ ସଖାରାମ ଖଣ୍ଡେକର କହିଛନ୍ତି, ଜହ୍ନରାତିର ରୂପଶୋଭା ଶବ୍ଦରେ କେହି ବର୍ଣ୍ଣିପାରିବ ନାହିଁ, ଶିଳ୍ପୀ ବା କବି ଯେତେ କୁଶଳୀ ହେଉ, ମହାସର୍ଜକର ଏହି ଗୂଢ଼ କୌଶଳକୁ ପୂରାପୂରି ଆୟତ୍ତ କରିପାରେ ନାହିଁ । ଯେ ତ ରୂପଗତ ବ୍ୟାପାର ।

ଆବେଗ, ଉଲ୍ଲାସ, ପ୍ରେମ – ଏସବୁ ଭାବଗତ ବ୍ୟାପାର । ହୃଦୟ ଅଭ୍ୟନ୍ତରରେ ଅଙ୍କୁରିତ ଓ ପରିଶୀଳିତ ଏହି ସୂକ୍ଷ୍ମ ଭାବମାନ କିପରି ବା ସର୍ଜକର ସ୍ଥୂଳ ଉପକରଣରେ ଧରାଦେବ ? ଅତଏବ ଦୁର୍ବିପାକ ଓ ଆନନ୍ଦ, ବୀଭତ୍ସତା ଓ ସୌନ୍ଦର୍ଯ୍ୟ ଶବ୍ଦଦ୍ୱାରା ସଫଳଭାବେ ପ୍ରମୂର୍ତ୍ତ ହୋଇପାରନ୍ତି ନାହିଁ । ଏହା ସ୍ୱୀକାର କରିବା ଭିନ୍ନ ଗତ୍ୟନ୍ତର ନାହିଁ । ଅଥଚ, କବିଟିଏ କାବ୍ୟରଚନାରେ ନିଜକୁ ନିୟୋଜିତ କରିବା କାଳରେ ବେଶ୍ ସତର୍କ ଓ ସଶଂକ ଥାଏ । ଏହି ସତର୍କତା ଅବଶ୍ୟ ଯାବତୀୟ ସାଂସାରିକ ସତର୍କତାଠାରୁ ଭିନ୍ନ । ଏହିପ୍ରକାରେ ନିଜ ସଂରଚନା ମାଧ୍ୟମରେ ସୌନ୍ଦର୍ଯ୍ୟ, ଉଲ୍ଲାସ ଓ ଆବେଗର ଚିତ୍ର ପ୍ରଦାନ କରି ସେ ଆମ ରୁଚି ଓ ସମ୍ବେଦନଶୀଳତାକୁ ଜାଗରୂକ କରିଥାଏ ।

ତେବେ, ତାହାର ଏହି ସୌନ୍ଦର୍ଯ୍ୟର ପ୍ରଭାବ କେତେ ଦୂର ଶକ୍ତିଶାଳୀ ? କାହିଁକି ବା ୟେ ବିଚାର ? କାହିଁକି ପ୍ରଶ୍ନ ଉଠୁଛି ଦ୍ୱନ୍ଦ୍ୱ, ଦୁର୍ବିପାକରେ କବିତାର କି ପ୍ରକାର ଉପଯୋଗିତା ରହିଛି ? ଏ ସମ୍ପର୍କରେ ଜଣେ ଲେଖକ Ian McEwan କହିଛନ୍ତି, ଜଣେ ଯୁକ୍ତିନିଷ୍ଠ ନ୍ୟୁରୋସର୍ଜନଙ୍କର ତରୁଣୀ ଝିଅଟିଏ ଥିଲା । ସେ କବିତା ଆବୃତ୍ତି କରୁଥିଲା । ଏହି ସମୟରେ ଗୋଟେ ସଶସ୍ତ୍ର ଆତଙ୍କବାଦୀ ଓ ଅଭ୍ୟାସଗତ ଧର୍ଷଣକାରୀ ତାଙ୍କ ଘର ଭିତରକୁ ଧସେଇ ପଶିଆସିଲା । କିନ୍ତୁ ତରୁଣୀଟିର କବିତାବୃତ୍ତି ଶୁଣି ତା'ର ସକଳ ପ୍ରବୃତ୍ତି (ହିଂସା ଓ ପାଶବିକତା) ଶାନ୍ତ ହୋଇଉଠିଲା । ତରୁଣୀଟିର କାବ୍ୟାନୁରାଗରହିତ ପିତା ବାରମ୍ବାର ପ୍ରଶ୍ନ କରି ଚାଲିଲେ, ''ଏମିତି କ'ଣ ହୁଏ ? ୟେ କ'ଣ ବାସ୍ତବତା ? ସତରେ କ'ଣ କବିତାଟେ ଜଣକ ମିଜାଜ୍‌କୁ ବଦଳାଇ ଦେଇପାରିବ ?''

ଅବଶ୍ୟ ଅଧିକ ଲୋକସାହିତ୍ୟ ପଢ଼ିଲେ, କବିତା ପ୍ରତି ଅନୁରାଗୀ ହେଲେ ଯେ ପୃଥିବୀରୁ ଦ୍ୱନ୍ଦ୍ୱ, ଦୁର୍ବିପାକର ପରିମାଣ ହ୍ରାସ ପାଇବ, ଏକଥା ସତ ନୁହେଁ; କିନ୍ତୁ କବିତା ନିଶ୍ଚିତ ଭାବରେ ମଣିଷକୁ ସଚେତନ କରେ। ନଗ୍ନ ବାସ୍ତବତା ପ୍ରତି, ଦୁର୍ବିପାକର ହେତୁ ପ୍ରତି, ନିଦାରୁଣ ଯନ୍ତ୍ରଣା ପ୍ରତି ସଚେତନ କରାଏ । ଏ ପ୍ରକାର ସଚେତନତା ଦୁର୍ବିପାକ ପ୍ରତି ସହନଶୀଳ ଆମୁଖତା ସୃଷ୍ଟି କରେ । ମନ ଓ ଚେତନାରେ ସୂକ୍ଷ୍ମ ଚିତ୍ର ଆଙ୍କିଦେଇ ପ୍ରଳୟର ରହସ୍ୟଘନ ହେତୁ ସମ୍ପର୍କରେ ଅବହିତ କରାଏ ଓ ସେସବୁକୁ ଶିରୋଧାର୍ଯ୍ୟ କରି ଗ୍ରହଣ କରିନେବାର ଏକ ସମ୍ମତ ମାନସିକତା ତିଆରି କରେ । କ୍ଷମାଶୀଳତା ଓ ଉଦାରଗ୍ରହଣଶୀଳତା ପ୍ରତି ମଣିଷର ମାନସିକତାକୁ ଉଦ୍‌ବୁଦ୍ଧ କରାଏ । ସୁତରାଂ ମଣିଷ ଜାତିର ଯାବତୀୟ ବିଭ୍ରାଟ ଓ ବିଭ୍ରମ, ବିଡ଼ମ୍ବନା ଓ ବୈରତା ସମାହିତ ହେବାର ଏକ କଲ୍ୟାଣକର ପରିଣତି

ସମ୍ଭବ ହୁଏ ଏଇ କବିତା ଯୋଗୁଁ । କବିତା ଆଉ କିଛି କରୁ ବା ନ କରୁ, ଏହା ଯେ ମଣିଷ ଭିତରେ ତଥାପି ଅନୁଦ୍‌ଘାଟିତ ତା'ର ଅକଳନ୍ତି ଆତ୍ମପ୍ରତ୍ୟୟକୁ ଉଦ୍‌ଘାଟିତ କରି ସକଳ ପାର୍ଥିବ ପ୍ରତିକୂଳତାର ମୁକାବିଲାପାଇଁ ସାମର୍ଥ୍ୟ ଯୋଗାଏ – ଏଥିରେ ସନ୍ଦେହ ନାହିଁ ।

## ନିବେଦନ

'ଉଦ୍‌ଭାସ'ରେ ପ୍ରକାଶ ନିମିତ୍ତ ଆସୁଥିବା ଲେଖାମାନଙ୍କରେ ବହୁ ବର୍ଣ୍ଣାଶୁଦ୍ଧି ଓ ଗଠନଗତ ଅସଙ୍ଗତି ପରିଲକ୍ଷିତ ହେଉଥିବାରୁ ଓ ପାଣ୍ଡୁଲିପିରେ ପରିଚ୍ଛନ୍ନତା ରହୁ ନ ଥିବାରୁ ଲେଖା ନିର୍ବାଚନ ଓ ସମ୍ପାଦନାରେ ଏହା ଘୋର ବାଧା ସୃଷ୍ଟି କରୁଛି । ଏଣିକି କବି, ଲେଖକ ଓ ଅନୁବାଦକମାନଙ୍କୁ ଅନୁରୋଧ, ସେମାନେ ଏଥିପ୍ରତି ଧ୍ୟାନଶୀଳ ହେବେ ।

॥ ଦଶ ॥

ଆମ ଓଡ଼ିଶାରେ ଦୀର୍ଘଦିନ ଧରି କବିତାବିତର୍କର ଏକ ଚିରାଚରିତ ପ୍ରସଙ୍ଗ ହୋଇଆସିଛି 'କବିତାରେ ଦୁର୍ବୋଧତା' । ଏକଦା 'ସମ୍ବାଦ'ଦ୍ୱାରା ଆୟୋଜିତ କବିତା ବିତର୍କରେ ଭାଗନେଇ ମୁଁ ଏହି ପ୍ରକାର ବିଷୟବସ୍ତୁର ସାମ୍ନା କରିଛି । ଏପରି ବିତର୍କ କେବଳ ଓଡ଼ିଶାରେ ସୀମିତ ନୁହେଁ, କବିତା ପ୍ରତି ଏ ଆରୋପ ଉଣା ଅଧିକେ ସାରା ବିଶ୍ୱରେ ଜାରିରହିଛି । ଏ ନେଇ କୈଫିୟତ୍ ବି କମ୍ ନୁହେଁ ।

କବି ଜଣେ ଉତ୍ତର ଦେଇପାରେ ଯେ, କେବଳ କାବ୍ୟିକ ବାହାଦୁରି ଯୋଗୁଁ ସରଳତା ବା ଜଟିଳତାର ପ୍ରୟୋଗ କବିତାରେ କରାଯାଏ ନାହିଁ । ସରଳତା ବେଳେବେଳେ କବିତାକୁ ଗୁରୁତ୍ୱହୀନ ମଧ୍ୟ କରିଦେଇପାରେ । ଜଟିଳତା କବିତାକୁ କରିପାରେ କ୍ଲିଷ୍ଟ ଓ ଗମ୍ଭୀରତାଦ୍ୟୋତକ । କାବ୍ୟଶିଳ୍ପୀ ରାନ୍ଦଲ୍ ଜରେଲ୍ କହନ୍ତି, ଆଜିକାର ପାଠକ କବିତା (ସାମ୍ପ୍ରତିକ, ଆଧୁନିକ, ଆଧୁନିକୋତ୍ତର ବା ଉତ୍ତର-ଆଧୁନିକ)କୁ ଜଟିଳ ଦୁର୍ବୋଧ କହି ଆଡ଼େଇ ଯିବାର ବାହାନା କରୁଛି । କାରଣ ସେ କବିତା ପଢ଼ିବା ଛାଡ଼ିଦେଇଛି । କାବ୍ୟିକ କଳାର ତ ପୁଣି ଗୋଟେ ସୂକ୍ଷ୍ମଧାରା ରହିଛି – ଏହି ଧାରାକୁ ନିହାତି ସ୍ୱୀକାର କରିବା କଥା । କବିତାର ଗଢ଼ଣ ଯଦି ସ୍ୱତଃସ୍ଫୂର୍ତ୍ତ, ତେବେ ତା'ର କଳାତ୍ମକତା ନିଶ୍ଚୟ ଉଣା ହେବ ।

ଏପରି ପ୍ରଶ୍ନ ବି ଆସେ ମନକୁ କଳାତ୍ମକତାଟି ତେବେ କଅଣ ? କବିତାରେ ସ୍ୱତଃସ୍ଫୂର୍ତ୍ତତା ସମ୍ପର୍କରେ ସାରା ବିଶ୍ୱରେ ତଥା ଓଡ଼ିଶାରେ ମଧ୍ୟ ପୁସ୍ତକ ଓ ପତ୍ରପତ୍ରିକାରେ ବହୁ ଆଲୋଚନା ହୋଇଗଲାଣି । 'ସ୍ୱତଃସ୍ଫୂର୍ତ୍ତତା' ଅର୍ଥ ନିଶ୍ଚୟ 'ଯାହା ମନକୁ ଆସିଲା ତାହାକୁ ବୁଝାଏ ନାହିଁ । କେତେକ ବେପରୁଆ ପାଠକ ବା ଶ୍ରୋତା ବା କବିତା ପାଠୋତ୍ସବରେ ବସିଥିବା କିଛି ଆଶୁ କବି ବିଶ୍ୱାସ କରନ୍ତି ଯେ, କବିତା ସ୍ୱତଃସ୍ଫୂର୍ତ୍ତ ଭାବେ ଲେଖି ହୋଇଯାଏ । ଜଣେ ସତ୍ କବି 'ସ୍ୱତଃସ୍ଫୂର୍ତ୍ତତା' ଓ 'ସରଳତା'କୁ ନେଇ ଯେତିକି ବ୍ୟବଚ୍ଛେଦ କରିବସେ, ପ୍ରଶ୍ନକର୍ତ୍ତା ତଥାକଥିତ କବି ଜଣକ ମଧ୍ୟ 'ଜଟିଳତା' ଓ 'କଳାତ୍ମକତା'କୁ ନେଇ ସେତିକି ଅସହିଷ୍ଣୁ ହୋଇଉଠେ । କେତେକଙ୍କର ଏପରି ବଦ୍ଧମୂଳ ଧାରଣା ରହିଥାଏ ଯେ, କବିତା ମନକୁ ମନ ଲେଖିହୋଇଯାଏ, ଗଦ୍ୟପାଇଁ ଲୋଡ଼ାହୁଏ ଯୋଜନାବଦ୍ଧ ପ୍ରଚେଷ୍ଟା । ଏହା କେତେକାଂଶରେ ହୁଏତ ସତ ହୋଇପାରେ । କବିତା ଓ ଗଦ୍ୟକୁ ଚିହ୍ନିବାକୁ ସାହିତ୍ୟପ୍ରେମୀ ଅନେକ ବାଗରେ ଯୁକ୍ତି ବାଢ଼େ । କବିତା ଗୋଟେ କମ୍ପନ, ରାତିର ନୀରବତାର ସୃଜନ ବୋଲି ଖାଲି କହିଦେଲେ ହେବ ନାହିଁ, କବିତା ରଚନା ପ୍ରକ୍ରିୟାରେ ଅଣାୟତ୍ତ ଇଚ୍ଛାର ମଧ୍ୟ ପ୍ରଭାବ ରହେ । କବିତା ହୋଇପାରେ ନରମ, ଲୁତୁପୁତୁ । ଗଦ୍ୟକୁ ଦିନ ଦିନ ଧରି ଦୈନିକ ଚାରି/ପାଞ୍ଚ ଘଣ୍ଟା ଲେଖାଏଁ ଲେଖୁଥାଅ, ବ୍ରହ୍ମାଣ୍ଡର ସବୁ କଥାତକ ଭର୍ତ୍ତି କରୁଥାଅ । ସୁତରାଂ ଗଦ୍ୟ ପୃଥିବୀର ଶୃଙ୍ଖଳାଦ୍ୱାରା ଶୃଙ୍ଖଳିତ ଓ ନିଦା ।

କବିତାଠାରୁ ପଳାୟନ କରିବାର ସହଜମାର୍ଗ ହେଉଛି, 'କବିତା ବୁଝିହେଉନି' କହି ଏଥିପ୍ରତି ଆଖି ବୁଜିଦେବା ବା ନିବୃତ୍ତ ରହିବା । ଅଥଚ ଏ ଯୁଗରେ, ସାରା ବିଶ୍ୱକୁ କମ୍ପ୍ୟୁଟର ଭିତରେ ସମ୍ଭାଳି ରଖୁଥିବା ଯୁଗରେ, ମୁହୂର୍ତ୍ତକରେ ଅନେକ କିଛି ଆୟତ୍ତ କରିନେବାର ଯୁଗରେ ଏହି କବିତା (ଯାହାକୁ ଥରକେ ପଢ଼ି ରସାସ୍ୱାଦନ କରିବା ସହଜ ହୋଇ ନ ଥାଏ) ପାଇଁ କିଏ ବା ଏତେ ସମୟ ଦବ, କାହାର ଗରଜ ଅଛି ! ତେଣୁ କବିତା ପଢ଼ିବା ଠାରୁ ଆଡ଼େଇଯିବା ।

ଧରାଯାଉ, କୌଣସି କବିତା ପାଠୋତ୍ସବରେ ଯଦି କବିମାନଙ୍କୁ କୁହାଗଲା ଯେ, 'ସାଧାରଣ ଲୋକଙ୍କ ରୁଚି ଅନୁଯାୟୀ ଲେଖକ, ପାଠକଙ୍କୁ ଯେପରି ପଠନ କ୍ଳେଶ ନ ଲାଗିବ ସେହିପରି ଲେଖ, ଯେପରି କି କବିତାକୁ ଏକା ନିଃଶ୍ୱାସକେ ରାନ୍ଧି, ଖାଇ, ହଜମ କରିହେବ, ଠିକ୍ ସେହିପରି ଲେଖ । କିନ୍ତୁ ଏପ୍ରକାର ନିର୍ମାଣ ତରିକା କବିତା ପ୍ରତି ପ୍ରଯୁଜ୍ୟ ନୁହେଁ । କବିତାର ନିର୍ମାଣ ଲୀଳା ବଡ଼

ରହସ୍ୟଜନକ । ନିହାତି ଉପରଠାଉରିଆ, ଶିଥିଳ କବିତା ପରିପ୍ରେକ୍ଷୀରେ ମଧ୍ୟ 'କଳାତ୍ମକ', 'ଆତ୍ମସଚେତନ' ଭଳି ଶବ୍ଦମାନଙ୍କୁ ବ୍ୟବହାର କରାଯାଉଛି, ଅର୍ଥାତ୍ ଗୁଣ ଚିହ୍ନି ପ୍ରମାଣପତ୍ର ଦିଆଯିବାରେ ବିଭ୍ରାଟ ଘଟୁଛି । ଅତିଶୟୋକ୍ତି, ଗର୍ଜନ ଏବଂ ଘଟାଟୋପ ଭିତରେ ବିଜ୍ଞାପିତ ଏହି ପ୍ରକାର କବିତାଗୁଡ଼ିକୁ ପାଠକଲେ ଯେକେହି ପାଠକ ଅତିଷ୍ଠ ହୋଇପଡ଼ିବ । ଠିକ୍ ଯେମିତି 'ଜଟିଳତା' ଚିତ୍କାର କରି ନିଜକୁ ଜାହିର୍ କଲାବେଳେ 'ସରଳତା'ର ଚିହ୍ନରାମାନେ ବି ଦବିଯିବେ, ଚୁପ୍ ରହିବେ ।

ଉପରୋକ୍ତ ଘଟଣାସବୁକୁ ବିଚାରକୁ ନେଇ ନିରୀକ୍ଷଣ କଲା ପରେ କବିତା ସମ୍ପର୍କରେ ଉପସଂହାର ଅଣାଯାଇପାରେ ଯେ କବିତା ରଚନା କଠୋର ଶ୍ରମସାପେକ୍ଷ । ଲିଖିତ କବିତାକୁ ବାରବାର କାଟ୍‌ଛାଣ୍ଟ୍ କରିବାକୁ ପଡ଼େ । ବହୁ ଶ୍ରମ ସ୍ୱୀକାର କରିବାକୁ ପଡ଼େ ଏଥିପାଇଁ । ପଥରମୂର୍ତ୍ତିଟିଏ ଗଢ଼ିଲାବେଳେ ଭାସ୍କର ଯେପରି ପଥର ଦେହରେ ବାରବାର ନିହାଣ ମାରେ – ପଥରର ଅନାବଶ୍ୟକ ଅଂଶକୁ ଅଲଗା କରେ, ଠିକ୍ ସେହିପରି କବି କବିତାର ଅନାବଶ୍ୟକ କଳେବରକୁ ବଦଳାଏ, କାଟେ, ଯୋଡ଼ିଦିଏ – ଏହାହିଁ କବିର କଳାତ୍ମକତା । କଥା ହେଲା, ଏହି 'କଳାତ୍ମକତା' ମଧ୍ୟ ଭଲ କବିତାପାଇଁ ସମଗ୍ର ସତ୍ୟ ନୁହେଁ । କବିତା ନିର୍ମାଣ କର୍ମଟି ସାମଗ୍ରିକ ଭାବେ ବସ୍ତୁନିଷ୍ଠ, ଯୋଜନାବଦ୍ଧ କ୍ୱଚିତ୍ ।

ଏ କର୍ମ ଅଧିକାଂଶତଃ ଗହନ, ଗୂଢ଼, ଏପରିକି ଭୂମି ମଧ୍ୟଗତ ବି । ଗୋଟିଏ ଭଲ କବିତାପାଇଁ ଅନ୍ତର୍ଗତ ସତ୍ୟକୁ ଦୃଷ୍ଟିରେ ଧାରଣ କରିବା, ପୁନଃନିରୀକ୍ଷଣ କରିବା ମଧ୍ୟ ଯଥେଷ୍ଟ ହୁଏ ନାହିଁ । କଳାକାର ଜଣେ ମାଳୀ ପରି – ତା'ର କାଟ୍‌ଛାଣ୍ଟ, ତୀବ୍ର ନିରୀକ୍ଷା ଓ ଜଗାରଖାରୁ ବେଳେବେଳେ ଚାରାଗଛମାନେ ବିରତି ଚାହାନ୍ତି, ମୁକ୍ତି ଖୋଜନ୍ତି, ମନକୁ ମନ ବଢ଼ି ଉଠିବାକୁ ଭଲ ପାଆନ୍ତି ।

ଭଲ କବିତାରେ ଶୈଳୀଗତ ଟଣାଭିଡ଼ା କି ଦ୍ୱନ୍ଦ୍ୱ ନାହିଁ । କବିମାନେ ଶବ୍ଦଭଣ୍ଡାରର ଗଦ୍‌ଗଦ ଉଚ୍ଚାରଣ ଭିତରେ ଥାଆନ୍ତି – ତଥାପି, ସେମାନଙ୍କ 'କଳାତ୍ମକତା' ଶତକଡ଼ା ଶହେ ସଚେତନ ନିର୍ମାଣ ନୁହେଁ । ଏହା ମଧ୍ୟ ହୋଇପାରେ ପ୍ରେରଣିତ ଶ୍ରୁତି – ଆଉ କାହାର କିଛି କଥା ହଠାତ୍ ଶୁଣି ପକାଇଲା ଭଳି । ନିର୍ମାଣ କୌଶଳ, ପରିଶ୍ରମ ସବୁକିଛି ଥାଏ, ଅଥଚ ଏକପ୍ରକାର 'କୁହୁକ' ମଧ୍ୟ କ୍ରିୟାଶୀଳ ରହିଥାଏ । ଅତଏବ ଭଲ କବିତାରେ ସଚେତନ ନିର୍ମାଣ ଓ କୁହୁକୀ ଅବତରଣ ଏକାବେଳକେ ମିଶି ରହିଥାଏ ।

ସୁତରାଂ ଏ କ୍ଷେତ୍ରରେ ରସାସ୍ୱାଦନକୁ ମୁଖ୍ୟ ଓ ଯଥେଷ୍ଟ ଭାବେ ଗ୍ରହଣ କରିବା, ଉପର ଚର୍ଚ୍ଚିତ ଯାବତୀୟ ତର୍କରେ ନ ପଶିବା, ପାଠକ ପକ୍ଷେ ସର୍ବାଦୌ ସ୍ପୃହଣୀୟ ।

॥ ଏଗାର ॥

ଭଲ କବିତା କିଛି, ଉତ୍ତମ ରୂପେ ଉପସ୍ଥାପନ କରାଇ କବିତାର ଚିରନ୍ତନ ମୂଲ୍ୟକୁ ପ୍ରତିଷ୍ଠା ଦେବାରେ ଉଦ୍‌ଭାସ ବ୍ରତୀ ହୋଇଛି । ଜଣେ ପାଠକର ରୁଚିର ସମ୍ପୂର୍ଣ୍ଣ ପରିମାପକ ହୋଇପାରେ କବିତା, ପୁଣି ଏହା ରୁଚିର ସନ୍ନିଧିରେ ଅନ୍ତରଙ୍ଗ ଭାବେ ଥାଏ – ସତ୍ କବିତାର ଶାଣିତ ସମ୍ପଦ ପରି ଅନ୍ୟ କିଛି ବ୍ୟକ୍ତିର ରୁଚିକୁ ଏତେ ତୀବ୍ର ଭାବେ ଉଦ୍‌ବୁଦ୍ଧ କରିବା ସମ୍ଭବ ନୁହେଁ । ଏପ୍ରକାର କବିତାର ଅବବୋଧ ପାଠକ ଭିତରେ ବଢ଼ି ବଢ଼ି ଚାଲିଥାଏ । ଏହି କାବ୍ୟୋପଲବ୍ଧି ପାଠକର ରୁଚିକୁ ମାର୍ଜିତ କରିବା ଜାରି ରଖିଥାଏ ଓ ନବୀକୃତ କରିଚାଲିଥାଏ । ଉଦ୍‌ଭାସର ଲକ୍ଷ୍ୟ ଏହା ଯେ, ଏଥିରେ ସ୍ଥାନିତ କବିତା କାବ୍ୟପାଠକକୁ ଅଧିକ ଶିକ୍ଷିତ ଓ ଦୀକ୍ଷିତ କରିପାରିବ ଓ ନୂଆ କବିତାର ସ୍ୱାଦ ଓ ଗନ୍ଧକୁ ଗ୍ରହଣ କରିବା ଦିଗରେ ବାଟ ବତାଇବ, ଯାହା ଫଳରେ କାବ୍ୟପାଠକର ଚେତନା କବିତାକୁ ବୁଝିବାଠାରୁ ଅଧିକ କିଛିରେ ଉପନୀତ ହୋଇପାରିବ । ବୁଝିବା ଆଗରୁ କବିତାକୁ ଉପଭୋଗ କରିବାକୁ ସମର୍ଥ ହେବ । ଭଲ କବିତା ପୁଣି କ'ଣ – ତତ୍ତ୍ୱ ବା ତଥ୍ୟରେ କବିତାର ଏହି ଗୁଣକୁ ବୁଝାଇବା ସହଜ ନୁହେଁ । ଅଥଚ ଭଲ କବିତାକୁ ଚିହ୍ନି ହୋଇଯାଏ । ବିଷୟବସ୍ତୁ ଯାହାହେଉନା କାହିଁକି: କିନ୍ତୁ ହେଉ ମଣିଷର ଯାତନାପାଇଁ ସମ୍ବେଦନା, ହେଉ ପରିବେଶ ସୁରକ୍ଷାପାଇଁ ବ୍ୟଗ୍ରତା, ରୋଗ, ମୃତ୍ୟୁ, ସନ୍ତ୍ରାସପାଇଁ ଆନ୍ତରିକ ପୀଡ଼ା କିମ୍ବା କାରୁଣ୍ୟ ଜର୍ଜର ବା ବିହ୍ୱଳ ପ୍ରେମାନୁଭବ – ଭଲ କବିତାଟି ପ୍ରକଟିତ ବିଷୟବସ୍ତୁ ନିର୍ବିଶେଷରେ ଚିହ୍ନି ହୋଇଯିବ ।

## କବିତାର ଚୟନ

ଏପରି କେତେକ ବ୍ୟକ୍ତି ଅଛନ୍ତି, କବିତା ପଠନ ପ୍ରତି ତାଙ୍କର ସ୍ପୃହା ରହିଛି, ମାତ୍ର ପ୍ରାଣପ୍ରବାହମୟ ନୂତନ କବିତା ପଢ଼ିବାପାଇଁ ସେମାନେ ସୁଯୋଗ ପାଇପାରୁ ନାହାନ୍ତି । ସେ ଦିଗରେ 'ଉଦ୍‌ଭାସ' କିଛିଟା ସାହାଯ୍ୟ କରିପାରେ ବୋଲି ଆଶା କରାଯାଏ । କବିତା ଚୟନ ଏକ କଠିନ କାର୍ଯ୍ୟ ଓ ଏହା ପ୍ରଚୁର ସହୃଦୟତା

ଆବଶ୍ୟକ କରିଥାଏ । ଆମ ଚୟନର ମୁଖ୍ୟ ଲକ୍ଷ୍ୟ ଭଲ କବିତାକୁ ବଞ୍ଚାଇ ରଖିବାରେ ସହଯୋଗ କରିବା । ନୂଆ କବି ଗଢ଼ିବା ଏହାର ଅନ୍ୟତମ ଲକ୍ଷ୍ୟ ମଧ୍ୟ । ଏଥି ସହିତ ବହୁକାଳ ଧରି କବିତା ସଂରଚନାରେ ନିୟୋଜିତ କବିବ୍ୟକ୍ତିତ୍ୱକୁ ମଧ୍ୟ ଉପଯୁକ୍ତ ସମ୍ମାନ ଦିଆଯିବାର ଆବଶ୍ୟକତା ରହିଛି । ପୁଣି ସମ୍ପାଦନା ସମୟରେ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆସୁଥିବା କବିତାଗୁଡ଼ିକ ପ୍ରତି ଧ୍ୟାନ ରଖାଯାଉଛି । ଦେଖାଯାଉଛି ଯେ, ଉଦ୍‌ଭାସକୁ ଆସୁଥିବା କବିତାଗୁଡ଼ିକ ମଧ୍ୟରୁ କେତେକ ବେଶ୍ ଧୂମା, ସ୍ଥବିର ଓ ଶ୍ଳଥ । ଦୁର୍ବଳ ପ୍ରକାଶଭଙ୍ଗୀଜନିତ ବିଫଳତା ଓ ନିଷ୍ପ୍ରାଣ ପରୀକ୍ଷା-ନିରୀକ୍ଷା ମଧ୍ୟ କେତେକରେ ପରିଦୃଷ୍ଟ । ଏଗୁଡ଼ିକୁ ଚିହ୍ନି, ବାଦ୍ ଦେଇ, କବିତା ବାଛିବା କମ୍ କାଠିକର ନୁହେଁ । ଏହାସତ୍ତ୍ୱେ ବାରମ୍ବାର ପଠନ ଓ ଅନୁଶୀଳନ ମାଧ୍ୟମରେ ଆମେ ସମ୍ଭାବନା ରଖୁଥିବା କିଛି କବିତାକୁ ବାଛିଥାଉ, ଠିକ୍ କଟା ନଡ଼ା ଗହଳରେ ପଡ଼ିଥିବା ଧାନକେଣ୍ଡା ପରି : ଯେଉଁଥିରେ ବ୍ୟକ୍ତିଗତ ଉଚ୍ଚାରଣ ନିୟତ ପରିବର୍ତ୍ତନଶୀଳ ଓ ରୂପାନ୍ତରିତ ହୋଇ ଚାଲିଥାଏ ମଧ୍ୟ । ତେଣୁ କବିତାର 'ଶେଷବିନ୍ଦୁ' ବୋଲି କିଛି ନାହିଁ । କବିତା–ସୃଜନ କଳାଶକ୍ତିରେ ଋଦ୍ଧିମନ୍ତ ପୁଣି ଉଦ୍ଭାବନ ପ୍ରକ୍ରିୟାରେ ନିପୁଣ । ତେବେ ଅନିବାର୍ଯ୍ୟ ପ୍ରଶ୍ନ ଉଠେ ଯେ, କ'ଣ କବିତା, କ'ଣ କବିତା ନୁହଁ ? କି କି ଯୋଗ୍ୟତା ଥିଲେ ରଚନାଟି କବିତା ହୋଇପାରିବ ? ଏହାର ଚୂଡ଼ାନ୍ତ ଉତ୍ତର ନାହିଁ । କଳାରୂପର ଜୀବନୀଶକ୍ତି ହିଁ ସୃଜନକୁ ସାର୍ଥକ କରିଥାଏ ।

ଏହି ପରିପ୍ରେକ୍ଷୀରେ, ଏ କଥା ନିଶ୍ଚିତ ଯେ 'ଉଦ୍‌ଭାସ'ର କୌଣସି ଏକକ ସଂଖ୍ୟା ନ ହେଲେ ବି ବିଗତ ଚାରି ବର୍ଷର ଉଦ୍‌ଭାସକୁ ଏକତ୍ର ରଖିଲେ, ଏକବିଂଶ ଶତକ ପ୍ରଥମ ଦଶକର ଓଡ଼ିଆ କବିତା ଓ କାବ୍ୟାଲୋଚନାର ଆତ୍ମାକୁ ଠାବ କରିହେବ । ଏହି ପତ୍ରିକା ପ୍ରତି ପାଠକଗଣ ଆସ୍ଥା ଓ ଆଗ୍ରହ ପ୍ରକଟ କରୁଛନ୍ତି । କେତେକ ସ୍ଥାନର ପାଠକେ ସାରାବର୍ଷ ଚିଠି ଲେଖି ପତ୍ରିକା ପାଉ ନ ଥିବା ଓ ପଢ଼ିବାକୁ ଇଚ୍ଛା କରୁଥିବା କଥା ଜଣାଇଲେ ବି ଆମେ ଏହାର ପ୍ରସାର ବଢ଼ାଇବାକୁ ଏଯାଏଁ ବିଶେଷ କିଛି ପଦକ୍ଷେପ ନେଇପାରି ନାହୁଁ । ଏହା ନିଶ୍ଚୟ ଦୁଃଖର କଥା ।

## କବିତାର ଅନୁବାଦ

ଏକଦା ମୁଁ କହିଥିଲି, କବିତାର ଅନୁବାଦ ଶତକଡ଼ା ଶହେ ସାର୍ଥକ ହେବା ସମ୍ଭବ ହୋଇ ନ ପାରେ । କିନ୍ତୁ ସାରା ବିଶ୍ୱ ପରସ୍ପରର ନିକଟବର୍ତ୍ତୀ

ହୋଇଉଠୁଥିବାବେଳେ, ଆମେ ପରସ୍ପରର ଆବେଗମୟ ହୃଦୟର ଭାଷାକୁ ଆପଣାର କରିବା ନିତାନ୍ତ ଜରୁରୀ ।

ଆନନ୍ଦର ବିଷୟ ଯେ, ବିଶିଷ୍ଟ ଓଡ଼ିଆ କବିଗଣ ଏବେ କବିତା ଅନୁବାଦରେ ନିଜକୁ ନିୟୋଜିତ କରୁଛନ୍ତି । ଏହାଦ୍ୱାରା ଓଡ଼ିଆ ସାହିତ୍ୟ ସମୃଦ୍ଧ ହେବା ସହ ଓଡ଼ିଆ ପାଠକମାନେ ଜାତୀୟ ଓ ଅନ୍ତର୍ଜାତୀୟ କାବ୍ୟୋପଲବ୍‌ଧିକୁ ଆପଣାର କରିବା ସମ୍ଭବ ହୋଇଛି । ଖୋଲାଝର୍କା ଦେଇ ସୁଦୂରର ବାସ୍ନାମିଶା ପବନ ଛୁଟିଆସି ଆମ କବିତା ବଖରାକୁ ଉତ୍‌ଫୁଲ୍ଲ ଓ ସୁଗନ୍ଧିତ କରୁଛି । କବିତାର ଅନୁବାଦ ପୋଖତ କବିଙ୍କ ହାତରେ ମୌଳିକତାର ନିର୍ଯ୍ୟାସ ରକ୍ଷା କରିବାରେ ବହୁଳାଂଶରେ ସମର୍ଥ ହୋଇପାରୁଛି । ଏ ଦିଗରେ 'ଉଦ୍‌ଭାସ'ର କବି-ଅନୁବାଦକଗଣଙ୍କୁ ଆମେ ବଧାଇ ଜଣାଉଛୁ ।

ଶକ୍ତି ଓ ସରସ୍ୱତୀ ସ୍ୱରୂପିଣୀ ଦେବୀ ଶାରଳା ପାର୍ବଣରେ ଜନଜୀବନର ଶୁଭସୂଚକ ହୁଅନ୍ତୁ ।

॥ ବାର ॥

## ଅନୁସୃଜନର ଅନିବାର୍ଯ୍ୟତା

ପୃଥିବୀର ବହୁଭାଷା ମଣିଷର ବିବିଧ ଉପଲବ୍‌ଧିକୁ ପ୍ରକଟ କରିଲାଗିଛି । ଏକ ସମୟଖଣ୍ଡରେ ବଞ୍ଚୁଥିବା ମଣିଷର ଅବବୋଧ, ଧାରଣା, ଦୃଷ୍ଟିଭଙ୍ଗୀ ଓ ଉଚ୍ଚାରଣରେ ଅନେକ ସାଦୃଶ୍ୟ ଥିଲେ ମଧ୍ୟ ବିଭିନ୍ନତା ରହିଛି ପ୍ରଚୁର । ଜଗତୀକରଣର ଏହି ଯୁଗରେ ଦେଶ ଓ ଭାଷାର ସୀମା ଡେଇଁ ଏକ ମହାମିଳନ ଓ ପାରସ୍ପରିକ ବୁଝାମଣାର ପ୍ରତିଷ୍ଠା ଦିଗରେ କଳା ଓ ସାହିତ୍ୟର ଭୂମିକା ଏକାନ୍ତ ଅପରିହାର୍ଯ୍ୟ । ଭାରତବର୍ଷର ସମସ୍ତ ସ୍ୱୀକୃତିପ୍ରାପ୍ତ ଭାଷାକୁ ଯଦି ବିଚାରକୁ ନିଆଯାଏ, ତେବେ ଏ ଦେଶର ଶିକ୍ଷିତଜନତାର ଭାବବିନିମୟର ଭାଷା ହେଉଛି ଇଂରାଜୀ । ଇଂରାଜୀ ମାଧ୍ୟମରେ ଆମେ ପରିଶୀଳିତ ଭାରତୀୟଗଣ ମୁଖ୍ୟତଃ ଭାବ ବିନିମୟ କରିଥାଉଁ । ଜଣେ ବଙ୍ଗାଳୀ ପାଠକ ତେଲୁଗୁ କବିତାଟିଏ ବୁଝିବାକୁ ଚାହିଁଲେ, ଇଂରାଜୀ ଅନୁବାଦ ମାଧ୍ୟମରେ ହିଁ କବିତାଟିକୁ ବୁଝେ । ଏହାହିଁ ହେଉଛି ବାସ୍ତବତା । ଏହି ବହୁଭାଷୀ ଦେଶରେ 'Unity in diversity' କଥାଟି ଯଦି କୁହାଯାଏ, ତାହା କେବଳ ଅନୁବାଦ ମାଧ୍ୟମରେ ହିଁ ସାଧିତ ହୋଇପାରିବ । କିନ୍ତୁ ଏହା ଏକ ଅତ୍ୟନ୍ତ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ଅନୁବାଦ ଏକ

କଳା ଓ ଅନୁବାଦକର ଦାୟିତ୍ୱ ମୌଳିକ ସର୍ଜକର ଦାୟିତ୍ୱଠାରୁ ଅଧିକ । ତା'ଛଡ଼ା ଭାରତୀୟ ଅନୁବାଦକଗଣ ବର୍ତ୍ତମାନର ଜଗତୀକରଣ ସ୍ଥିତିରେ ଅନୁବାଦ ନିମିତ୍ତ ଏପରି ରଚନାସବୁ ଚୟନ କରିବା ଉଚିତ, ଯାହା ବ୍ୟକ୍ତିକ, ସାମାଜିକ ଓ ରାଜନୀତିକ ଦୃଷ୍ଟିକୋଣରୁ ସାମ୍ପ୍ରତିକ ସମୟର କଳାତ୍ମକ ଅନୁକୂଳତାକୁ ବହନ କରୁଥିବ ।

## କବିତାର ଅନୁସୃଜନ

ଗୋଟିଏ ଭାଷାର ସାହିତ୍ୟ ଓ ଅପରଭାଷାର ସାହିତ୍ୟ ମଧ୍ୟରେ ଆଦାନପ୍ରଦାନ ବନ୍ଦ ହୋଇଗଲେ ସଂସ୍କୃତିର ପରିଧି ସଙ୍କୁଚିତ ହୋଇଯିବା ସ୍ୱାଭାବିକ । ତେବେ କବିତାର ଅନୁବାଦ ଓ ଗଦ୍ୟର ଅନୁବାଦ ଦୁଇଟି ସ୍ୱତନ୍ତ୍ର କଥା । କବିତାନୁବାଦ କଦାପି ସହଜ କର୍ମ ନୁହେଁ । ସକଳ ଅବଧାନତାର ସହ ଅନୁବାଦଟି ସମ୍ପନ୍ନ ହୋଇଥିଲେ ବି ଏହାର ଅନ୍ୟ ଅନେକ ବିକଳ୍ପ ତଥାପି ଅପହଞ୍ଚ ରହିଥାଏ । କେତେକ କହନ୍ତି – କବିତାନୁବାଦ କାର୍ଯ୍ୟଟି ଜଣେ ଦୋ'ଭାଷୀ ଉପସ୍ଥାପକ (interpreter) ମାଧ୍ୟମରେ ନିଜ ପ୍ରେମିକା ସହ କଥାବାର୍ତ୍ତା କଲାପରି ହାସ୍ୟକର । କବିତା ଭାବକଳ୍ପର ଓ ଭାଷାଶିଳ୍ପର ନିର୍ଯ୍ୟାସ ବୋଲି କିଏ ନ ଜାଣେ ? ଗୋଟିଏ ଅତର ଶିଶିରୁ ଅନ୍ୟ ଗୋଟିଏ ଶିଶିକୁ ଅତର ଢାଳିଲାବେଳେ ମୂଳ ଅତର ବାସ୍ନାର କେତେକାଂଶ ନିଶ୍ଚୟ ପବନରେ ଉଡ଼ିଯାଏ । ଭାଷାନ୍ତରରେ କବିତା ଅନୁବାଦ ସେହିଭଳି ନିଜର ସାରତତ୍ତ୍ୱ ବା ନିର୍ଯ୍ୟାସକୁ କିଛିଟା ହରାଇଥାଏ ।

ଛନ୍ଦ ଓ ଲୟ ଭଳି କବିତାର ଶିଳ୍ପକୁ ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ ରୂପାନ୍ତରିତ କରିହେବ ନାହିଁ । ଯଦି କରାଯିବ, ତେବେ କବିତାର ପ୍ରଭାବ ନିଶ୍ଚୟ ହ୍ରାସ ପାଇବ । କାରଣ ପ୍ରତ୍ୟେକ ଭାଷାର ଏକ ନିଜସ୍ୱ ଛନ୍ଦ ଓ ଲୟ ରହିଛି । କବିତା ଭାଷା ସହ ଅଧିକଭାବେ ସମ୍ପୃକ୍ତ ହୋଇଥିବାରୁ ମୂଳଭାଷାରୁ ଅଲଗା ହେଲେ, ତାହା ଆଉ କବିତା ହୋଇ ରହିବ ନାହିଁ । ଗୋଟିଏ ପରିବେଶରେ ସୃଷ୍ଟ ଓ ଜୀବିତ କବିତା ହୁଏତ ଅନ୍ୟ ଏକ ପରିବେଶରେ ଭଲ ରୂପେ ଉଧେଇ ପାରିବ ନାହିଁ । ବିଶେଷକରି ଗୋଟିଏ ଦେଶ, ଜାତିର ପୁରାକଳ୍ପ ଓ ଇତିହାସ ଅପର ଏକ ଦେଶ, ଜାତି ନିମିତ୍ତ ପ୍ରଭାବଶାଳୀ ହୋଇପାରିବ ନାହିଁ ।

ଏହାସତ୍ତ୍ୱେ କବିତାର ଅନୁବାଦ କାର୍ଯ୍ୟ ପୂର୍ବରୁ ଚାଲିଥିଲା, ବର୍ତ୍ତମାନ ମଧ୍ୟ ଚାଲିଛି । କାରଣସ୍ୱରୂପ, ଏହା କୁହାଯାଇପାରେ ଯେ ଗୋଟିଏ ଭାଷାର ଉତ୍କୃଷ୍ଟ

କାବ୍ୟକୃତିକୁ ଆଦୌ ନ ଜାଣିବା ଅପେକ୍ଷା କିଛିଟା ଜାଣିନେବା ଭଲ । ତେବେ ବାଜେ ଅନୁବାଦ ବେଳେ ବେଳେ କାବ୍ୟକୃତିକୁ ବିକୃତ କରି ତା'ର ପ୍ରଭାବକୁ ହ୍ରାସ କରିବାର ଆଶଙ୍କା ରହିଛି । ଅବଶ୍ୟ କବିତାନୁବାଦ କ୍ଷେତ୍ରରେ କବି ଓ ଅନୁବାଦକ ପରସ୍ପରର ସହଯୋଗ ଓ ନିକଟ ସାନ୍ନିଧ୍ୟରେ ଅନୁବାଦ କାର୍ଯ୍ୟ କଲେ, ତାହା ବହୁଳାଂଶରେ ସଫଳ ହୋଇପାରିବ ।

ଶେଷରେ ହେମନ୍ତ ଋତୁର ଶିଶିରସିକ୍ତ ପରିବେଶ ତଥା ଶ୍ରୀ ଓ ସୌନ୍ଦର୍ଯ୍ୟର ଦେବୀଙ୍କ ଭିତ୍ତିଚିତ୍ରମୟ ପୂଜନ ଅବକାଶରେ 'ଉଦ୍‌ଭାସ'ର ପାଠକପାଠିକାମାନଙ୍କୁ ଆମେ ସଦିଚ୍ଛା ଜଣାଉଛୁ ।

॥ ତେର ॥

## ସନ୍ତ୍ରାସ ଏବଂ କବିତା

କୌଣସି ନିର୍ଦ୍ଦିଷ୍ଟ ଭାବଚେତନାକୁ ନେଇ କବିତା ଲେଖିବାକୁ ଚାହିଁଲେ କବି ପ୍ରମାଦର ସମ୍ମୁଖୀନ ହୋଇଥାଏ । କାରଣ ଗୋଟିଏ ବିପଦାପନ୍ନ ଅବସ୍ଥାକୁ ବା ସଂହାରକୁ ଭିତ୍ତିକରି ଲେଖାଯାଉଥିବା କବିତା ବୈଚିତ୍ର୍ୟହୀନ, ଅକାବ୍ୟିକ ଓ ବିଫଳ ହୋଇଯିବାର ସମ୍ଭାବନା ରହିଥାଏ । ଅବଶ୍ୟ ବମ୍ବେ ମହାନଗରୀରେ ବିସ୍ଫୋରଣ, ବମ୍ବେ ଷ୍ଟେସନରେ ସଂହାରଲୀଳା, ପାର୍ଲାମେଣ୍ଟ ଆକ୍ରମଣ, ଅକ୍ଷରଧାମ ମନ୍ଦିରର ନରସଂହାର ଓ ନିଠାରୀର ଗଣହତ୍ୟା ଇତ୍ୟାଦି ପ୍ରତି ଗଭୀର ଉଦ୍‌ବେଗ ନେଇ କବିଟିଏ ଛଟପଟ୍ ହୁଏ । ବିକ୍ଷତ ହୃଦୟରେ ବିନିଦ୍ର ରଜନୀ ବିତାଇଥାଏ । ହୁଏତ, ପ୍ରତିନିୟତ ଏଭଳି ନରସଂହାର, ନିର୍ଦ୍ଦୋଷମରଣ, ଧ୍ୱଂସଲୀଳା ଘଟିଚାଲିଥିବାବେଳେ ପ୍ରଶ୍ନ ଉଠେ, କବିତା କେମିତି ଆଉ ଲେଖାଯିବ ? ସମ୍ବେଦନା ଜଡ଼ ପାଲଟିଯିବ ଓ ଶବ୍ଦର ଗତି ସ୍ତବ୍ଧ ହୋଇଯିବ ନାହିଁକି ? ତା'ର ଉତ୍ତର ବି ହୋଇପାରେ, କବିତା ନ ଲେଖାଯିବ ବି କେଉଁପରି ? ଏସବୁ ନିଦାରୁଣ ଦାବଦାହର ଉପଶମ ହେବା ନିମିତ୍ତ କବିତା ଯେ ନିହାତି ଜରୁରୀ ।

ଆନନ୍ଦ ଓ ବିହ୍ୱଳତାରେ ଉଚ୍ଛ୍ୱସିତ ହେଲାବେଳେ ଏବଂ ଦୁଃଖ ଓ ନିର୍ଯାତନାରେ ଯନ୍ତି ହେଲାବେଳେ ମଣିଷ କବିତାକୁ ଲୋଡ଼ିଥାଏ । ସେ ଜଗନ୍ନାଥ ଦାସଙ୍କ ଭାଗବତ ହେଉ, କବି ବୈକୁଣ୍ଠ ବା ମାନସିଂହଙ୍କ କବିତା

ହେଉ ବା ରମାକାନ୍ତ ରଥଙ୍କର ତଥା ଅନ୍ୟ କେହି ମରମୀ କବିଙ୍କର ରଚନା ହେଉ, ଅନୁଭବୀ ମଣିଷର ଅନ୍ତର୍ଲୋକରେ ସ୍ୱତଃ ଉଦିତ ହୋଇଉଠେ । କାରଣ, ଉଲ୍ଲାସକୁ ଦ୍ୱିଗୁଣିତ ଓ ବିଷାଦକୁ ଦ୍ୱିଖଣ୍ଡିତ କରିବାପାଇଁ ବ୍ୟକ୍ତିକୁ କବିତା ସହଯୋଗ ଦାନ କରେ । ବିଷାଦ, ବିବର୍ଣ୍ଣତା, ହତାଶାରୁ ମୁକ୍ତି ପାଇବାପାଇଁ, ବାସ୍ତବର କ୍ଷତକୁ ଆରୋଗ୍ୟ କରିବାପାଇଁ କବିତା ଦରକାର । କବିତା ରଚନା ନିଶ୍ଚୟ ଜରୁରୀ । ମାତ୍ର ଏହି ସନ୍ତ୍ରାସବ୍ୟାଧିତ କାଳରେ, ନିତ୍ୟ-ନିୟମିତ ଅକାରଣ ଧ୍ୱଂସର ସମ୍ବାଦ ଶୁଣି, ଦୃଶ୍ୟ ଦେଖି କବିର ହୃଦୟ ଆନ୍ଦୋଳିତ ଓ ପୀଡ଼ିତ ହେବା ସ୍ୱାଭାବିକ । କାରଣ କବିତା ଏକପ୍ରକାର ଧ୍ୱଂସର ପ୍ରତିପକ୍ଷରେ ହିଁ ଦଣ୍ଡାୟମାନ ହୋଇଥାଏ । କବିତା ଜୀବନର କଥା କହେ, ତେଣୁ ଜୀବନନାଶର ବିପକ୍ଷରେ ସ୍ପର୍ଦ୍ଧା କରେ । ତେଣୁ ସନ୍ତ୍ରାସ ଓ ହତ୍ୟାର ବିପକ୍ଷରେ ସିଧାସଳଖ ରଚିତ ହୋଇଥିବା କବିତାଠାରୁ ହୁଏତ, ବୟସ୍କ ବାପଟିଏ ଯୁବାପୁଅର ଛିନ୍ନ ମସ୍ତକ ଧରି ରାସ୍ତାରେ ଯାଉଥିବା (ବିସ୍ଫୋରଣ ସ୍ଥଳରୁ) ସମ୍ପର୍କରେ ଲିଖିତ କବିତା ସନ୍ତ୍ରାସର ଭୟାବହତାକୁ ଅଧିକ ତୀବ୍ର ରୂପେ ଅଭିବ୍ୟକ୍ତ କରିପାରେ । 'ଲୋହିତ ବର୍ଣ୍ଣର ସନ୍ଧ୍ୟା', 'ଏକୁଟିଆ ପକ୍ଷୀର ଡାକ' ଇତ୍ୟାଦିକୁ ନେଇ ଲିଖିତ କବିତା ମଣିଷର ବିସ୍ୱାଦକର ସ୍ଥିତିକୁ ଅଧିକ କରୁଣଭାବେ ବୁଝାଇବାକୁ ସମର୍ଥ ହୋଇପାରେ। କବିତାର ଶକ୍ତି ଅଛି, ତାହା ମଣିଷକୁ ଆରୋଗ୍ୟ ଓ ଆଶ୍ୱସ୍ତ କରିପାରିବ, ତା'ର ଲୁହକୁ ପୋଛିଦେଇପାରିବ । ଏକଥା ସତ, ମାତ୍ର ଏପ୍ରକାର ସାନ୍ତ୍ୱନାପ୍ରଦାୟୀ କବିତା କେଉଁଭଳି ପ୍ରକଟିତ ହେବ, ତା'ର ସୃଜନର କୌଣସି ନିଶ୍ଚିତ ମାର୍ଗ ବୁଝାଇ କହିବା କଠିନ ।

## କବିତା ଓ ପାଠକ

ସାହିତ୍ୟସଭାସମିତିରେ ବିଚାର ଆଲୋଚନା କାଳରେ ଓଡ଼ିଆଙ୍କ ପାଠକୀୟତାକୁ ନେଇ ବଡ଼ ନୈରାଶ୍ୟଜନକ ତଥ୍ୟ ଓ ଚିତ୍ର ମିଳିଥାଏ । ଏ ରାଜ୍ୟରେ ଚାରି କୋଟି ଓଡ଼ିଆ ଅଛନ୍ତି, ଅଥଚ କବିତା ପୁସ୍ତକ ଛପାହୁଏ ପାଞ୍ଚ ଶହ କପି । ରାଜା ରାମମୋହନ ଲାଇବ୍ରେରୀ କ୍ରୟ କରିନେଲା ତ ଉତ୍ତମ, ନଚେତ୍ ସେତକ ମଧ୍ୟ ସହଜରେ ବିକ୍ରି ହୋଇପାରେ ନାହିଁ । କେଡ଼େ ଲଜ୍ଜାଜନକ ଆମ ଅବସ୍ଥା ! କେତେକ କାମ କରିବାକୁ ଜଣେ ତା'ର ବନ୍ଧୁ ପରିଜନମାନଙ୍କୁ ବାଧ୍ୟ କରିପାରେ ।

ମାତ୍ର କବିତା ବହି କିଣିବାପାଇଁ ତୁମେ ବାଧ କରିପାରିବ ନାହିଁ । କାରଣ, କବିତା ପୁସ୍ତକ କିଣିବା ବ୍ୟକ୍ତିର କବିତା ପ୍ରତି ଅନ୍ତର୍ନିହିତ ଚାହିଦା ଥିବା ଦରକାର । କବିତା ପ୍ରତି ପାଠକର ଆନ୍ତରିକତା ଓ ଭାବାବେଗ ଥିବା ଚାହି । ଅନୁଭବ ଜଗତର ବ୍ୟାପ୍ତି, ନୀରବ ନିରୀକ୍ଷଣ ଓ ଭାବାନୁଭୂତିର ଶାଣିତତାକୁ ଭୋଗ କରିବାର ଯୋଗ୍ୟତା ବ୍ୟକ୍ତିଠାରେ ଥିଲେ ହିଁ ହୁଏ । କବିତା ଚେତନାର ସମୃଦ୍ଧ ଇଲାକାରେ ଆଶାର ବୀଜ ବୁଣିଦିଏ । ବୃହତ୍ ମାନବିକତାର ସ୍ୱରକୁ ଉଦାତ୍ତ କରେ । କବିତା କଳାସ୍ୱର୍ଣମଣି । ବିପୁଳ ସାଙ୍କେତିକତାର ଅଧିକାରୀ ଏବଂ ମାନବାତ୍ମାର ନୂତନ ଅଗ୍ରଗାମୀ କଳ୍ପନା ଓ ସୃଜନଶକ୍ତିର କଳାତ୍ମକ ପ୍ରତୀକ । ବ୍ୟତିକ୍ରମଶୀଳ ଦୈନନ୍ଦିନ ଜୀବନଧାରଣର ଅନ୍ତରାଳରେ ଏକ ଆଭ୍ୟନ୍ତରୀଣ ଜଗତରେ କବି କବିତାର ସାକ୍ଷାତ୍ ପାଏ । ସେଥିପାଇଁ ଏହି ବିଶାଳ ବିଶ୍ୱ ଭିତରେ କବିଟି ଏକୁଟିଆ । କବିତା ହିଁ ଏହି ଏକାକୀତ୍ୱ ସହ କବିର ମିଳନ ଘଟାଇଥାଏ । ଏ କ୍ଷେତ୍ରରେ ଏକାକୀପଣ ସହ କବି ମିଳିତ ହୁଏ ସତ: ମାତ୍ର ବାନ୍ଧି ହୋଇଯାଏ ନାହିଁ । ଅପରପକ୍ଷରେ କବି ସମଗ୍ର ବିଶ୍ୱର ଏକ କ୍ରିୟାଶୀଳ ସ୍ପନ୍ଦିତ ଅଂଶ ପାଲଟିଯାଏ । କବିର ସଂରଚନାକୁ ଅବବୋଧ ସ୍ତରରେ ସାକ୍ଷାତ୍ କରିବାର ସାମର୍ଥ୍ୟ ଲାଭ କରିଥିବା ପାଠକ ମଧ କବିର ସମସ୍ପର୍ଦ୍ଧୀ । ଏକାକୀତ୍ୱ ମଧରେ ସେ କବିତା ସହ ଏକାତ୍ମ ହୋଇପାରେ । ବସ୍ତୁବାଦୀ ଜଗତରେ ଏହି 'ନିରୋଳାପଣ'ଟିକୁ ଖୋଜି ପାଇବାକୁ ପାଠକର ଚେତନା ସୁସ୍ଥିର ହେବା ଆବଶ୍ୟକ । ଏକଥା ସତ ଯେ, କବିତାରୁ ପ୍ରାପ୍ତ ସହଯୋଗ ବ୍ୟକ୍ତିଚେତନାକୁ ବିସ୍ତୃତ ଓ ଶକ୍ତିଶାଳୀ କରିଥାଏ । ନିଜର ସ୍ୱର୍ଗ ଓ ନର୍କକୁ ନିଜ ଭିତରେ ଖୋଜିବାକୁ ସାହାଯ୍ୟ କରିଥାଏ । କବିତା ମାନବୀୟ ଦରଦ ପ୍ରତି ପାଠକକୁ ଅଧିକ ସମ୍ବେଦନଶୀଳ କରିଥାଏ । ତେଣୁ କାବ୍ୟିକ ଜଗତରେ ପାଠକ ହିଁ ପରୋକ୍ଷ ନାୟକ । କବିଠାରୁ ପାଠକ କୌଣସିମତେ ଭିନ୍ନ ନୁହେଁ । କେବଳ ଭାବାନୁଭୂତିକୁ ପ୍ରକଟ କରିବା ଦିଗରେ ଶବ୍ଦସତ୍ତାର କୌଶଳଟି ତା' ଆୟତ୍ତରେ ନ ଥାଏ ।

ନୂଆବର୍ଷ ୨୦୦୭ କ୍ରମଶଃ ଗତିଶୀଳ ହୋଇଚାଲିଛି । ବସନ୍ତ ଋତୁର ସ୍ପର୍ଶରେ ପ୍ରକୃତି ଜୀବନ୍ତ ଓ ସୁଗନ୍ଧିତ ହୋଇଉଠିଛି । ପ୍ରକୃତିର ସୃଜନାକାଙ୍କ୍ଷା ହୋଇଉଠିଛି ଉଦଗ୍ର । ଏହି ଅବସରରେ କବି ଓ କବିତାର ବିବେକୀ ଗ୍ରାହକମାନଙ୍କୁ ମୁଁ ସାଦର ଅଭିବାଦନ ଜଣାଉଛି ।

॥ ଚଉଦ/ପନ୍ଦର ॥

## ଭାଷାର ଅସ୍ମିତା ?

ଓଡ଼ିଆ ଭାଷାର ସୁଦୀର୍ଘ, ସମୃଦ୍ଧ ପରମ୍ପରା ରହିଥିଲେ ବି, ଆଜି ଯେ ତା'ର ସୁକୁମାରପଣ ଓ ଆତ୍ମିକ ଭାବ ବିପଦଗ୍ରସ୍ତ ହେବାରେ ଲାଗିଛି, ତାହା ଅସ୍ୱୀକାର କରିବା ଉପାୟ ନାହିଁ । ଯତ୍ନହୀନତା ଯୋଗୁଁ, ବ୍ୟବହାରରହିତ ହେବା ଯୋଗୁଁ ଭାଷାଭାଷୀ ଲୋକଙ୍କର ନିଜ ଭାଷା ପ୍ରତି ଉଦାସୀନତା ତଥା ଅମର୍ଯ୍ୟାଦାବୋଧ ଯୋଗୁଁ ଆମ ଭାଷା ପ୍ରାୟ କ୍ଷୀଣଜୀବୀ ହେବା ଦିଗକୁ ଆଗେଇ ଚାଲିଛି । ଆମ ପିଲାଏ ମାତୃଭାଷାରେ କଥା କହୁ ନାହାନ୍ତି । ସ୍ୱଳ୍ପ ଶିକ୍ଷିତ ଓଡ଼ିଆ ପିଲାଏ ହିନ୍ଦୀରେ ଓ ଶିକ୍ଷିତ ଓଡ଼ିଆ ପିଲାଏ ଇଂରାଜୀ ଓ ହିନ୍ଦୀରେ କଥାବାର୍ତ୍ତା ହେଉଛନ୍ତି । ଅଭିଭାବକମାନେ ଓଡ଼ିଆ ସମ୍ବାଦପତ୍ରଟିଏ ଘରକୁ ଆଣୁ ନାହାନ୍ତି । ନିଜ ଭାଷା ମାଧ୍ୟମରେ ଭାବପ୍ରକାଶ କରିବାକୁ ପରିବାରରେ ବୟସ୍କ ଲୋକେ ଅର୍ଥାତ୍ ବାପା, ମାଆ ଇତ୍ୟାଦି ପିଲାମାନଙ୍କୁ ପରାମର୍ଶ ଦେଉ ନାହାନ୍ତି । ଆପଣା ଅନ୍ତରର ଶ୍ରଦ୍ଧାଭାବକୁ ଓଡ଼ିଆଭାଷାରେ ପିଲାମାନଙ୍କୁ ଜଣାଉ ନାହାନ୍ତି । ଫଳରେ ଭାଷା କ୍ଷମତା ହରାଇବାରେ ଲାଗିଛି । କ୍ରମଶଃ ବିଲୟ ଦିଗକୁ ଗତି କରୁଛି ।

ତେବେ ଭାଷାର ବିଲୟ କେବଳ ପିଲାମାନଙ୍କଦ୍ୱାରା ପରିତ୍ୟକ୍ତ ହେବାଯୋଗୁଁ ଯେ ସମ୍ଭବ ହେଉଛି ତାହା ନୁହେଁ । ଏଥିନିମିତ୍ତ ଅନ୍ୟାନ୍ୟ ଅନେକ କାରଣ ମଧ୍ୟ ରହିଛି । ପରାକ୍ରମଶାଳୀ ଶାସକବର୍ଗଙ୍କ ଯଥେଚ୍ଛାଚାର ଓ ଅନ୍ତଃସାରଶୂନ୍ୟ ଭାଷଣ କଥନ ଭାଷାକୁ ରକ୍ତହୀନ ପାଣ୍ଡୁର କରିବା ନିମିତ୍ତ କମ୍ ଦାୟୀ ନୁହେଁ । ଯେହେତୁ ପରାକ୍ରମଶାଳୀ ଶାସକବର୍ଗ କେବଳ ବାଧ୍ୟ, ଅନୁଗତ ଓ ଆଜ୍ଞାବହ ଲୋକମାନଙ୍କ ନିମିତ୍ତ ବକ୍ତବ୍ୟ ପ୍ରଦାନ କରୁଛନ୍ତି, ବାକ୍ୟାଳାପ କରୁଛନ୍ତି, ନିଜ କଥାକୁ ମାନିନେବା ନିମିତ୍ତ ଚାପ ପ୍ରୟୋଗ କରୁଛନ୍ତି, ଭାଷା ତେଣୁ ମୃତପ୍ରାୟ ହୋଇଯିବା ସମ୍ଭବ ହେଉଛି ।

ଯଦି ଭାଷାଭାଷୀ ଲୋକେ ବହୁକାଳ ଧରି ନିଜ ଭାଷାକୁ, ସେହି ଭାଷାର ନିଜସ୍ୱ ସମ୍ପଦ ଓ ସଂଯମକୁ, ଜନ୍ମଗତ ଭାବଧାରା ଓ ଅର୍ଥ ସମ୍ଭାରକୁ ଆଡ଼େଇଯିବେ, ଜୋର୍ ଜବର୍‌ଦସ୍ତ ଯାହିତାହି ଭାବେ ଭାଷାକୁ ଅନୁଚିତ ଭାବେ ପ୍ରୟୋଗ କରିବାରେ ବ୍ୟାପୃତ ରହିବେ, ତେବେ ଭାଷା ସର୍ବସ୍ୱାନ୍ତ ହୋଇଯିବ

ନାହିଁ କି ? ମଣିଷ ପ୍ରତି, ପ୍ରକୃତି ପ୍ରତି ଅତ୍ୟାଚାର ହିଂସା ପଦବାଚ୍ୟ: କିନ୍ତୁ ମାତୃଭାଷା ପ୍ରତି ଅତ୍ୟାଚାର କ'ଣ ହିଂସା ପଦବାଚ୍ୟ ନୁହେଁ ? ଏତାଦୃଶ ହିଂସାଚରଣଦ୍ୱାରା ଭାଷାଜ୍ଞାନ ସୀମିତ ହୋଇଯାଉଛି ଓ ଭାଷା ମରଣ ଆଡ଼କୁ ମୁହାଁଉଛି । ତେଣୁ ଭାଷାକୁ ସୁସ୍ଥ, ସବଳ କରିବା ଓ ସାର୍ଥକ କରିବା ଏକାନ୍ତ ଅପରିହାର୍ଯ୍ୟ। ଅନେକ କ୍ଷେତ୍ରରେ ପ୍ରୟୋଗ କରାଯାଉଥିବା ଭାଷା, ଯଥା – ଶାସନର ସ୍ୱଚ୍ଛତାହୀନ, ମନନହୀନ, ସାମାଜିକ ଦୁରଭିସନ୍ଧିର ଭାଷା, ଆପାତଃ ଗୌରବଯୁକ୍ତ, ଶିକ୍ଷାଦାନର ପ୍ରାୟ ନିଷ୍ପ୍ରାଣ ଭାଷା, ବସ୍ତୁତାନ୍ତ୍ରିକ ବିଜ୍ଞାନର ଭାଷା, ସଂଖ୍ୟାଲଘୁଙ୍କ ପ୍ରତି ଲୋକଦେଖାଣିଆ, ଆବେଗରହିତ ଭାଷା, ବିଭେଦ ସୃଷ୍ଟିର ଉଦ୍ଦେଶ୍ୟକୁ କୌଶଳରେ ଲୁଚାଇ ରଖିବାର ଭାଷା – ଏହି ସବୁର ମୁଖା ଖୋଲିଦେଲେ ହିଁ, ଭାଷାର ଅନ୍ତର୍ଗତ ମୂଲ୍ୟ ପ୍ରତିଷ୍ଠିତ ହୋଇପାରିବ । ଜାତିଆଣକୁ ଉସ୍କାଉଥିବା ଭାଷା, ଯୌନ ଉଦ୍ଦୀପକ ଭାଷା, ସଙ୍କୀର୍ଣ୍ଣ ଧର୍ମଭାବନାକୁ ସୁହାଉଥିବା ଭାଷା – ଏସବୁ ପ୍ରକାର ଭାଷା ବିଭିନ୍ନ କୌଶଳର ରଙ୍ଗବୋଳା ଅତିଚାର ଜର୍ଜରିତ ଭାଷା । ଏହା ବ୍ୟତୀତ ଦପ୍ତରର (Official) ଅଜ୍ଞତାକୁ ଓ ଆପଣାକୁ ବଞ୍ଚାଇବାପାଇଁ ସାଞ୍ଚୁ ତିଆରି କରିବାର ଭାଷା ବାହାରକୁ ସୁନ୍ଦର ଦିଶିଲେ ବି ଏପ୍ରକାର ଭାଷାର ପ୍ରାଣସତ୍ତା କ୍ଷୀଣ । ତେଣୁ ଏହି ଭାଷା ମାଧ୍ୟମରେ ନୂତନ ଜ୍ଞାନ ଓ ଧ୍ୟାନ ଧାରଣାର ଆଦାନପ୍ରଦାନ କଦାପି ଚଳିବ ନାହିଁ ।

ତେବେ, ଏଠାରେ ମୁଁ ମୁଖ୍ୟତଃ କବିତା ସମ୍ପର୍କୀୟ ଭାଷା କଥା କହୁଥିଲେ ବି, ଏହା ଭୁଲି ନାହିଁ ଯେ, ବିଭିନ୍ନ ଉଦ୍ଦେଶ୍ୟ ସାଧନ ନିମିତ୍ତ ଭାଷାର ବ୍ୟବହାର ନିଶ୍ଚୟ ରହିବ ହିଁ ରହିବ । ଲୋକମାନଙ୍କ ମଧ୍ୟରେ ହିଂସାଦ୍ୱେଷ ପାଇଁ, ଦୋକାନର କିଣାବିକାପାଇଁ, ପୋଷ୍ଟ ଅଫିସ୍, ଖେଳପଡ଼ିଆ ଓ ଶୟନକକ୍ଷପାଇଁ ଭାଷା ତ ନିଶ୍ଚୟ ରହିବ । ଧର୍ଷଣ, ହତ୍ୟା ଓ ସନ୍ତ୍ରାସପାଇଁ ବି ଭାଷା ରହିବ, ରହିବ କୂଟନୀତି ପ୍ରକାଶର ଭାଷା । ନାରୀମାନଙ୍କୁ ଯନ୍ତ୍ରଣା-ଜର୍ଜର କରିବା, ସେମାନଙ୍କ ତଣ୍ଟି ଚିପିବା, ଭାଷାକୁ ବି ନକ୍‌ସା ଦିଆଯିବ। ଏ ପ୍ରକାର ନକ୍‌ସା ପୂର୍ବରୁ ଦିଆଯାଇଛି ଓ ଅଧିକରୁ ଅଧିକ ଦିଆଯାଉଛି ମଧ୍ୟ । କୁହାଳିଆପଣର ଚକ୍‌ଚକ୍ ଭାଷା, ଯୁକ୍ତି ବାଢ଼ିବାର ଭାଷା ମଧ୍ୟ ଭାଷାର ହୃତ୍‌ସ୍ପନ୍ଦନକୁ ସୀମିତ କରିଦେବାର ଅବକାଶ ରହିଛି । ତେଣୁ ଭାଷାର ସାମର୍ଥ୍ୟ ଏପ୍ରକାର ଭାଷାରେ ପ୍ରକଟିତ ହୋଇପାରିବ ନାହିଁ । ସତ୍ୟ ଓ ବାସ୍ତବ ସ୍ଥିତିକୁ ଯଥାଯଥ ଭାବେ ଚିତ୍ରଣ କରିବାରେ, କଳ୍ପନାକୁ

ଜୀବନ୍ୟାସ ଦେବାରେ ଭାଷାର ସାମର୍ଥ୍ୟ ନିହିତ । ଅପର ଅର୍ଥରେ ଭାଷା ପ୍ରଶ୍ନର ସମ୍ମୁଖୀନ ହେଲେ ହିଁ ନୂଆ ଧାରଣା, ବିଶ୍ୱାସକୁ ପ୍ରକଟ କରିବାର ସାମର୍ଥ୍ୟ ହାସଲ କରିଥାଏ । ଚିନ୍ତାର ପରିସରକୁ, କଥନରୀତିକୁ ଓ ନୀରବତାକୁ ମୁଖର କରିବାରେ ସମର୍ଥ ହୁଏ ।

## କାବ୍ୟ ସୃଜନ

ଶବ୍ଦରଢ଼ା କବିତା ସୁନ୍ଦର ଓ ଶକ୍ତିଶାଳୀ ହେବା ଜରୁରୀ । ଏହାର ମଧ୍ୟ କିଛି ପ୍ରଭାବ ରହିବା ଚାହି । ଅର୍ଥାତ୍ କବିତା ଭିତରେ ଏମିତି କିଛି ଥିବ, ଯାହା ପାଠକର ଜ୍ଞାନ ଓ ଅନୁଭବର ଦ୍ୱାର ଖୋଲିଦେଉଥିବ, ଜୀବନର ତଥା ତତ୍କାଳର ଦ୍ୱନ୍ଦ୍ୱ ଓ ସମସ୍ୟାମାନଙ୍କୁ ସୂକ୍ଷ୍ମତାର ସହିତ ଦର୍ଶାଇ ଦେଉଥିବ । ତେବେ, ସମସ୍ୟା ସମାଧାନ କରିବା କାର୍ଯ୍ୟଟି କବିତାଶକ୍ତିର ଅନ୍ତର୍ଗତ ନୁହେଁ । କବି ମହାନ୍ୟାୟିକ ନୁହେଁ, ସମାଧାନର ସାମର୍ଥ୍ୟ ତା'ର ନାହିଁ । କବିତା ସବୁକିଛିକୁ ବଦଳାଇ ପାରିବ ନାହିଁ ବା ଯଥାଯଥ କରାଇପାରିବ ନାହିଁ – ଏହା ସର୍ବବାଦିସମ୍ମତ । କୁପ୍ରଥାକୁ, ସାମାଜିକ ଅସ୍ଥିରତାକୁ, ସନ୍ତ୍ରାସ ଓ ଯୁଦ୍ଧକୁ, ଆବେଗିକ କ୍ରୂରତାକୁ ପରାହତ କରିପାରିବ – ୟା ମଧ୍ୟ ସମ୍ଭବ ନୁହେଁ । ଏଭଳି ଆସ୍ଫାଳନ କରିବାକୁ କବିତା ମଧ୍ୟ ପ୍ରସ୍ତୁତ ନୁହେଁ । ବିପୁଳକୁ ଶବ୍ଦଗତ କରି ଯଥାର୍ଥ ରୂପ ପ୍ରଦାନ କରିବାରେ କବିତାର ଅସଲ ସାମର୍ଥ୍ୟ ନିହିତ ।

ଏସବୁକୁ ଗଭୀରଭାବେ ଅନୁଧ୍ୟାନ କଲେ, ବୁଝିହୁଏ ଯେ, ଜନ୍ମଗତ ଅଧିକାରରେ ଯେଉଁ ଭାଷାକୁ ଆମେ ପାଇଛେ, ତାହାର ବ୍ୟବହାରର ଅଯୌକ୍ତିକତା ଓ ତା' ମାଧ୍ୟମରେ ବିଭିନ୍ନ କ୍ରିୟାକଳାପର କୁପ୍ରଭାବ ଆମକୁ ସେ ଭାଷାଠାରୁ କ୍ରମଶଃ ଦୂରେଇ ନେଉଛି । କବିପାଇଁ ଭାଷା ଏକ ଜୀବନ୍ତ ବିଷୟ । ଭାଷା ଉପରେ କବିର ଆୟତ୍ତ ରହିଛି ନିଶ୍ଚୟ। କିନ୍ତୁ ଭାଷା ମୃତ୍ୟୁ ଓ ବିନାଶର ବଶବର୍ତ୍ତୀ । ଭାଷାଭାଷୀ ଲୋକେ ଇଚ୍ଛାକଲେ ଭାଷାକୁ ମାରିଦେଇପାରିବେ । କେତେକ ବ୍ୟବହାର ହେତୁ ତାକୁ ବିନାଶର ନିକଟବର୍ତ୍ତୀ କରିପାରିବେ । ତାହା ପୂର୍ବରୁ ଆଲୋଚିତ । ଅପରପକ୍ଷରେ ଭାଷାଭାଷୀ ଲୋକେ ସାଧୁ ଉଦ୍ୟମ କଲେ ଭାଷାକୁ ମଧ୍ୟ ବିନାଶରୁ ଉଦ୍ଧାର କରି ତା'ର ଉତ୍ତରୋତ୍ତର ଉନ୍ନତି ସାଧନ କରିପାରିବେ । ଯେଉଁ ଭାଷାରେ ଲୋକେ କଥୋପକଥନ କରିବେ ନାହିଁ, ଯେଉଁ ଭାଷାରେ କିଛି ମନନଶୀଳ ରଚନା କରାଯିବ ନାହିଁ – ସେ ଭାଷା ପକ୍ଷାଘାତଗ୍ରସ୍ତ, ମୃତ୍ୟୁ ଦିଗକୁ ଧାବିତ । ତେଣୁ ଭାଷାଭାଷୀ ଲୋକେ ସ୍ୱତନ୍ତ୍ର ଆଗ୍ରହ ପ୍ରକାଶ କଲେ ହିଁ ଭାଷା ସଂଜୀବିତ ରହିବ ଓ ପ୍ରାଧାନ୍ୟ ପାଇବ ।

ଉପରୋକ୍ତ ବିଭିନ୍ନ ପ୍ରକାର ଧର୍ଷଣର ଶିକାର ହୋଇ ନ ଥିବା ଭାଷା, ସେ ବିରାଟ ବା ଲଳିତ ହେଉ, ଭୀଷଣ ହେଉ ବା ଅଟ୍ଟହାସ୍ୟ ହେଉ, ଗୋଟିଏ ବର୍ଣ୍ଣଯୁକ୍ତ (ଉଃ, ଆଃ, ଓଃ ହାୟ ଭଳି) କ୍ରନ୍ଦନର ଉଚ୍ଚାରଣ ହେଉ, ସୁଚୟିତ ଭାଷାର କଥନ ହେଉ ବା ସୁନିର୍ବାଚିତ ନୀରବତା ହେଉ, ତାହା ଜ୍ଞାନ ଦିଗକୁ, ବିକାଶ ଦିଗକୁ ଅଗ୍ରସର ହୋଇଥାଏ । ଭାଷାର ସଜୀବତା ଓ ସାମର୍ଥ୍ୟ ହେତୁ, ତାହା ସୂକ୍ଷ୍ମ ଓ ଗଭୀର ଭାବ ପ୍ରଖ୍ୟାପକ ହୋଇପାରେ । ଫଳରେ ସାହିତ୍ୟ, ସଙ୍ଗୀତ ଓ କବିତାର ଇଙ୍ଗିତମୟ ଶକ୍ତିକୁ ପ୍ରକଟ କରିବାରେ, ସଂପ୍ରେଷଣ କରିବାରେ ସମର୍ଥ ହୁଏ । ପ୍ରଥମେ ଭାଷାର ସ୍ୱାତନ୍ତ୍ର୍ୟ ବଜାୟ ରହିଲେ ହିଁ ଉନ୍ନତ ସୃଜନ ସମ୍ଭବ ହୁଏ ।

ଶବ୍ଦନିର୍ମିତ ସୃଜନ ସମର୍ପଣଧର୍ମୀ । କାରଣ, ଏଥିରେ କବିକୁ ଅନ୍ୟଠାରେ ପହଞ୍ଚାଇବାର (କବି ଚେତନାକୁ ପାଠକ ପର୍ଯ୍ୟନ୍ତ ସଂପ୍ରେଷଣ କରିବାର) ଉଦ୍ଦେଶ୍ୟ ନିହିତ ଥାଏ । ଏହି ଶବ୍ଦସୃଜନ କିଛି ତିଆରି କରି ଜଣାଇଦିଏ ଯେ, ଆମେ ପରସ୍ପରଠାରୁ ଭିନ୍ନ । ଜଣକର ଚିନ୍ତା, ବିଶ୍ୱାସ, ଅନୁଭବ ପୂରାପୂରି ଅନ୍ୟ ଜଣକ ସହିତ ସମାନ ନୁହେଁ । ଏହି ଅଲଗାପଣ ସର୍ଜକଠାରୁ ପାଠକ ପ୍ରତି ସଂପ୍ରେଷିତ ହୋଇଥାଏ । ଶବ୍ଦଗଢ଼ା କୃତି ମଧ୍ୟରେ ସବୁଠାରୁ ସୂକ୍ଷ୍ମ କବିତା, ତେଣୁ କବିତା ଏହି ଅଲଗାପଣକୁ ତୀବ୍ର ଭାବେ ସୂଚାଇଦିଏ । ତେଣୁ କବିତା ଆମକୁ ନାମହୀନତାର ବିପତ୍ତିରୁ ରକ୍ଷା କରେ ।

ଜୀବନରେ ମୃତ୍ୟୁ ଅବଶ୍ୟମ୍ଭାବୀ । ମାତ୍ର ସୃଜନଶୀଳ ସାହିତ୍ୟ, କବିତା ଜୀବନର ମାପକାଠି । ଜଣେ ମନୀଷୀ କହିଥିଲେ – 'Art is a revenge against time.' କାଳ ବିପକ୍ଷରେ କଳା ଏକ ପ୍ରତିଶୋଧ । ଅର୍ଥାତ୍ କଳା ବା କବିତା ମରଣଶୀଳ ନୁହେଁ, ଚିରଞ୍ଜୀବୀ । ତାହାର ଚିର ଜୀବନ ଅବଶ୍ୟ ଏକ ଭିନ୍ନ ପ୍ରସଙ୍ଗ । ତେବେ କଳା ବା କବିତା ଜୀବନପାଇଁ ଜୀବସାର ସଦୃଶ । କବିତା ଭାଷା ମାଧ୍ୟମରେ ଚିତ୍ରରୂପଟିଏ ତିଆରି କରେ । ସେଥିପାଇଁ କବିତାକୁ word-picture କୁହାଯାଏ । ଶବ୍ଦର ଚିତ୍ର ନିର୍ମାଣ କରିବାର, ସାର୍ଥକ ସୂଚନା ପ୍ରଦାନ କରିବାର ଅସାଧାରଣ କ୍ଷମତା ରହିଛି । ତେଣୁ ଭାଷା ହେଉଛି ଧ୍ୟାନ । ଏହା ପାଠକକୁ ମଗ୍ନ କରେ । ଏହି ଭାଷା ମାଧ୍ୟମରେ ଆମେ କବିତା, ସାହିତ୍ୟ, ସଙ୍ଗୀତ ଶୁଣୁ । ଜୀବନର ଦୁଃସ୍ଥିତିର ଦାଢ଼ରେ ରକ୍ତାକ୍ତ ହେଉଥିବାବେଳେ ଯେଉଁ ମଧୁର ସ୍ମୃତି ବା ଅବବୋଧର ଗୁଣୁଗୁଣୁ ଆମ ଚେତନାକୁ ଆବିଷ୍ଟ କରେ;

ଜୀବନ୍ୟାସ ପ୍ରଦାନ କରେ, ତାହାହିଁ କବିତା । ଏହା ସୂଚାଇଦିଏ ଯେ, ଦୁଃସ୍ଥିତି ଭିତରେ ମଧ୍ୟ କେଉଁଠି ନା କେଉଁଠି ରହିଛି ଆଶା, ସମ୍ବେଦନାର ଝଲକ ଓ ବଞ୍ଚି ରହିବାର (କ୍ଷଣ ମାତ୍ରପାଇଁ ହେଉ ପଛେ) ପ୍ରତିଶ୍ରୁତି । ଏହି ମହାର୍ଘ ପ୍ରତିଶ୍ରୁତିକୁ ଗ୍ରହଣ କରିନେବାକୁ କବିତା ହିଁ ମଣିଷର ଅନ୍ତଃକରଣକୁ ପ୍ରସ୍ତୁତ କରିଥାଏ ।

'ଉଦ୍‌ଭାସ'ର ପାଠକ-ପାଠିକାମାନଙ୍କୁ ଆମ ବିଳମ୍ବିତ ବଧାଇ, ଦୁର୍ଗାପୂଜା, କାଳୀପୂଜାର ସମ୍ମିଳିତ ଅବକାଶରେ । ମାତୃଶକ୍ତିର, ପରାଶକ୍ତିର ପ୍ରତିଷ୍ଠା ହେଉ, ଜନଚେତନା କଲ୍ୟାଣ କାମନାରେ ଲାଳିତ୍ୟମୟ ଓ ମଙ୍ଗଳକର ହେଉ ।

॥ ଷୋହଳ ॥

## ନିଦିଧ୍ୟାସନ ଓ କବିତା

ସଫଳ କାବ୍ୟଶିଳ୍ପୀ ହେଉଛି ସେହି, ଯାହାର ନିଜସ୍ୱ ଉଚ୍ଚାରଣ ଉପରେ ଅକ୍ତିଆର ଅଛି । ସାଙ୍ଗୀତିକତାର ପ୍ରଭାବ ସମ୍ପର୍କରେ ସେ ସଚେତନ ଏବଂ ଛନ୍ଦମୟତା ଓ ଛନ୍ଦହୀନତା ତା'ର ଆୟତ୍ତରେ । ଆଲୋଡ଼ନକାରୀ ଆକର୍ଷଣୀୟ କବିତା ସେହି କାବ୍ୟଶିଳ୍ପୀର ଚେତନାରୁ ନିଃସୃତ ହୋଇଥାଏ । କ୍ଷଣିକତାକୁ ଚିରନ୍ତନତାରେ ଅଭିଷିକ୍ତ କରିବାକୁ ସେ କବି ହିଁ ସକ୍ଷମ । ଯେକୌଣସି କଥାକୁ ନିଜ ସୃଜନରେ ପ୍ରକାଶ କରିବାର ଅବାଧ ସ୍ୱାଧୀନତା କବିର ରହିଛି, ଯଦି ସେ ତା'ର ବକ୍ତବ୍ୟକୁ, କହିବାର କଥାକୁ ସୁନିର୍ଦ୍ଦିଷ୍ଟ ଭାବେ ଯଥାଯଥ ସ୍ଥାନରେ ସଂଯୋଜିତ କରିପାରିଥାଏ ।

ଏକଥା ସତ, କାବ୍ୟରଚନା ମାର୍ଗରେ ଏମିତି କିଛି ସୁଯୋଗ ନାହିଁ କି ହଠାତ୍ ଆକସ୍ମିକ କିଛି ହୋଇଯାଏ ନାହିଁ । ଯଦିଚ କବିର ମନେହୁଏ ଯେ, ଏ ସମସ୍ତ ସଂରଚନା ପୂର୍ବ ନିର୍ଦ୍ଦିଷ୍ଟ ଥିଲା । କବିର ନିଦିଧ୍ୟାସନ, ଅନୁବ୍ରତ ପ୍ରୟାସ କବିତା ରଚନା ନିମିତ୍ତ ଅପରିହାର୍ଯ୍ୟ ହୋଇଥିଲେ ବି, ଏହା ରହସ୍ୟଯୁକ୍ତ ହୋଇଥିଲା ପରି ମନେହୁଏ । ତେବେ ଜଣେ ସଫଳ କାବ୍ୟଶିଳ୍ପୀର ଚେତନାରେ ଦ୍ୱନ୍ଦ୍ୱାତ୍ମକ ହେବାର ମାନସିକତା ରହିଥିବା ଓ ଭୂଚିତ୍ରର ଏକ ଶକ୍ତିଶାଳୀ ଅବବୋଧ ରହିଥିବା ଜରୁରୀ । ତା'ର ବ୍ୟକ୍ତିଗତ ଦରଦ ସାମାଜିକ ସ୍ଥିତି ସହ ଜଡ଼ିତ ହୋଇଥିବା ଚାହି । ଏପରିକି କବି ମଧ୍ୟ ନିଜେ ବୁଝିପାରୁଥିବ, ତା'ର ଉଚ୍ଚାରଣ କେଉଁ ପରିମାଣରେ ଦୁର୍ବୋଧ ବା ଦୁର୍ବୋଧ ନୁହେଁ । ଭାବ ଓ

ଅଭିବ୍ୟକ୍ତିରେ ଯେତେ ବିଭିନ୍ନତା ଥିଲେ ବି ଜଣେ ସମର୍ଥ କବିର ରଚନାରେ ଏକକ ସୃଷ୍ଟିର ଅଖଣ୍ଡତା ସୁପ୍ରେକ୍ଷ୍ୟ ହୋଇଥାଏ । କବିର 'ମୁଁ'ଟି ସାହିତ୍ୟ, ଇତିହାସ ବା ଆତ୍ମଜୀବନୀରୁ ସମ୍ଭୂତ ହୋଇଥାଉ ପଛକେ, ତାହା ସାମୂହିକ ଜୀବନ ସହ ଏକୀଭୂତ ହୋଇଥାଏ । ସେଥିପାଇଁ କବିତାକୁ ପଦ୍ୟରେ ଲିଖିତ କବିର ଆତ୍ମଜୀବନୀ କହିଲେ ଭୁଲ୍ ହେବ ନାହିଁ । କେହି କେହି କବି ହୁଏତ କବିତାଟିକୁ ଏକାଥରକେ ଲେଖିଦେଇପାରନ୍ତି; ମାତ୍ର ପ୍ରତ୍ୟେକ ସଚେତନ ଶିଳ୍ପୀ ବୁଝିଥାଏ ଯେ, ଥରକୁ ଥର ସେ ତା'ର ନବଲିଖିତ କବିତା ପାଖକୁ ଫେରିଆସିବାକୁ ବାଧ୍ୟ । ନିଜ ନବତମ ରଚନାକୁ ବାରମ୍ବାର କାଟ୍‌ଛାଣ୍ଟ୍ କରି ସଜେଇ, ବିଭିନ୍ନ ଦିଗରୁ ଅନାଇଁ ଦେଖିବାର ଉଚ୍ଚାଟନ ସେ ଅନୁଭବ କରୁଥାଏ । କେହି କେହି କବି, କବିତାଟି ଛପା ହୋଇସାରିଲାପରେ ମଧ୍ୟ ତାକୁ ସ୍ଥାନେ ସ୍ଥାନେ ନ ବଦଳାଇଲେ ଥୟ ଧରି ରହିପାରନ୍ତି ନାହିଁ ।

ଆଧୁନିକ ଜୀବନ ପ୍ରକୃତିଠାରୁ ଦୂରେଇ ଯାଉଛି ବୋଲି ଏକଦା କୁହାଯାଉଥିଲା । ମାତ୍ର ଉତ୍ତରଆଧୁନିକ ଚେତନା ପ୍ରକୃତି ସହ ନିବିଡ଼ ହେବାକୁ ପୁନର୍ବାର ବ୍ୟାକୁଳ । ଜଗତୀକରଣର, ବୈଷୟିକ ଜ୍ଞାନର ପ୍ରଚୁର ବାଧ୍ୟବାଧକତା ସତ୍ତ୍ୱେ ଏ ଯୁଗର କବିର ସଂରଚନାରେ ପ୍ରକୃତିର ଅବସ୍ଥିତି ବିଜୁଳି ପରି ଝକ୍‌କିନା ଚମକି ଯାଉଛି, ଦିଶିଯାଉଛି, ଏମିତି କିଛି ଅବବୋଧ ଆଣିଦେଉଛି, ଯାହା ଏକାଧାରରେ ତ୍ୱରିତ ଓ ବିପୁଳ ।

କବିତା ପ୍ରତି 'ସରଳ' ବିଶେଷଣଟି ରହସ୍ୟମୟ । ଆଜୀବନ ସାଧନାରତ କବିଗଣ ଏକମତ ହୁଅନ୍ତି ଯେ, 'ଦୁର୍ବୋଧତା' କବି ଓ ପାଠକର ଅନ୍ତର୍ଯୋଗାଯୋଗ ପଥରେ ପ୍ରତିବନ୍ଧକ ରୂପେ ଠିଆହୁଏ । ମାତ୍ର 'ସରଳତା' ଏକ ବିପଜ୍ଜନକ ବ୍ୟାପାର । ଯାହା ମନକୁ ଆସିଗଲା, ଯେଉଁ ଅଶ୍ରୁ ଓ ଆବେଗ ଝରିଗଲା ବା ଅହେତୁକ ବିଭୋରତାରେ ଘାରିହୋଇ ଯାହା ଉଚ୍ଚାରିତ ହୋଇଗଲା, ତାହା 'ସରଳତା' ନୁହେଁ । କାବ୍ୟିକ 'ସରଳତା' ଗଭୀର, ମନନଶୀଳ, ରକ୍ତାକ୍ତ ଏକ ଅବବୋଧ ଏବଂ କାନ୍ଦକାନ୍ଦ ଏକ ଜ୍ୱଳନରୁ ସଂଜାତ । ଏପରିକି, ଏହାର ଉତ୍ସକୁ ନିରୂପଣ କରିବା ମଧ୍ୟ କବିର ସାଧ୍ୟାତୀତ, ତାହାକୁ ପଢ଼ି, ବୁଝି ପାଠକ ବି ଯେଉଁ ଉତ୍ସମୂଳ ନିର୍ଦ୍ଧାରଣ କରିବାକୁ ଆଗେଇଆସେ, ତାହା ଶତକଡ଼ା ଶହେ ଯଥାର୍ଥ ହୋଇ ନ ପାରେ । ଯାହା ହେଲେ ବି କବିତାର ଏଇ 'ସରଳପଣ'

ପାଠକ ସହ କବିର ଅନ୍ତର୍ନିହିତ ଏକତ୍ୱପାଇଁ ଖୁବ୍ ଦରକାରୀ । ତେଣୁ କବିତାର ସରଳତା, ତଥାକଥିତ ସରଳତା ନୁହେଁ, ଏହା ବରଂ ତୀବ୍ର କଳାତ୍ମକ, ଘନ ରହସ୍ୟଯୁକ୍ତ ଏକ ସତ୍ୟୋଦ୍ଘାର । ସେଥିପାଇଁ ସରଳ କବିତା ରଚନା କରିବା କଦାପି ଅନାୟାସସାଧ୍ୟ ନୁହେଁ । ଏହି ସରଳ କବିତା ରଚନା କରିବା ଦିଗରେ କବିର ଅନବରତ ପ୍ରୟାସ ଜାରି ରହୁ, ଏହି ମନୋବାଞ୍ଛା କାବ୍ୟପ୍ରେମୀଗଣ ପୋଷଣ କରିଥା'ନ୍ତି ।

## ଦୀପକ ଅନୁରାଗ

ସେହିଦିନ ପାରାଦ୍ୱୀପଠାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଅନୁଷ୍ଠିତ କେନ୍ଦ୍ରାପଡ଼ା ଓ ଜଗତ୍‌ସିଂହପୁର ଜିଲ୍ଲାର କବିତା ସମାରୋହରେ ସ୍ୱର୍ଗତ ଦୀପକ ମିଶ୍ରଙ୍କ ସଭାପତିତ୍ୱ । ମୁଖ୍ୟ ଅତିଥି ଭାବେ ମୁଁ ତାଙ୍କ ରଚିତ 'ସୁଖ ସଂହିତା'କୁ 'ଶୂନ୍ୟ ସଂହିତା' କହିଥିଲି । ଅବଶ୍ୟ ମଧ୍ୟଯୁଗୀୟ ଏହି ପୁସ୍ତକଟି ନାମକରଣ ଦୃଷ୍ଟିରୁ 'ଶୂନ୍ୟ ସଂହିତା'ର ପାଖାପାଖି । ଇଚ୍ଛା ହେଉଥିଲା, କହିଥା'ନ୍ତି, 'ସୁଖ' ଆଉ 'ଶୂନ୍ୟ' ଏକାକଥା ନୁହେଁ କି ? ନ ହେଲେ, କବିବର ରାଧାନାଥ କାହିଁକି କହନ୍ତେ – ''ସୁଖ ରୂପେ ଯାହା ଜନନେତ୍ରେ ଦିଶେ / ହାତେ ଆସେ ହାତୁଁ ପଡ଼ିବାପାଇଁ ସେ / ବସ୍ତୁ ନୁହଇ ଅଟଇଟି ଧୂମ / ଅନ୍ୟ ନାମ ତା'ର ଆକାଶକୁସୁମ ।'' ଆକାଶ ଆଉ ଶୂନ୍ୟ ଏକ ଏବଂ ଅଭିନ୍ନ ନୁହନ୍ତି କି ? ଭାବିଲି ଥାଉ, ତାଙ୍କୁ ଆଉ ଦିନେ କହିବି । କହିହେଲା ନାହିଁ ।

ଜାନୁଆରୀ ୬ ତାରିଖରେ ପାରାଦ୍ୱୀପଠାରେ 'ଉଦ୍‌ଭାସ' ପ୍ରତି ଉଚ୍ଛଳ ଆନ୍ତରିକତା ଜଣାଇ ଏହାର ଦୀର୍ଘାୟୁଷ କାମନା କରିଥିଲେ ଆପଣ – ଯଦିଓ 'ଉଦ୍‌ଭାସ'ର ଜନ୍ମକାଳରୁ ହିଁ ତା' ପ୍ରତି ଆପଣଙ୍କର ସଦିଚ୍ଛା ରହିଆସିଥିଲା । ଦୀପକବାବୁ ନିହାତି ଆଉ ବର୍ଷେ ବଞ୍ଚି ନ ଥା'ନ୍ତେ । ଏତେ ବ୍ୟଗ୍ର ହେଲେ, ସତରେ କ'ଣ ସେ ରମଣୀର ରମଣୀୟ କୋଳରୁ ଫେରିଗଲେ ? ନୂଆ ଦେହ ଧରି ସେ ଫେରିଆସନ୍ତୁ, ଆମେ ଅନାଇଁ ରହିଛୁ ।

ବସନ୍ତ ଓ ଗ୍ରୀଷ୍ମର ଏଇ ପରସ୍ପର ଭାବଗତ ଦିଆନିଆ ଭିତରେ 'ଉଦ୍‌ଭାସ' ଷଷ୍ଠ ବର୍ଷରେ ପଦାର୍ପଣ କରିଛି । ସମଝଦାର ସାହିତ୍ୟିକଙ୍କୁ ଏହି ଅବସରରେ ଆମର ହାର୍ଦ୍ଦିକ ଅଭିନନ୍ଦନ ।

॥ ସତର ॥

## କବିତାର ସଂପ୍ରେଷଣ

କବିତା ଏକକ ବ୍ୟକ୍ତିର ଆତ୍ମବୃତ୍ତ, ଯାହା ପରବର୍ତ୍ତୀକାଳରେ ନୈର୍ବ୍ୟକ୍ତିକ ରୂପ ପରିଗ୍ରହଣ କରେ । କାବ୍ୟରଚନା କ୍ଷେତ୍ରରେ ବସ୍ତୁ ଯେତିକି ଗୁରୁତ୍ୱପୂର୍ଣ୍ଣ, ବସ୍ତୁଠାରେ ଆରୋପିତ ମନୋଭାବ ତତୋଽଧିକ ଗୁରୁତ୍ୱପୂର୍ଣ୍ଣ ହୋଇପାରେ । ବସ୍ତୁ ଯଦି ମୂର୍ତ୍ତିଟିଏ, ତାହା ଜୀବନ୍ୟାସ ପାଇଲେ 'ଦେବୀ' ପାଲଟିଯାଏ । ଏଠାରେ ଆରୋପିତ ମନୋଭାବ ହିଁ ଜୀବନୀଶକ୍ତି । ଏହି ବିଚାରରେ ବସ୍ତୁର ଗୋଟିଏ 'ଇନ୍ଦ୍ରିୟଗୋଚର' ଗୁଣ ଓ ଅପରଟି 'ଭାବଗମ୍ୟଗୁଣ' ରୂପେ ସ୍ୱୀକୃତ । ଏହି ଦୁଇଗୋଟି ଗୁଣର ସମ୍ମିଳିତ ଅଭିବ୍ୟକ୍ତି ହେଉଛି କବିତା ଓ ଏଥିରେ ଭାଷା ଭିନ୍ନ ରୂପ ନେବା, ଭିନ୍ନ 'ବିଧା'କୁ ଆଶ୍ରୟ କରିବା ଅବଶ୍ୟମ୍ଭାବୀ ହୋଇଥାଏ । ମୁଖ୍ୟ ଚିନ୍ତନକୁ ସାର୍ଥକତା ସହ ସଂପ୍ରେଷଣ କରାଯିବା କ୍ଷେତ୍ରରେ, କେତେକ କହନ୍ତି, ଅଭିବ୍ୟକ୍ତିଠାରୁ ସଂପ୍ରେଷଣ ପ୍ରତି ଅଧିକତର ଧ୍ୟାନଶୀଳ ହେବା କବି ପକ୍ଷରେ ଜରୁରୀ । ମାତ୍ର, ସଫଳ କବିତା କ୍ଷେତ୍ରରେ ଉଭୟେ ଯେ ଗୁରୁତ୍ୱପୂର୍ଣ୍ଣ, ଏହା କବିମାତ୍ରେ ଅବଗତ ଥାଆନ୍ତି । ତେବେ, କାବ୍ୟର ସଂପ୍ରେଷଣ (ପାଠକ ନିକଟରେ ପହଞ୍ଚିବା, ପାଠକ ସହ ଆଳାପରେ ମଜ୍ଜିଯିବା)କୁ ଏକମାତ୍ର ପ୍ରାଧାନ୍ୟ ଦେଲେ ବେଳେ ବେଳେ କାବ୍ୟକଳା ନିର୍ବସ୍ତ୍ର ହୋଇଯାଏ । ଏ ଦିଗରେ ଉଦ୍ୟମ କରି କେତେକ ଭାଷାରେ 'ପୋଷ୍ଟର କବିତା' ମଧ୍ୟ ରଚନା କରାଯାଇଛି । କିନ୍ତୁ ସମୟର କଷଟିରେ ତାହାର ପାରଙ୍ଗମପଣ ଉତ୍ତୀର୍ଣ୍ଣ ହୋଇପାରି ନାହିଁ । କାରଣ କଳାନିମିତ୍ତ ଅଭିବ୍ୟକ୍ତିର ସତେଜତା ବା କହିବାର ନୂତନ ବାଗ ମଧ୍ୟ ଅପରିହାର୍ଯ୍ୟ । କହିବାର ପୁରୁଣା 'ବାଗ'କୁ ନେଇ ଆଜିର କବିତା ସଂପ୍ରେଷିତ ହୋଇପାରିବ ନାହିଁ । ପୁରୁଣା ଶଗଡ଼ଗୁଳାରେ ଚାଲିବା ଆଜି ଯେତେବେଳେ ଜୀବନକ୍ଷେତ୍ରରେ ଗ୍ରହଣୀୟ ନୁହେଁ, କଳାସୃଷ୍ଟି କ୍ଷେତ୍ରରେ ଏହା ଗ୍ରହଣଯୋଗ୍ୟ ହେବ କିପରି ? ତେଣୁ ସଂପ୍ରେଷଣ ଓ କଳାତ୍ମକତା ଉଭୟେ ଗୁରୁତ୍ୱପୂର୍ଣ୍ଣ । ସୃଜନ ଭାବାବେଗ ହୋଇଥିବ କଳାତ୍ମକ ଓ ସର୍ଜକ କହିବାର ବାଗକୁ ଆୟତ୍ତ କରିବାରେ ଶକ୍ତିଶାଳୀ ହୋଇଥିବ, ତେବେ ହିଁ କବିତା ସୁସଂପ୍ରେଷିତ ହେବାର ଯୋଗ୍ୟତା ଅର୍ଜନ କରିବ । ଅନ୍ୟ ପକ୍ଷରେ, କଳା ଯଦି ସଂପ୍ରେଷିତ ନ ହେଲା, କଳାକାରର ଅଭିବ୍ୟକ୍ତି ଯଦି ପାଠକଠାରେ ନ ପହଞ୍ଚିଲା, ତେବେ କଳାର ଅର୍ଥ କ'ଣ ? ଜଙ୍ଗଲ ଭିତରେ ମୟୂରଟିର ନୃତ୍ୟ ସବୁଠାରୁ ସୁନ୍ଦର, ତା'ର

ପରିବେଶ ଓ ଏକାନ୍ତତା ଅତ୍ୟନ୍ତ ମନୋହର । କିନ୍ତୁ ସେ ନୃତ୍ୟ ଯଦି କାହାରି ଆଖିରେ ନ ପଡ଼େ ? କେହି ବି ଜଣେ ଦେଖଣାହାରି ନ ରହିଲେ, ସେ ନୃତ୍ୟର କି ମୂଲ୍ୟ ବା ରହିଲା ? ସେ ସୌନ୍ଦର୍ଯ୍ୟ ଜନମାନସଠାରେ ଅପ୍ରୟୋଜନୀୟ ହୋଇପଡ଼ିଲା ନାହିଁକି ? ମୟୂରର ମୁଗ୍ଧକର ନୃତ୍ୟ ଐଶ୍ୱର୍ଯ୍ୟମଣ୍ଡିତ ହୋଇପାରେ, କେବଳ କୌଣସି ସୌନ୍ଦର୍ଯ୍ୟପିପାସୁର ଦୃଷ୍ଟିପଥାରୂଢ଼ ହେଲେ । ଏହିଠାରେ ହିଁ ସୌନ୍ଦର୍ଯ୍ୟପିପାସୁ ପାଠକର କଥା ଉଠେ । ପାଠକର ଅଭ୍ୟନ୍ତରକୁ ସ୍ପର୍ଶ କଲେ ହିଁ କବିତାର ସୌନ୍ଦର୍ଯ୍ୟ ଓ ଶକ୍ତି ନିଷ୍ପନ୍ନ ହୋଇଥାଏ । ସେଥିପାଇଁ ସଂପ୍ରେଷଣ ହିଁ ପାଠକ ସହ କବିତାର କଥାବାର୍ତ୍ତା – କବିତା ପାଠକ ସହ କଥାହେବା ନିତାନ୍ତ ଜରୁରୀ । ସଂପ୍ରେଷିତ ହୋଇପାରିଲେ ହିଁ ସାଂସ୍କୃତିକ କର୍ମର ପ୍ରୟୋଜନୀୟତା ପ୍ରତିପାଦିତ ହୋଇଥାଏ ।

କବିମାନେ ସରଳ, କଥିତ ଭାଷାରେ କବିତା ଲେଖନ୍ତି । ହୋଇପାରେ, ସନ୍ଥ କବୀର ଓ ସନ୍ଥ ଭୀମଭୋଇ ଉଚ୍ଚ ଶିକ୍ଷାପ୍ରାପ୍ତ ହୋଇ ନ ଥିଲେ, ତେଣୁ କଥିତବିଧାକୁ ସେମାନେ ଗ୍ରହଣ କଲେ । ମାତ୍ର ତୁଳସୀଦାସ, ମୀର୍ଜା ଗାଲିବ, ସାରଳା ଦାସ ଆଦି କବିଗଣ ବହୁ ଭାଷାରେ ପାଣ୍ଡିତ୍ୟ ଲାଭ କରିଥିଲେ । ସେମାନେ ମଧ୍ୟ କଥିତ ଭାଷାରେ କବିତା ଲେଖିଲେ । ଏହାର ପୃଷ୍ଠପଟରେ ସ୍ୱକଳାକୃତିକୁ ସଂପ୍ରେଷିତ କରିବାର ଇଚ୍ଛା, ସାଧାରଣ ପାଠକଙ୍କୁ ସ୍ପର୍ଶ କରିବାର ପ୍ରୟାସ ନିହିତ ରହି ନାହିଁ କି ? ଅଭିବ୍ୟକ୍ତି ସହଜ, ସରଳ ହୋଇଥିଲେ ସଂପ୍ରେଷଣ ସହଜ ହୋଇଥାଏ । କାବ୍ୟିକ ସରଳତା ସମ୍ପର୍କରେ ଗତସଂଖ୍ୟା 'ଉଦ୍‌ଭାସ'ର ସମ୍ପାଦକୀୟରେ ସୂଚନା ପ୍ରଦାନ କରାଯାଇଥିଲା । ତେବେ କାବ୍ୟିକ ସରଳତା କାବ୍ୟକୃତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ସହ କଳାକୃତିର ସମାଜଧର୍ମିତାକୁ ରକ୍ଷା କରିଥାଏ । ସଂପ୍ରେଷଣ ଏପରି ଏକ କବିକଳ୍ପ ଯାହା କବିକୁ ପାଠକଠାରେ ପହଞ୍ଚାଇବାରେ କ୍ରିୟାଶୀଳ ଭୂମିକା ଗ୍ରହଣ କରେ । ଭାବ ଉପାଦାନ ସହ ଅଦ୍ଭୁତ ବର୍ଣ୍ଣନକଳାର ଆନୁପାତିକ ସମନ୍ୱୟରେ ପାଠକ ସହ କବିତାର ଅନ୍ତରଙ୍ଗ ଆଳାପ ସମ୍ଭବ ହୋଇଥାଏ ।

## ମିଥିକ୍ ଉପଯୋଗ

ସଂସ୍କାର ହେତୁ ଆମ ଚେତନଜଗତରେ ଅନେକ କିଛି ଗ୍ରହଣ କରିନେବାର ପୂର୍ବ ପ୍ରସ୍ତୁତି ରହିଛି । କାବ୍ୟ ଅବବୋଧ କ୍ଷେତ୍ରରେ ପରମ୍ପରା ଆମକୁ ଯଥେଷ୍ଟ ସାହାଯ୍ୟ କରିଛି । ଗତ ଶତାବ୍ଦୀର ଶେଷ ତିନି, ଚାରି ଗୋଟି ଦଶକରେ

ବୁଦ୍ଧିଜୀବୀ ତଥା କଳାକାରମାନଙ୍କ ଚେତନାରେ ବିପ୍ଳବ ଆଣିଥିବା ନୂତନ ସଚେତନତାକୁ ବିଚାରକୁ ନିଆଯାଉ । ଏଥିରୁ ପ୍ରମୁଖଟି ହେଉଛି ପରିବେଶ ସଚେତନତା । ଏହାର ପ୍ରଭାବ ବର୍ତ୍ତମାନ ସୁଦ୍ଧା ଅଧିକରୁ ଅଧିକ ପ୍ରାସଙ୍ଗିକ ହୋଇଚାଲିଛି । ଶିଳ୍ପାୟନ ହେତୁ ପରିବେଶ ପ୍ରଦୂଷଣ ସମସ୍ୟା ସହ କବିଚେତନା ଜଡ଼ିତ ହୋଇଯିବା ସ୍ୱାଭାବିକ । ପୁଣି ଏକବିଂଶ ଶତକର ଅବ୍ୟବହିତ ପୂର୍ବରୁ ଭାରତୀୟ ଚେତନା ଜଗତକୁ ଆଚ୍ଛନ୍ନ କରିଛି ଜଗତୀକରଣର ପ୍ରଭାବ । ଏଥିରେ ସ୍ଥାନୀୟତାକୁ, ଏକକ ଜୀବନର ସ୍ୱପ୍ନକୁ ଗୁରୁତ୍ୱ ଦିଆଯାଉ ନାହିଁ । ଏହାସତ୍ତ୍ୱେ ଚିରନ୍ତନ ଉପାଦାନ ଭାବେ ଅପ୍ରତିହତ ରହିଛି ମାନବିକ ସମ୍ବେଦନା ଓ ଏକକସ୍ୱପ୍ନର ଅପରିହାର୍ଯ୍ୟତା । କାବ୍ୟକବିତା କ୍ଷେତ୍ରରେ ଉପରୋକ୍ତ ଚିରନ୍ତନ ଉପାଦାନ ମଧ୍ୟରେ ବଞ୍ଚିରହିଛି ଆମର ପରମ୍ପରା ଓ ସଂସ୍କୃତିର ମୂଳପିଣ୍ଡ । ରାମାୟଣ, ମହାଭାରତ, ଭଗବଦ୍‌ଗୀତା, ଭାଗବତ, ବୌଦ୍ଧ ଶାସ୍ତ୍ର ଆଦି ଆମ ସ୍ମୃତି ଓ ଚେତନାର ଅଂଶ ହୋଇ ରହିଛି । ଏଥି ସହ ଭାଷା ଓ ଲୟ ମଧ୍ୟ ଲୟିଆସିଛି – ଚଳମାନ ରହିଛି । ଏ ଯୁଗର କବିମାନେ ପୁରାଣ ଦିଗକୁ ଯାଇ ନୂତନ ସାଂସ୍କୃତିକ ଶକ୍ତି ଓ ପ୍ରେରଣା ଖୋଜୁଛନ୍ତି ।

ମିଥ୍‌କୁ ପୁନଃରଚିତ କରିବାକୁ ଯାଇ ଏହି କବିଗଣ ମିଥ୍ ପାଖରୁ ରାଜନୀତିକ, ସାଂସ୍କୃତିକ, ଐତିହାସିକ ପ୍ରେରଣା ଲୋଡ଼ୁଛନ୍ତି । ଶକ୍ତିଶାଳୀ କବି ମିଥ୍‌ ଉପାଦାନ ସହ ତା' ନିଜର କହିବାର ବାଗ ମଧ୍ୟ ଖୋଜୁଛି । ପ୍ରକୃତରେ ପରମ୍ପରା ହେଉଛି ସେହି ସମକାଳ, ଯାହା ମାନବ ସଭ୍ୟତାର ସଂଘର୍ଷପୂର୍ଣ୍ଣ ଐତିହାସିକତାକୁ ନେଇ କବିଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ରହିଛି । ଏହିରୂପେ ପରମ୍ପରା ଏ ଯୁଗର କବିର ପୂର୍ବପ୍ରଜନ୍ମଠାରେ ଉପସ୍ଥିତ ରହିଥିଲା ଏବଂ ପରବର୍ତ୍ତୀ ପ୍ରଜନ୍ମଠାରେ ମଧ୍ୟ ଉପସ୍ଥିତ ରହିଥିବ । କବିକୁ ତା' ନିଜ ସମୟ ସହ ଯୋଡ଼ି ଦେବ । ଏହି ସଂଯୋଗ ଚିରଦିନର, କୌଣସିମତେ ତାତ୍କାଳିକ ନୁହେଁ ।

ବର୍ତ୍ତମାନ କାଳରେ ଲୋକଚଳଣି, ବିଶ୍ୱାସ ଓ ଚାହିଦା ବଦଳିଛି । ଘଟଣା ରୂପାନ୍ତରିତ ହୋଇଛି । ମିଥ୍‌ର ସତ୍ୟ ଆଜି ପ୍ରତୀକାତ୍ମକ ସତ୍ୟଭାବେ ଆତ୍ମପ୍ରକାଶ କରୁଛି । କାରଣ ସମକାଳର ପ୍ରାସଙ୍ଗିକତାକୁ ମୁଖ୍ୟ ସ୍ଥାନ ଦେବା ଜରୁରୀ ହୋଇପଡ଼ିଛି । ଆଜି ଯଦି ରାମାୟଣର ଚରିତ୍ର 'ଶବରୀ' ଶ୍ରୀରାମଙ୍କୁ ଦର୍ଶନ କରିବାପରେ ଅଗ୍ନିରେ ଶରୀର ବିସର୍ଜନ ଦେଇ ମୋକ୍ଷପ୍ରାପ୍ତି ନିମନ୍ତେ ସ୍ୱର୍ଗଲୋକରେ ଉପନୀତ ହୁଅନ୍ତେ, ତାହା ପ୍ରାସଙ୍ଗିକ ଓ ପ୍ରଭାବଶାଳୀ

ହୋଇପାରନ୍ତା ନାହିଁ । ବରଂ ଶବରୀ ଭାଗ୍ୟପୀଡ଼ିତ ଶ୍ରୀରାମଙ୍କୁ ଦେଖି ନିଜେ ମୋକ୍ଷ ପ୍ରତି ବୀତସ୍ପୃହ ହେବା ସ୍ୱାଭାବିକ ହୁଅନ୍ତା । ସମଗ୍ର ମାନବ ଜାତିର ଅଶ୍ରୁମୁଞ୍ଜନ ନିମନ୍ତେ ଶବରୀ ନିଜକୁ ପ୍ରସ୍ତୁତ କରିପାରନ୍ତେ, ନିଜେ ସେଥିପାଇଁ ସକଳ ପାର୍ଥିବ ଦୁଃଖକୁ ଅଙ୍ଗେ ନିଭେଇ ବଞ୍ଚି ରହିବାର ସଙ୍କଳ୍ପ ନେଇପାରନ୍ତେ । ନିଜ ସ୍ଥିତିର ଯୁକ୍ତିଯୁକ୍ତତାକୁ ସାମୂହିକ ମାନବୀୟ ଆଶ୍ୱାସନା ମଧ୍ୟରେ ପ୍ରତ୍ୟକ୍ଷ କରିପାରନ୍ତେ ।

ବର୍ତ୍ତମାନ କାଳରେ ସମ୍ପୂର୍ଣ୍ଣ ମିଥ୍ ଅବଲମ୍ବୀ କାବ୍ୟକବିତା ଯେତେ ଲେଖାଯାଉଛି, ତା' ଅପେକ୍ଷା ଅଧିକ ସଂଖ୍ୟାରେ ଆଂଶିକ ମିଥ୍‌ଆଶ୍ରୟୀ କବିତାମାନ ରଚନା କରାଯାଉଛି । ଏହି ଶ୍ରେଣୀର କବିତାମାନଙ୍କ ପଙ୍‌କ୍ତିଗୁଡ଼ିକ ମଧ୍ୟକୁ ଗଭୀର ମାର୍ମିକତା ନେଇ ମିଥ୍‌ର ସଂକ୍ଷିପ୍ତ ଅଂଶ ବିଜୁଳି ପରି ପଶିଆସୁଛି ଓ କବିତାକୁ ଅଧିକ ସ୍ପର୍ଶକ୍ଷମ କରାଉଛି । ଯାହାହେଲେ ବି ପୁରାଣର ଏହି ପୁନଃ ରଚନା ବଡ଼ କଷ୍ଟକର । ଏହି ପ୍ରକାର ବାର୍ତ୍ତାଳାପ ନିମିତ୍ତ କବିକୁ ଭାବ ଓ ବାଗ ମଧ୍ୟରେ ସମନ୍ୱୟ ରକ୍ଷା କରିବାକୁ ହୋଇଥାଏ । ଭାବ ଉପାଦାନ ସହ ଶକ୍ତିଶାଳୀ ବର୍ଣ୍ଣନକଳା ସଂଯୁକ୍ତ ହେଲେ ହିଁ ଏକ ଜର୍ଜରିତ ଅବସ୍ଥାରେ ସାମୂହିକ ସ୍ୱପ୍ନର ରୂପକଳ୍ପ ବାଙ୍‌ମୟ ହୋଇପାରେ । କୁହାଯାଇଥିବା ବା କୁହାଯାଉଥିବା ବାଗରେ ନ କହି କବି ତା' ନିଜର ଏକକ ବର୍ଣ୍ଣନକଳା ଗ୍ରହଣ କରିବା ଚାହି । ମିଥିକ୍ କବିତାଦ୍ୱାରା ଲୋକଚେତନାରେ ସ୍ଥାପିତ ପୂର୍ବ ରଚିତ ଚିତ୍ରମୂର୍ତ୍ତିକୁ ଲିଭାଇ ନୂତନ ଭାବମୂର୍ତ୍ତିଟିଏ ତିଆରି କରିବାକୁ ହୋଇଥାଏ । ଏହା ସହଜକର୍ମ ନୁହେଁ । ଏଥିନିମିତ୍ତ ଉଜ୍ୱଳ ଓ ସ୍ପନ୍ଦିତ ଏକ ନୂଆ ଆଳାପର ବାଗ ଆବଶ୍ୟକ । ଏହି ବାଗ ଖୋଜିପାଇବା ନିମିତ୍ତ କବିର ଗଭୀର ଆତ୍ମଅନ୍ୱେଷଣ, ଆତ୍ମସଂଯୋଗ ଓ ତଲ୍ଲୀନତା ସଂଜାତ ଆତ୍ମସମର୍ପଣ ଅପରିହାର୍ଯ୍ୟ ହୋଇପଡ଼େ । ଯେଉଁ ସଫଳ ସଂପ୍ରେଷଣ କଥା ମୂଳରୁ କୁହାଯାଇଛି – ମିଥିକ୍ ଉପଯୋଗ ଏହି ସଫଳତା ନିମିତ୍ତ ଏକ ମାର୍ଗ ।

ପାର୍ବଣୀଦେବୀଙ୍କ ଆବାହନ ସଙ୍ଗୀତରେ ଚତୁର୍ଦ୍ଦିଗ ମୁଖର । ଏହି ଅବସରରେ ସାରା ବିଶ୍ୱର ମଙ୍ଗଳ ନିମିତ୍ତ ଦେବୀଙ୍କଠାରେ ପ୍ରାର୍ଥନା ଜଣାଇବା ସହ, ଉଦ୍‌ଭାସ ତା'ର ପାଠକପାଠିକା ଓ ଶୁଭେଚ୍ଛୁବର୍ଗଙ୍କୁ ଆନ୍ତରିକ ଅଭିନନ୍ଦନ ଜଣାଉଛି ।

॥ ଅଠର/ଉଣେଇଶ ॥

## କବିତା : ସୁନ୍ଦର, ଅଭୀପ୍ସାମୟ

କବିତା ସୁନ୍ଦର ହେବ, ହେବ ପୁଣି ଅଭୀପ୍ସାମୟ । କବିତାର ସୌନ୍ଦର୍ଯ୍ୟ ମଧୁର ଓ ଆନନ୍ଦଦାୟକ ହେବା ନିମିତ୍ତ ଉଦ୍ଦିଷ୍ଟ । ତାହା ସାନ୍ଦ୍ର ହେବା ବାଞ୍ଛନୀୟ । ଏହା ସତ୍ତ୍ୱେ କଳାସୃଷ୍ଟି ଏକ ଉଚ୍ଚତର ମହତ୍ ଅନୁଭବକୁ ଉଦ୍‌ବୁଦ୍ଧ କରିବା ନିମିତ୍ତ ଅଭିପ୍ରେତ । ଉପରୋକ୍ତ ଦୁଇଟିଯାକ ଗୁଣ କବିତା ମଧ୍ୟରେ ଏପରି ଗ୍ରଥିତ ହୋଇଥାଏ ଯେ, ଏପରି ପରସ୍ପର ସଂଲଗ୍ନ ଯେ, ଗୋଟିଏ ଅନ୍ୟଟିଠାରୁ ପୃଥକ୍ କରିବା ପ୍ରାୟ ସମ୍ଭବ ନୁହେଁ । ଉତ୍ତୀର୍ଣ୍ଣ କବିତା ସାଧାରଣ ଅସ୍ତିତ୍ୱକୁ ମୁଖ୍ୟ ବୋଲି ବିଚାରେ ନାହିଁ । ଏହି ପ୍ରଚଣ୍ଡ ଶକ୍ତିଶାଳୀ ଉତ୍ତୀର୍ଣ୍ଣ ଚେତନା ସତେକି ଏକ ଶୃଙ୍ଗ ଉପରେ ଠିଆହୋଇ ଗଭୀର, ସଂକୀର୍ଣ୍ଣ ଗର୍ତ୍ତକୁ ଅନାଏଁ । ଏହି ଅଭିଜ୍ଞତା ସହ ଉନ୍ନତ ରୁଚିସମ୍ପନ୍ନ କବିର ସାକ୍ଷାତ୍ ହୋଇଥାଏ । ଗୋଟିଏ ଅଭୀପ୍ସାମୟ କଳାକୃତିର ଦିଗନ୍ତ ସମ୍ଭବତଃ ଆପେକ୍ଷିକ ଗୁରୁତ୍ୱାନୁସାରେ ବିବେଚିତ ହୁଏ । କେତେକ କବି ଓ କଳାକାର କହନ୍ତି – ଯନ୍ତ୍ରଣା ନ ଥିଲେ କଳାକୃତି ନାହିଁ, ନାହିଁ କବିତା, ସଙ୍ଗୀତ ଓ ଚିତ୍ର । ଯନ୍ତ୍ରଣାକୁ ଉପଜୀବ୍ୟ କରି କଳାକୃତି ପରିପୁଷ୍ଟ ହୁଏ । କଳାକୃତି ଶରୀର ସହ ଗ୍ରଥିତ ହୋଇଥାଏ । ଶରୀରର ଭୂମି ଉପରେ ହିଁ ଭାବଚେତନାର ସ୍ଫୁରଣ ଘଟେ । କଳାକୃତିର ଉଦ୍‌ବୋଧକ ଭୟ ଓ ମୃତ୍ୟୁ ଶରୀରକୁ ନେଇ ନିଷ୍ପନ୍ନ ହୋଇଥାଏ । ଭୟ ଓ ମୃତ୍ୟୁ ଏପରି କିଛି ଦୁଃଖଦ, ନୂତନ ଘଟଣା ନୁହେଁ – ସମ୍ପୂର୍ଣ୍ଣଭାବେ ଯୁକ୍ତିଯୁକ୍ତ ଓ ଏଥିରେ ଏକ କଳାତ୍ମକ ପ୍ରେରଣାଶକ୍ତି ନିହିତ ଥାଏ ।

## ଉତ୍ତୀର୍ଣ୍ଣ ଅଭିଜ୍ଞତା ଓ ସାଧାରଣ ସାଧନଭାଷା

କବିର ଉତ୍ତୀର୍ଣ୍ଣ ଅନୁଭବର ପରିପ୍ରକାଶ ଦିଗରେ ପ୍ରତିବନ୍ଧକ ରହିଛି । ଭାଷା ହିଁ ମୁଖ୍ୟ ପ୍ରତିବନ୍ଧକ । ଏଠାରେ କବିର ଅଭିଜ୍ଞତା ଶବ୍ଦଗତ ହୋଇପାରେ ନାହିଁ । ସେଥିପାଇଁ ଉନ୍ନତ ଚେତନାଶକ୍ତିସମ୍ପନ୍ନ, ଉପଲବ୍ଧିଶୀଳ ବ୍ୟକ୍ତି ମୌନ ରହେ । ସେ ଅଭ୍ୟନ୍ତରର ସତ୍ୟ ଜାଣେ ଓ ଚୁପ୍ ରହିବାକୁ ପସନ୍ଦ କରେ । ସେ ଜାଣେ ଆପଣାକୁ ବ୍ୟକ୍ତ କରିବାକୁ ସେ ଅସମର୍ଥ । ଯଦି ସେ ବ୍ୟକ୍ତ କରେ, ତାହା ସାଧାରଣ-ମାନସକୁ ଉପଯୁକ୍ତ, ତୀବ୍ର ସ୍ପର୍ଶ ଦେଇପାରେ ନାହିଁ । କାରଣ ଯଥାର୍ଥ, ସାନ୍ଦ୍ର, ଅଭିଜ୍ଞତାର ସଚେତନ ଅଭିବ୍ୟକ୍ତି ଭାଷା ମାଧ୍ୟମରେ ରୂପ ପରିଗ୍ରହଣ କରିପାରେ ନାହିଁ ।

ଏତିକିବେଳେ ଉପଯୁକ୍ତ ଶବ୍ଦଚୟନ ବା ନବଗଠନର ଆବଶ୍ୟକତା ଅନୁଭୂତ ହୁଏ । ସେଥିପାଇଁ ଅବ୍ୟକ୍ତ, ବୁଝିହେଉ ନ ଥିବା ଜଟିଳତାକୁ ଆମେ 'ଲୀଳା' ବୋଲି ନାମକରଣ କରୁ । ଦାର୍ଶନିକ ଆରିଷ୍ଟଟଲ୍, ସନ୍ଥକବି କବୀର ମଧ୍ୟ ଏହି ଦ୍ୱନ୍ଦ୍ୱାତ୍ମକ ବକ୍ତବ୍ୟର କବଳରେ ପଡ଼ିଥିଲେ । ସେମାନଙ୍କ ଅନ୍ତର୍ଗତ ଅନୁଭବ ସାଧାରଣ ଅନୁଭବଠାରୁ ଏତେ ଭିନ୍ନ ଯେ, ଭାଷାବିଜ୍ଞାନର ନିୟମ ସେଠାରେ ଲାଗୁ ହୁଏ ନାହିଁ । ଉତ୍ତୀର୍ଣ୍ଣ ଅନୁଭବ ସାଧାରଣ ଭାଷାରେ ବ୍ୟକ୍ତ ହେଲେ ଏହାର ବିପୁଳତା ଠିକ୍ ଭାବରେ ଉପସ୍ଥାପିତ ହେବାରେ ପ୍ରମାଦ ରହିଛି । କବିର ଉପଲବ୍ଧିଜଗତ ସର୍ବଦା ଭାଷାର ଅଯଥେଷ୍ଟପଣର ସମ୍ମୁଖୀନ ହୋଇଥାଏ । ସେଦିନ କବି ଓ ଯୋଗୀ ଶ୍ରୀଅରବିନ୍ଦ କହିଥିଲେ – "All things infact begins to change their nature and their appearance: One's whole experience of the world is radically different. There is a new, vast and deep way of experiencing, seeing, knowing, contacting." ପ୍ରକୃତପକ୍ଷେ ସବୁ କିଛି ବସ୍ତୁ ବା ଭାବ ନିଜର ସ୍ୱଭାବ ଓ ଚେହେରା ପରିବର୍ତ୍ତନ କରିବାକୁ ଆରମ୍ଭ କରେ । ସେଥିପାଇଁ ଜଣେ ବ୍ୟକ୍ତିର ସମଗ୍ର ପାର୍ଥିବ ଅଭିଜ୍ଞତା ମୂଳତଃ ଅନ୍ୟଠାରୁ ଭିନ୍ନ ହୁଏ । ପ୍ରତ୍ୟେକର ଏକ ନୂତନ, ବିପୁଳ ଓ ଗଭୀର ମାର୍ଗ ରହିଛି, ଯେଉଁ ମାର୍ଗ ଜରିଆରେ ସେ ଏହି ବିଶ୍ୱକୁ ଦେଖେ, ଜାଣେ, ଅଭିଜ୍ଞତାରେ ଆଣେ ଓ ତାହା ସହ ସଂଯୁକ୍ତ ହୁଏ ।

କବି ଭୀମଭୋଇ ଏକ ଅଦ୍ଭୁତ ନୂତନ ମାର୍ଗରେ ସାକ୍ଷାତ୍ କରିଥିଲେ ଶୂନ୍ୟଦେହୀଙ୍କୁ । କହିଲେ – 'ରୂପରେଖ ନାହିଁ ହେ ଶୂନ୍ୟଦେହୀ, ଅଛି ଉଦେ ହୋଇ ।' ତେଣୁ ଉତ୍ତୀର୍ଣ୍ଣ ଅନୁଭବ ଅନେକ ମାତ୍ରାରେ ରହସ୍ୟର ପାଖାପାଖି । ସମ୍ପୂର୍ଣ୍ଣ ରହସ୍ୟଘନ ହେଲେ ତ କବି ଆଉ ରଚନା କରନ୍ତା ନାହିଁ । ମାତ୍ର ସେହି ଆଂଶିକ ରହସ୍ୟ, ଜୀବନର ବୃହତ୍ତମ ସତ୍ୟକୁ ଘେରି ରହିଥିଲେ ବି ମଧ୍ୟେ ମଧ୍ୟେ ଅପସରି ଯାଉଥାଏ ଓ କବିକୁ ସତ୍ୟର ଝଲକ ଦେଖାଇ ଦେଉଥାଏ । ତେଣୁ କବି ଗଭୀର ଉପଲବ୍ଧିର ଉଚ୍ଚାରଣପାଇଁ ଯଥେଷ୍ଟ ଭାଷା ନ ପାଇ 'ଶୂନ୍ୟଦେହୀ'ଙ୍କୁ ଦର୍ଶନ କଲାଭଳି ମୁହ୍ୟମାନ ହୋଇପଡ଼େ । ଏପ୍ରକାର ଦ୍ୱନ୍ଦ୍ୱାତ୍ମକ ଅଭିବ୍ୟକ୍ତିପାଇଁ ବା ଗୂଢ଼ାର୍ଥ ରଖି କଥା କହିବାପାଇଁ କବି ଭାଷାକୁ ନୂଆ କରି ଗଢ଼େ ଓ ବେଳେବେଳେ ପୁରାକଳ୍ପର ଉପାଦାନକୁ ନୂତନ ଭାବେ ଅର୍ଥାନ୍ୱିତ କରେ । ଯା' ବ୍ୟତୀତ ନିଜକୁ ବ୍ୟକ୍ତ କରିବାର ଅନ୍ୟ ଉପାୟ ନ ଥାଏ ।

ନୂତନ ବର୍ଷ ୨୦୦୯ ପାଇଁ ଉଦ୍‌ଭାସ ତା'ର ପାଠକପାଠିକା ଓ ଶୁଭେଚ୍ଛୁବର୍ଗଙ୍କୁ ପ୍ରାକ୍‌ବସନ୍ତର ଅଭିନନ୍ଦନ ଓ ଶୁଭକାମନା ଜଣାଉଛି ।

॥ କୋଡ଼ିଏ/ଏକୋଇଶ ॥

## ସତ୍ୟ ଓ ସଂରଚନା

କବିତା ସତ୍ୟ ପ୍ରକଟ କରେ । ସେ ସତ୍ୟର ସ୍ୱରୂପ କେଉଁ ପରି ? ଯାହା ଘଟିଲା, କବି ଯାହା ଦେଖିଲା, ସେୟା ? ନା, କବିତାର ସତ୍ୟ ଠିକ୍ ଏଇଆ ନୁହେଁ । କବିତାର ସତ୍ୟର ସ୍ୱରୂପ ଭିନ୍ନ । ତାହା ପୁଣି କାବ୍ୟଭାଷା ମାଧ୍ୟମରେ ପ୍ରକଟିତ ହୁଏ । ସାଧାରଣ କଥାବାର୍ତ୍ତାଠାରୁ, ଖବରକାଗଜର ସମ୍ବାଦଠାରୁ, ଦୋକାନବଜାର ଭାଷାଠାରୁ କାବ୍ୟଭାଷା ପୃଥକ୍ ହୋଇଥାଏ । ଏଥିରେ କବିତାର ବକ୍ତବ୍ୟର ଏକ ବିଶେଷ ଇଙ୍ଗିତ ରହିଥାଏ – ଯାହା ତତ୍କାଳରେ ସରିଯାଏ ନାହିଁ । ପାଠକକୁ ଏକ ବୃହତ୍ତର ଇଙ୍ଗିତ ଦିଏ – ତା' ହୃଦୟରେ ଲିପିବଦ୍ଧ ହୋଇଯାଏ । ପ୍ରକୃତପକ୍ଷେ, କବିତା ସତ୍ୟକୁ ଗୋପନ ରଖେ ଓ ତାହାକୁ ଆବିଷ୍କାର କରିବା ନିମିତ୍ତ ପାଠକକୁ ଉତ୍ସାହିତ କରେ । ସେହି ଗୋପନତାପାଇଁ ଚିତ୍ରକଳ୍ପ, ପ୍ରତୀକ, ରୂପକ, ଆଦିରୂପ ଅନ୍ୟ ଅର୍ଥରେ 'ବକ୍ରୋକ୍ତି' ଲୋଡ଼ା ହୁଏ । କବିତାର ସତ୍ୟ ଏକ ରୂପାନ୍ତରିତ ସତ୍ୟ, ଯାହା ବାସ୍ତବ ଜଗତର ସତ୍ୟଠାରୁ ଅଧିକ ଶକ୍ତିଶାଳୀ, ଅପରାଜେୟ ଓ ଆୟୁଷ୍ମାନ୍ ।

କବି ହୁଏତ ବନ୍ଦ ଘର ଭିତରେ ନିରୋଳାରେ କବିତାକୁ ଅଣ୍ଡାଳେ । ପାଏ ପୁଣି ପାଏ ନାହିଁ । ନୀରବତା ଭିତରେ ଉଦିତ ଶବ୍ଦଗୁଡ଼ିକ ଭାବଚିତ୍ରକୁ ସାକାର କଲାବେଳକୁ, ତାହା ବେଳେ ବେଳେ କବିର ମନୋମତ ହୋଇପାରେ ନାହିଁ । ଆଖିରୁ ନିଦ ହଜିଯାଏ । କୋଉ କବି ଅନିଦ୍ରାରେ ଧୂନ୍ଦାଳି ହେବାରୁ ରକ୍ଷା ପାଇପାରିଛି ? ସେହି ଅନ୍ଧାର, ନୀରବତା, କୋଠରି ଭିତରେ ବନ୍ଦ ଅସ୍ତିତ୍ୱକୁ କବି ଭଲପାଏ । ସେତିକିବେଳତକ ଭୁଲିଯାଏ ଯେ, ତା' ବାହାରେ ଏ ପୃଥ୍ୱୀ ଚିରାଚରିତ ରୀତିରେ ଚାଲିଛି । ସବୁଠାରୁ, ସମସ୍ତଙ୍କଠାରୁ ସମୟ ଚୋରେଇ ନେଇ ସେ କବିତାରେ ମଗ୍ନ ହୋଇଯିବାକୁ ଚାହେଁ । ତଥାପି ଏ ଦିଗରେ କବିର ଦାରୁଣ ଅସହାୟତା ରହିଛି । ଅବଶ୍ୟ ଏହା ଏକ ଭିନ୍ନ ପ୍ରସଙ୍ଗ ।

କବିତାରେ ଭାବ ଓ ନିର୍ମାଣକୁ ଅଲଗା ଅଲଗା କରିହେବ ନାହିଁ । ଶବ୍ଦର ଗୋଟିଏ ଶୃଙ୍ଖଳା କେବଳ ଉଦ୍ଦେଶ୍ୟମୂଳକ ଭାବେ ଯଦି ଅଧିକାର ବିସ୍ତାର କରେ, ନିଶ୍ଚୟ ବିରକ୍ତିକର ମନେହେବ । ବାସ୍ତବରେ ଶବ୍ଦ ହୁତାଶନ, ଜଳି ଉଠିପାରେ, ନିଆଁ ଲଗାଇ ଦେଇପାରେ ବି । ଶବ୍ଦ ବୋହିଯାଇପାରେ ପାଣିଧାର ପରି,

ଦଳ ବାନ୍ଧି ବସିପାରେ, ବିକ୍ଷୁବ୍ଧ ହୋଇପାରେ । ପୁଣି ଚୁମାଟିଏ ବି ଦେଇପାରେ । କବିର ସମସ୍ତ ପ୍ରଚେଷ୍ଟା 'କ'ଣ କହିବି' ସେଥିପାଇଁ ଯେତେ ନୁହେଁ, 'କିଭଳି ଭାବେ କହିବି' ସେଥିପାଇଁ ଅଧିକ । ତେଣୁ ଅନ୍ଧାର ଘରେ ଯେ ଏକୁଟିଆ ଛଟପଟ । ଭାବର ଯୁକ୍ତିଯୁକ୍ତତା ଥିଲେ ମଧ୍ୟ ଶବ୍ଦର ତୀବ୍ରତା ଓ କଳାକୌଶଳ କବିତା ନିମିତ୍ତ ଅପରିହାର୍ଯ୍ୟ । କାରଣ କବିପାଇଁ କବିତା 'ଗୋଟେ ଉଦ୍ଦେଶ୍ୟ' ନୁହେଁ, ଏକ ତୀବ୍ର ଅନୁଭବ, ତାହା ପ୍ରେମ, ଘୃଣା ବା କ୍ରୋଧର ହେଉ । ଭଲ କବିତାଟିଏ ପଢ଼ିବା ଆରମ୍ଭ କଲାବେଳକୁ, ତା'ର ନିଃଶ୍ୱାସ ପ୍ରଶ୍ୱାସ ଶୁଭିଯିବ । ଶକ୍ତିଶାଳୀ କବିତା ଶବ୍ଦରୁ ଶବ୍ଦକୁ, ପଙ୍‌କ୍ତିରୁ ପଙ୍‌କ୍ତିକୁ ଡେଇଁ ଡେଇଁ କବିଠାରୁ ପାଠକ ଉପରକୁ କୁଦିପଡ଼ିବ । କୁଦି ଚାଲିବ ଭାବମୟ ଜୀବନରୁ ଜୀବନକୁ । ସେସବୁ ବଡ଼ ପାଟିରେ ଶୁଣାଯିବନି ଅବଶ୍ୟ । ଲୋକଗହଳିକୁ ହୁଏତ ପାଗଳ କରିଦେଇ ନ ପାରେ, ତଥାପି ଚୁପ୍‌ଚାପ୍ ଝକ୍‌ଝକ୍ ମାରିବ । ଏକ ବିଶାଳ ଆଧାର ଭିତରେ ହୁଏତ କବିତା ବୁନ୍ଦା ବୁନ୍ଦା ଝରିପଡ଼ିବ । ବିପୁଳ ନଭକୁ, ସାରା ସମୁଦ୍ରକୁ, ପୃଥ୍ୱୀ ଗୋଟାକୁ ନିଜ ଭିତରେ ଧରି ରଖିଥିବ ।

## କଳ୍ପନା ଓ ଆଶାର ଜୀବସାର

କବିତା ଆମକୁ ବଞ୍ଚାଇ ରଖିବାରେ ସାହାଯ୍ୟ କରେ । ଅସହନୀୟ ଦୁଃସ୍ଥିତି ଭିତରେ ଆଶାର ପ୍ରଦୀପ ହୋଇ ଜଳୁଥାଏ । ସମ୍ଭାବନାର ପ୍ରତିଶ୍ରୁତି ଦେଇଥାଏ । ଏଠାରେ ଗୋଟିଏ ଘଟଣା ଉପସ୍ଥାପନ କରିବା ପ୍ରାସଙ୍ଗିକ ହେବ । ଜର୍ଜ ଫାଲୁଦୀ ନାମକ ଜଣେ ହଙ୍ଗେରୀୟ କବି, ଯେ କି ଜନମୁକ୍ତିର ଜଣେ ରୂପକାର, ସେ ୨୦୦୬ ମସିହା ସେପ୍ଟେମ୍ବର ପହିଲା ଦିନ ମୃତ୍ୟୁବରଣ କଲେ । ନାଜିମାନେ ପୋଲାଣ୍ଡ ଆକ୍ରମଣ କରିବାର ୬୭ ବର୍ଷ ପରେ ତାଙ୍କର ମୃତ୍ୟୁ ଘଟିଲା । ଫାଲୁଦୀ ତାଙ୍କ କବିତାରେ ହିଟ୍‌ଲର୍‌ଙ୍କ କାର୍ଯ୍ୟକଳାପକୁ ଆକ୍ରମଣାତ୍ମକ ଆହ୍ୱାନ ଦେଇଥିଲେ: କିନ୍ତୁ କୌଶଳକ୍ରମେ ଆମେରିକାକୁ ଖସି ପଳାଇଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଆମେରିକା ସେନାବାହିନୀରେ ମୁତୟନ ହେଲେ । କିନ୍ତୁ ଯୁଦ୍ଧ ପରେ ହଙ୍ଗେରୀକୁ ଫେରିବାପରେ ତାଙ୍କୁ ରୁଷୀୟମାନେ ବନ୍ଦୀକରି ୧୯୫୦ରୁ ୧୯୫୩ ଯାଏ ରଖିଲେ । ତାଙ୍କୁ ହଙ୍ଗେରୀର 'ରେକ୍ସ' ନାମକ ଏକ ଷ୍ଟାଲିନିଷ୍ଟକ୍ କନ୍‌ସେନ୍‌ଟ୍ରେସନ୍ କ୍ୟାମ୍ପରେ ରଖାଯାଇଥିଲା । ପ୍ରଚୁର ନିର୍ଯାତନା ସେଠାରେ ସେ ଭୋଗିଲେ । ସେହି କାଳରେ ଝାଡୁରୁ ତାଙ୍ଗ ଭାଙ୍ଗିନେଇ ନିଜ ରକ୍ତ ସାହାଯ୍ୟରେ ସେ 'ଟଏଲେଟ୍ ପେପର' ଉପରେ କବିତା ଲେଖିଲେ । ସେ କବିତାଗୁଡ଼ିକ

ମୁଖସ୍ଥ କରି ସହବନ୍ଦୀମାନଙ୍କୁ ଶୁଣାଇଲେ । ସେମାନେ ମଧ୍ୟ କବିତାଗୁଡ଼ିକୁ ମୁଖସ୍ଥ କରିନେଲେ । ଏହି କବିତାଗୁଡ଼ିକରେ ଆଶାର ପରିକଳ୍ପନା ଭରିଥିଲା ଓ ବନ୍ଦୀମାନେ ଉତ୍ସାହିତ ହେଉଥିଲେ । ଫାଲୁଦୀ ଯେବେ ତାଙ୍କ 'କ୍ୟାମ୍ପ୍' ଜୀବନ ବିଷୟରେ 'My Happy Days in Hell' ଲେଖିଲେ, ଯଥେଷ୍ଟ ଶ୍ଳେଷ ମିଶାଇ ଲେଖିଲେ । ତଥାପି, ଏଥିରେ ତାଙ୍କର ଅନାହତ ବିଶ୍ୱାସ ପ୍ରକଟ ଲାଭ କରିଥିଲା । ସମୁଦ୍ରର ବିଷାଦାତ୍ମକ ଗର୍ଜନ ସେ ଶୁଣୁଥିଲେ, ଯନ୍ତ୍ରଣା ସହୁଥିଲେ । କିନ୍ତୁ କବିତାରେ କଳ୍ପନା ମାଧ୍ୟମରେ ସୃଜିଥିବା ଆଶାର ଜୀବସାର ହିଁ ତାଙ୍କୁ ବଞ୍ଚାଇ ରଖିଥିଲା ।

'ଉଦ୍‌ଭାସ' ପ୍ରକାଶନର ଯେ ସପ୍ତମ ବର୍ଷ । ତଥାପି କହିବାକୁ ହେଉଛି ଯେ ଗୋଟିଏ ସଂଖ୍ୟା 'ଉଦ୍‌ଭାସ'ରେ ସ୍ଥାନିତ ହେବାପାଇଁ ହାରାହାରି ୨୫/୩୦ ଗୋଟି ଭଲ କବିତା ଆମେ ପାଉ ନାହୁଁ । ଭଲ କବିତା ଯଥେଷ୍ଟ ଲେଖା ହେଉ ନ ଥିବା ଏହାର ଏକ କାରଣ ହୋଇପାରେ । ଅନ୍ୟାନ୍ୟ କାରଣ ମଧ୍ୟ ରହିଛି । କବିମାନଙ୍କୁ ଅନୁରୋଧ, ସେମାନଙ୍କ ଅନ୍ତତଃ ସ୍ୱବିଚାରରେ ସର୍ବୋତ୍ତମ କବିତାଟିକୁ ପ୍ରତ୍ୟେକ ବର୍ଷ ଜାନୁଆରୀ ମାସ କିମ୍ବା ଜୁଲାଇ ମାସ ମଧ୍ୟରେ 'ଉଦ୍‌ଭାସ'କୁ ପଠାନ୍ତୁ, ଆମ ସହ ସହଯୋଗ ରକ୍ଷା କରନ୍ତୁ ।

ପାର୍ବଣର ଶୁଭ ତିଥିରେ ମହିଷମର୍ଦ୍ଦିନୀ ମହାଶକ୍ତିଙ୍କୁ ପ୍ରଣତି ଜଣାଇବା ସହ 'ଉଦ୍‌ଭାସ' ତା'ର ଲେଖକ, ପାଠକ ଓ ଶୁଭେଚ୍ଛୁବର୍ଗଙ୍କୁ ପୂଜାର ଅଭିନନ୍ଦନ ଜଣାଉଛି ।

॥ ବାଇଶ/ତେଇଶ ॥

## କବିତା : ଶୃଙ୍ଖଳା ଓ ପରମ୍ପରା

ଶିଶୁର ନିରୀକ୍ଷଣ ଓ ଅଭିଜ୍ଞ ମଣିଷର ବାସ୍ତବତାକୁ ସାମ୍ନା କରିବାର ସଚେତନତା ମଧ୍ୟରେ କବିତା ଏକ ସମ୍ପର୍କର ସେତୁ ଯୋଡ଼ିଥାଏ । ସମ୍ପର୍କ ଯୋଡ଼ିବାର ଏହି ମାର୍ଗରେ କବିତା ଜୀବନର ସତ୍ୟ ବା ସାକାର ବାସ୍ତବତାକୁ ଧରିରଖେ । ଜନ୍ମର ପରିବେଶ, କ୍ରମବର୍ଦ୍ଧିଷ୍ଣୁ ବୟସର ପ୍ରଭାବ, ଶୈଶବକାଳରୁ ଶୁଣିଥିବା ଭାଷା – ଯେ ସବୁକିଛିର ପ୍ରଭାବ କବିତାର ସଂରଚନା ପ୍ରକ୍ରିୟାକୁ ସୁସଙ୍ଗଠିତ କରେ । କବିତାରେ କବି ବାହ୍ୟ ବାସ୍ତବତା ପ୍ରତି ଯେତିକି ସତ୍ୟଶୀଳ ହୁଏ, ସ୍ୱଅନ୍ତର୍ନିହିତ ସତ୍ତାର ଶୃଙ୍ଖଳା ପ୍ରତି ସେତିକି ସ୍ୱାଭିମାନୀ ରହିଥାଏ ।

ସେତେବେଳେ ହିଁ ତା'ର କବିତା ବାସ୍ତବତା ଓ ନ୍ୟାୟପରତାରେ ସମୃଦ୍ଧ ହୋଇଥାଏ । କବିର ଭାବଜଗତ, ସୃଜନସ୍ୱରୂପ, ପବନ ମୁହଁରେ ଚହଲୁଥିବା ପାଣିଭର୍ତ୍ତି ବାଲ୍‌ଟି ପରି । ପାଣିର ଚଳନ ଅନ୍ତର୍ନିହିତ ଶୃଙ୍ଖଳା ଓ ବାହ୍ୟ ବାସ୍ତବତା ଉଭୟ ଦିଗକୁ ବିସ୍ତାରିତ ହୋଇଥାଏ – ଅର୍ଥାତ୍ ପାଣିର ଚଳନ ଯେତିକି କେନ୍ଦ୍ରାଭିମୁଖୀ ହୁଏ, ସେତିକି କେନ୍ଦ୍ରାପସାରୀ ହୋଇଥାଏ । ଟି.ଭି., ସନ୍ତ୍ରାସ, ମାଓ, ନକ୍ସଲ ଆଦି କାର୍ଯ୍ୟକଳାପ ଭିତରେ କବିର ସମ୍ବେଦନା ଆହତ ଓ କ୍ଷତାକ୍ତ ହେଉଥାଏ ସତ୍ୟ, ମାତ୍ର ସେହି କ୍ଷତ ଭିତରୁ ଜନ୍ମଲାଭ କରେ ସଶକ୍ତ ସମ୍ବେଦନା। ପକ୍ଷୀଟିଏ ତା'ର ଶାବକକୁ ଲାଳନ କଲା ଭଳି, ନାନା ପ୍ରକାର ଦୁଃସ୍ଥିତି, ଦୁର୍ଯୋଗରୁ ପକ୍ଷ ଘୋଡ଼ାଇ ଆତୁଆଳ କରି ନିର୍ବିଘ୍ନ ରଖିଲା ଭଳି, କବି ତା'ର କବିତ୍ୱକୁ ସକଳ ବିରୋଧୀ ଭାବଠାରୁ ଆତୁଆଳ କରି ବଞ୍ଚାଇ ରଖିଥାଏ – ସତ୍‌କବି ମାତ୍ରେ ଏହି ଉପଲବ୍ଧିରେ ଉପନୀତ ହୋଇଥା'ନ୍ତି ।

କବି କେତେବେଳେ ଚୌକିରେ ବସି ଟେବୁଲ୍ ଉପରେ ଲେଖେ ତ କେବେ ଶୋଇବା ଶେଯରେ କରମାଡ଼ି ବା ଆଣ୍ଠେଇପଡ଼ି କାଗଜ ଉପରେ କଲମ ଚଳାଇବାରେ ଲାଗିଯାଏ । ଯେଉଁ ପରିସ୍ଥିତିରେ ସେ ଥାଉ ନା କାହିଁକି, କବିତାଠାରୁ ନିର୍ଦ୍ଦେଶ ଆସିଲେ ତାକୁ ଲେଖିବାକୁ ହୁଏ । ତେବେ, ପରମ୍ପରାକୁ ଉଜ୍ଜୀବିତ ରଖିବା କବି ପକ୍ଷରେ ବାଞ୍ଛନୀୟ । ଏଠାରେ ପରମ୍ପରା ବା ସ୍ଥାନୀୟତା ପ୍ରତି ଅଯଥା ଭାବପ୍ରବଣତା ଆରୋପ କରିବା କିମ୍ୱା ଅଯୌକ୍ତିକ ସମ୍ମାନ ପ୍ରଦର୍ଶନ କରିବାର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ ପରମ୍ପରାର ଉତ୍ତମ ଦିଗ ଓ ସ୍ଥାନୀୟତାର ଐତିହ୍ୟ ପ୍ରତି ବିଶ୍ୱାସ ସ୍ଥାପନ କରି, ସେଗୁଡ଼ିକୁ ସଞ୍ଜୀବିତ ରଖିବା ଓ ସମ୍ମାନ ଦେବା କବିର ଧ୍ୟେୟ ହେବା ଉଚିତ । କବିତା ହିଁ ଐତିହ୍ୟ ଓ ପରମ୍ପରାକୁ ସଞ୍ଜୀବିତ, ଉଜ୍ଜୀବିତ ରଖିପାରେ ଓ ଭାଷାର ଶୃଙ୍ଖଳାକୁ ସୁସଙ୍ଗଠିତ କରିପାରେ ।

ଏଥିପାଇଁ କବିତାର ଶୈଳୀ ଏକାଧାରରେ ଭାସିବା ଓ ସ୍ଥିର ରହିବା ଅବସ୍ଥାରେ ଥାଏ । ମନ ଓ ଦେହର ତୃପ୍ତିକୁ ସମ୍ପାଦିତ କରି, ସମ୍ବେଦନହୀନ ବିଶ୍ୱ ପ୍ରତି ସମବେଦନାର ହାତ ବଢ଼ାଇବା କବିତାର ଲକ୍ଷ୍ୟ । ଶୈଳୀ ହିଁ କବିତାକୁ ସମର୍ଥ, ସଶକ୍ତ ଓ କ୍ରିୟାଶୀଳ କରାଏ – ଆମ ସଚେତନ ଅସ୍ତିତ୍ୱର ଅସୁରକ୍ଷିତ ଅଂଶକୁ ଦୃଢ଼ କରାଇବାରେ ଉତ୍ସାହ ପ୍ରଦାନ କରେ । ଶୈଳୀ ନିମିତ୍ତ ଆମ ନିର୍ଜନତା ଓ ଦୁଃଖର ପରିପ୍ରକାଶ ମଧ୍ୟ ସମ୍ମାନଜନକ, ପ୍ରଶଂସନୀୟ ଓ ଆଶା ଉଦ୍ରେକକାରୀ

ହୋଇପାରେ । ଶୈଳୀ ସାହାଯ୍ୟରେ କବିତା ଆମ ବୌଦ୍ଧିକ କ୍ଷୁଧାକୁ ବଞ୍ଚାଇରଖେ ଓ ତା'ର ପ୍ରଶମନ ଘଟାଇଥାଏ ।

## ମନୋଜଗତ ଓ କବିକର୍ମ

କଳ୍ପନା, ସମ୍ବେଦନା, ସଚେତନତା ଓ ସଦ୍‌ବିବେକ ବୁଦ୍ଧି କବିର ମନୋଜଗତକୁ ସୁସଙ୍ଗଠିତ କରିଥାଏ । ଏଠାରେ କବିର ଅଧ୍ୟାତ୍ମଚେତନା କୁହାଗଲେ, ତାହା ଜୀବ ପରମର ସମ୍ପର୍କକୁ ବୁଝାଏ ନାହିଁ । ଏ ପ୍ରକାର ଅଧ୍ୟାତ୍ମଚେତନା ମାନବତା, କବିତ୍ୱ ଓ ରସବୋଧ ସମ୍ପର୍କିତ । କବି କର୍ମ କେବଳ ଶବ୍ଦକର୍ମ ନୁହେଁ । ବ୍ୟକ୍ତି-ବ୍ୟକ୍ତିତ୍ୱ ନିର୍ମାଣର କର୍ମ ମଧ୍ୟ । କବି କର୍ମ ସଦାସର୍ବଦା କ୍ରିୟାଶୀଳ । ଏଭଳି କ୍ରିୟାଶୀଳତାର ପ୍ରତ୍ୟକ୍ଷ ପ୍ରମାଣ ଲେଖକ ଗୋପୀନାଥ ମହାନ୍ତି ତାଙ୍କ 'କଳାଶକ୍ତି' ପ୍ରବନ୍ଧରେ କହିଯାଇଛନ୍ତି । ତାଙ୍କ କହିବା କଥା, କଳାକାରଟିଏ ପରିବାର ଚଳାଏ, ବେମାର ସ୍ତ୍ରୀକୁ ଡାକ୍ତରଖାନା ନିଏ, ସଉଦା କିଣେ, ପୁଣି ବୃତ୍ତିଗତ ଜୀବନକୁ ଆଦରି ତାକୁ ବଞ୍ଚିବାକୁ ହୁଏ । ମାତ୍ର ଉପରୋକ୍ତ କର୍ମମାନଙ୍କରେ ସେ ଶତକଡ଼ା ଶହେ ସମ୍ପୃକ୍ତ ରହିପାରେନା । ଏସବୁ ପ୍ରତି ଉପଯୁକ୍ତ ନିଘା ରଖିପାରେନା । ଏହି ସମ୍ପାଦିକାର 'କବି ହେବା ମାନେ କ'ଣ ?' କବିତାରୁ ଦୁଇ ଧାଡ଼ି ଏଠାରେ ସାଧାରଣ ଉଦାହରଣସ୍ୱରୂପ ନିଆଯାଇପାରେ – ''ଭାତ ବାଢୁ ବାଢୁ / ରନ୍ଧାଘର ଝର୍କା ସେପଟେ କଅଁଳ କଦଳୀଭଣ୍ଡାଟେ ପରି / ବାହାରି ଆସୁଥିବା ଜହ୍ନକୁ ଚାହିଁରହିବା × × × ସାନଝିଅ ମୁଣ୍ଡରେ ରିବନ୍ ବାନ୍ଧି ଦଉ ଦଉ / ଚମକି ପଡ଼ିବା / ଏଣେତେଣେ ଅନାଇଁ କ'ଣ ଗୋଟେ ଖୋଜିହେବା'' – ଏଇ ହେଉଛି କବିର ଦୈନନ୍ଦିନ ଜୀବନର ବିଡ଼ମ୍ବନା – ଦୈନନ୍ଦିନ ଜୀବନ କବିତାଦ୍ୱାରା ଆବେଗଗ୍ରସ୍ତ । ଆମ ସମୟର ଜଣେ ପ୍ରଖ୍ୟାତ କବିଙ୍କ ଅନୁଭୂତିକୁ ଏଠାରେ ଉପସ୍ଥାପନ କରାଯାଇପାରେ । ଅନୁଭୂତିଟି ହେଲା, ତାଙ୍କ ନାତୁଣୀର ପ୍ରଥମ ଜନ୍ମଦିନ, ବହୁ ଅତିଥିଙ୍କ ସମାଗମ, ଏତିକିବେଳେ ହଠାତ୍ କବିତାର ଗୋଟେ ଅର୍ଥମୟ ଧାଡ଼ି ତାଙ୍କ ଚେତନାକୁ ଆବିଷ୍ଟ କଲା । ସେ କରନ୍ତେ କ'ଣ ! ଏଭଳି ଆବେଗକୁ ମାନିନେବା କଷ୍ଟକର ଏବଂ ମାନି ନ ନେଲେ ଏହା କ୍ଷୟିଷ୍ଣୁ ହୋଇଯିବ, ଭାଙ୍ଗିଯିବ ।

କବିର ରହିଛି ଜୀବନର ବାସ୍ତବ ସମସ୍ୟା ତା' ସହିତ କଳ୍ପନାପ୍ରସୂତ ଦିବାସ୍ୱପ୍ନ ବି, ରହିଛି ମଧ୍ୟ ତୀବ୍ର ସମ୍ବେଦନଶୀଳ ସମୃଦ୍ଧ କଳ୍ପନା । ଏପରି ହୋଇପାରେ ଯେ, ପ୍ରେମାସ୍ପଦର ଆବେଗ ଜଡ଼ିତ ସ୍ୱର୍ଣ୍ଣକଳ୍ପନା ଭିତରକୁ ବି ପଶିଆସିପାରେ ଦୁର୍ଗତର

କୋହ, ପୀଡ଼ିତର ଆର୍ତ୍ତି । ଆଜିର ମଣିଷ ସମ୍ବେଦନାଶୂନ୍ୟତାଦ୍ୱାରା ଆକ୍ରାନ୍ତ । ଯାନ୍ତ୍ରିକତା, ବାଣିଜ୍ୟମୂଲ୍ୟ ଓ ବିଜ୍ଞାନ, ଦର୍ଶନର ଏକତ୍ର ଚାପରେ ମଣିଷପଣିଆ ମରିଯାଉଛି । ଆଧୁନିକ ମଣିଷ ଅହୋରାତ୍ର ସୁଖ ସୁବିଧା ପଛରେ ଧାଇଁ ଧାଇଁ ତା'ର ଅନ୍ତର୍ମନ ରୁଗ୍‌ଣ ଓ କ୍ଷୁଣ୍ଣ ହୋଇଯାଉଛି । ଆବେଗ, ସ୍ୱାନୁଭବ ଜଡ଼ ପାଲଟି ଯାଉଛି । କେବଳ କବିପାଇଁ ନୁହେଁ, ସାରା ବିଶ୍ୱର ମଣିଷ ସମାଜପାଇଁ ଏହା ବିପଜ୍ଜନକ । କେବଳ କବି ହିଁ ଉପରୋକ୍ତ ବିପଦରୁ ନିଜକୁ ଓ ମଣିଷ ସମାଜକୁ ବଞ୍ଚାଇ ରଖିବାର ସଙ୍କଳ୍ପ ନେଇପାରେ ।

ଏବର୍ଷ 'ଉଦ୍‌ଭାସ' ଅଷ୍ଟମ ବର୍ଷରେ ପଦାର୍ପଣ କଲା । ଏହାର ଅନନ୍ୟ ଗ୍ରହଣଶୀଳତା ଆମକୁ ଉତ୍ସାହିତ କରିଛି । ଏହି ଅବସରରେ 'ଉଦ୍‌ଭାସ'ର କବି, ଲେଖକ ତଥା ଶୁଭେଚ୍ଛୁବର୍ଗଙ୍କୁ ଆମର ହାର୍ଦ୍ଦିକ ଅଭିନନ୍ଦନ ।

॥ ଚବିଶ/ପଚିଶ ॥

## କବିତା ପଠନାଭ୍ୟାସ

ପ୍ରତ୍ୟେକ ବ୍ୟକ୍ତିର ପଠନାଭ୍ୟାସ ରହିବା ବାଞ୍ଛନୀୟ । ବିଶେଷକରି କବିର ଅନେକ ଭାଷାର ରଚନାର ପଠନାଭ୍ୟାସ ରହିବା ଜରୁରୀ । ଆମେ ଭାରତୀୟମାନେ ଅନ୍ତତଃ ନିଜ ମାତୃଭାଷା ସହିତ ଇଂରାଜୀ ତଥା ଅନ୍ୟ ଏକ ଆଞ୍ଚଳିକ ଭାରତୀୟ ଭାଷା ଜାଣିବା, ବୁଝିବା, ପଢ଼ିବାର ଯୋଗ୍ୟତା ରଖିବା ଦରକାର ବୋଲି ମୁଁ ପୂର୍ବରୁ ମଧ୍ୟ କହିଛି । ଆମ ଦେଶରେ ଏତେ ଭାଷା, ଏତେ ଉନ୍ନତ ସାହିତ୍ୟ, ଅଥଚ ପଡ଼ୋଶୀ ସାହିତ୍ୟ ବିଷୟରେ ଆମେ ବିଶେଷ କିଛି ଜାଣୁନା । ଆମ ରାଜ୍ୟରେ ବିଗତ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଓଡ଼ିଆମାନେ, ବିଶେଷକରି ଶିକ୍ଷିତ ଓଡ଼ିଆମାନେ ବଙ୍ଗଳା ପଢୁଥିଲେ । ପରେ କିନ୍ତୁ ବଙ୍ଗଳାଭାଷା ପଢ଼ିବା ଲୋକଙ୍କ ସଂଖ୍ୟା କମିଗଲା । ତଥାପି ଏବେ ହିନ୍ଦୀ, ଇଂରାଜୀ ସହ ମାତୃଭାଷା ଜାଣିବା ଲୋକ ଅନେକ ଅଛନ୍ତି । କିନ୍ତୁ ମାତୃଭାଷାରେ ଲିଖିତ ସାହିତ୍ୟ ପଢ଼ିବା ଲୋକଙ୍କ ସଂଖ୍ୟା ଆଶାତୀତ ଭାବରେ କମିଯାଇଛି । ମୋଟାମୋଟି କୌଣସି ଭାଷାରେ ସାହିତ୍ୟ ପଢ଼ିବା ନିମିତ୍ତ ପାଠକମାନଙ୍କର ସ୍ପୃହା ନାହିଁ । ସାହିତ୍ୟ ଯେପରି ଅଦରକାରୀ । ଆଧୁନିକ ବୈଷୟିକ ଜୀବନରେ ମାତୃଭାଷାର ସ୍ଥାନ କେଉଁଠି ? ସାହିତ୍ୟର ସ୍ଥାନ ବା କେଉଁଠି ? ଇଂରାଜୀ ଭଲ କି ଜାଣିଲେ ଅର୍ଥଂକରୀ ହୋଇପାରିବ । କିନ୍ତୁ ସାହିତ୍ୟ ? ଜଣେ ବିଶିଷ୍ଟ ଲେଖକ

କହିଲେ, ''ପ୍ରତିଦିନ ଖବରକାଗଜ ବା ଟି.ଭି. ଦେଖିବାରେ ଅଭ୍ୟସ୍ତ ବ୍ୟକ୍ତି କିନ୍ତୁ ସାହିତ୍ୟ ନ ପଢ଼ିଲେ (ସେ ଯେଉଁ ଭାଷାର ସାହିତ୍ୟ ହେଉ) କଦାପି ସୁସଭ୍ୟ (Civilised) ହୋଇପାରିବ ନାହିଁ ।'' କିନ୍ତୁ ଆଜିକାଲି ସାହିତ୍ୟ ପଢ଼ିବାର ନିଶା ନାହିଁ କି ପଢ଼ିବାକୁ ସମୟ ନାହିଁ । ସାହିତ୍ୟ ଭିତରେ ପୁଣି କବିତା । କାଳେ କାଳେ କବିତାର ପାଠକସଂଖ୍ୟା ସୀମିତ ରହୁଥିଲା । ଆଜିକାଲିର ପରିସ୍ଥିତିରେ କବିତା ପଢ଼ିବା କଥା ନ କହିଲେ ଭଲ । ଅଥଚ କାବ୍ୟକବିତା ହିଁ ବିଶ୍ୱର ପ୍ରାଚୀନତମ କଳାର ପ୍ରକାଶରୂପ ।

ବର୍ଷକୁ ଖଣ୍ଡେ ବହି ବା ଉପନ୍ୟାସ ପଢ଼ିବା ପାଠକଙ୍କ ସଂଖ୍ୟା ଆଜି ବହୁତ କମ୍ । ଘରକୁ ବହି କିଣି ଆଣିବା ଯେତିକି କମିଛି, ସେତିକି ପରିମାଣରେ ଓଡ଼ିଆଙ୍କ ବହି ପଢ଼ିବା ବି କମିଯାଇଛି । ଲୋକେ କମ୍ପ୍ୟୁଟର ଜାଣନ୍ତି, ଶିକ୍ଷିତ, ଉପାର୍ଜନକ୍ଷମ, ମାତ୍ର ଏମାନଙ୍କର ବହି ପଢ଼ିବାର ଆଗ୍ରହ ନାହିଁ । ଏମାନେ ଉଚ୍ଚଶିକ୍ଷିତ ଅଥଚ ମାତୃଭାଷା କ'ଣ, କୌଣସି ଭାଷାର ପୁସ୍ତକ ପଢ଼ନ୍ତି ନାହିଁ । ଆବଶ୍ୟକ ମଣନ୍ତି ନାହିଁ । ଖୁସିରେ ବହିଟିଏ ପଢ଼ିବା ଆଉ ଆନନ୍ଦ ଲାଭର ମାର୍ଗ (hobby) ହୋଇ ରହି ନାହିଁ । ଆଜିର କିଶୋର ଇତିହାସ ଓ ପୁରାଣକୁ ଯଥେଷ୍ଟ ଭାବେ ଜାଣୁ ନାହାନ୍ତି । ଯେଉଁ ଆମୋଦଦାୟକ କଳ୍ପନା ସଞ୍ଚାରି ଗଳ୍ପ (କାହାଣୀ)ସବୁ ଥିଲା, ଆଜିର ଶିଶୁ କିଶୋରମାନେ ସେଥିରୁ ବଞ୍ଚିତ । କାରଣ ଅଜା, ଆଈ, ଜେଜେ, ଜେଜେମା'ମାନଙ୍କ ପାଖରେ ଏମାନେ ବଢୁ ନାହାନ୍ତି । ଅଜ୍ଞତାର ମହାମାରୀଦ୍ୱାରା ଏମାନେ କବଳିତ ହୋଇପଡ଼ିଛନ୍ତି ।

କବିତା ଲେଖିବାକୁ ଥିବା କବିମାନେ ପ୍ରଚୁର ପଢ଼ିବା ଦରକାର । ଯାହା ପାରୁଛନ୍ତି, ପଢ଼ନ୍ତୁ । ଗୋଟିଏ ପୁସ୍ତକକୁ ଏକାଧିକବାର ପଢ଼ିବା ବି ଏକ କଳା । ଏ କ୍ଷେତ୍ରରେ ଲିଖନ ଓ ପଠନ ସହଜୀବୀ । ଗୋପୀନାଥଙ୍କ ଉପନ୍ୟାସ, ରମାକାନ୍ତଙ୍କ ଶ୍ରୀରାଧା, ସୀତାକାନ୍ତଙ୍କ ସମୁଦ୍ର, ଚନ୍ଦ୍ରଶେଖର, ନୀଳମଣି, ଶାନ୍ତନୁଙ୍କ ଗଳ୍ପ ଉପନ୍ୟାସମାନ ଯେତେ ଥର ପଢ଼ିବ, ସେତେ ଭଲ ଲାଗିବ । ପାଠକ ଚେତନାରେ ନୂଆ ନୂଆ ରୂପ ଉଦ୍‌ଭାସି ଉଠିବ । ବେନ୍ ଜନ୍‌ସନ୍, କ୍ଲାସିକ୍ କବି, ସେ ଥରେ କହିଥିଲେ – 'ଭଲ କବି ରୂପେ ଯେମିତି ଜଣେ ଜନ୍ମ ନେଇପାରେ, ଠିକ୍ ସେମିତି ଭଲ କବି ଭାବେ ଜଣେ ନିଜକୁ ତିଆରି କରିପାରେ – ଯେ ଉଭୟଟି ସତ୍ୟ ।''

**ଅନ୍ତରଙ୍ଗତା**

ଅନ୍ୟ ଦିଗରେ କବିର ଅବସ୍ଥାକୁ ଦେଖନ୍ତୁ । କବିତାଟିର ଧାଡ଼ିଗୁଡ଼ିକ ଯଦି ମନ ଭିତରେ ଏକାଠି ହୋଇ ଗୁଣୁଗୁଣାଉଥାଏ - ସେ ହୁଏତ ସେଗୁଡ଼ିକୁ ମୁଖସ୍ଥ କରି ଆବୃତ୍ତି କରିପାରେ । ପାରମ୍ପରିକ ହେଉ ବା ନୂତନ ଉଦ୍‌ଭାବନ ହେଉ - ଯାହା କିଛିକୁ ଉପଜୀବ୍ୟ କରି ସେ ଲେଖୁ, କିନ୍ତୁ କବିତା ସହ ତା'ର ଅନ୍ତରଙ୍ଗତା ଏକାନ୍ତ ବାଞ୍ଛନୀୟ । କବି ହେବାପାଇଁ ପ୍ରଚୁର ପରିଶ୍ରମ ଓ ନିଦିଧ୍ୟାସନ ଲୋଡ଼ା । କବିଠାରେ ଶୁଦ୍ଧ ଓ ଶକ୍ତିଶାଳୀ କାବ୍ୟିକ ଉଦ୍ଦୀପନା (impulse) ରହିବା କଥା । କିଛି ଭଲ ଲେଖିବାର ଉଚ୍ଚାଭିଳାଷ ଓ ସେହି ଅର୍ଥରେ ପ୍ରତିଶ୍ରୁତିବଦ୍ଧତା କବିଠାରେ ଥିବା ଆବଶ୍ୟକ । ତେବେ ସେ ଉତ୍କୃଷ୍ଟ ସଂରଚନା କରିପାରିବ । ଏହା ସତ୍ତ୍ୱେ କବି ମନରେ ଭୟ ଓ ସମ୍ଭ୍ରମ ଆସେ - କାଳେ ତା'ର ବହୁ ଶ୍ରମ ଓ ସମ୍ବେଦନାର ଫଳ ବୃଥା ଯିବ । କବିତାଟି ଠିକ୍ ମତେ ଉତୁରି ପାରିବ ନାହିଁ । ତା'ର ପଠନକୁଶଳତା, ପରମ୍ପରାମାନ୍ୟତା, ଇତିହାସ ଜ୍ଞାନ, ବ୍ୟକ୍ତିଗତ ପାରଦର୍ଶିତା ଅକାରଣ ହୋଇଯିବ କି ? ଏହା ସତ୍ତ୍ୱେ ଭଲ କବିତାଟିଏ ଲେଖିବାପାଇଁ ତା'ର ଉଦ୍ୟମ ଓ ପ୍ରୟାସ ଆଜୀବନ ଜାରି ରହିଥାଏ ।

ଆମରି କବିମାନଙ୍କ ଭିତରେ ଜଣେ ଯୋଗ୍ୟତମ ଥିଲେ ବି, ତା'ଠାରୁ କମ୍ ଯୋଗ୍ୟତାସମ୍ପନ୍ନ ଅନ୍ୟ ଜଣେ ପୁରସ୍କାର ପାଇଯାଉଛି । ଏଥିରେ ଈର୍ଷା ଆସେ ଓ ଈର୍ଷା କବିତ୍ୱର ପରିପନ୍ଥୀ । ଅସଲ କଥା ହେଉଛି, ପୁରସ୍କାର ପାଇବାପାଇଁ କେହି କବିତା ଲେଖା ଆରମ୍ଭ କରେ ନାହିଁ । ମୌଳିକ ମାନସିକ ଉଦ୍ଦୀପନା (impulse) ହିଁ ଏଠାରେ ଗୁରୁତ୍ୱପୂର୍ଣ୍ଣ । ତେଣୁ ତିକ୍ତତା ଓ ପ୍ରତିବାଦକୁ କବିମାନେ ହୃଦୟରେ ସ୍ଥାନ ଦେବା ବଡ଼ ଭୁଲ୍ । କାରଣ ଏ ଦୁଇଟି କବିତାର ଶତ୍ରୁ । କବିତା ବାଛିବାର ମୂଳ ବିଚାର ଏହିପରି ହୋଇଥାଏ ଯେ, ଜଣେ କବି ତା' କବିତାରେ କେତେଦୂର ନିଜର ସ୍ୱାକ୍ଷର ରଖିପାରିଛି ! ସମ୍ପାଦକର ହୃଦ୍‌ବୋଧ ହେବା କଥା ଯେ, ଯାହା ସେ ଗ୍ରହଣ ନ କଲା, ଭଲଟାକୁ ଯେ ପ୍ରକୃତରେ ଅଗ୍ରାହ୍ୟ କଲା, ତା' ନୁହେଁ । ହେଲେ ଭଲ କବିତା କାହିଁ ? ଲେଖା ହେଉ ନାହିଁ କି ? ଲେଖାହେଲେ ମଧ୍ୟ କବିମାନେ ହୁଏତ ବହୁଳ ପ୍ରସାରିତ, ଅର୍ଥପ୍ରାପ୍ତି ଯୋଗ ଥିବା ପତ୍ରିକାମାନଙ୍କୁ ମଣ୍ଡନ କରିବାକୁ ଅଗ୍ରାଧିକାର ଦେଉଛନ୍ତି । କବିତା ପ୍ରକୃତରେ ଏକ ନିଚ୍ଛକ୍ ବାସ୍ତବତା । ଏହା ଆବେଗିକ ବା ମାନସିକ ଉଦ୍ଦୀପନାରେ ନ ଭାବି ନ ଚିନ୍ତି କରାଯିବା ଭଳି କର୍ମ ନୁହେଁ । କବିତାର ଶୈଳ୍ପିକ ରୂପରେଖ ପ୍ରକୃତରେ

ପାଠକକୁ ଆବିଷ୍ଟ କରେ । ପୁରୁଣା ଭାଷା ବ୍ୟବହୃତ ହେଉ ବା ବର୍ଣ୍ଣନାତ୍ମକ କବିତା ହେଉ, ଏପରିକି ଲୋକଗୀତ ହେଉ, (ଶହ ଶହ ବର୍ଷର ହଳିଆ ଗୀତ, ଗାଈଆଳର ଗୀତ) ଆମ ଉପରେ ପ୍ରଭାବ ରଖିଛି । ସେସବୁକୁ ବହୁଲୋକ ଗ୍ରହଣ କରୁଥିଲେ । ଏବେ ତାହା ଆଉ ନାହିଁ, ତଥାପି ଶହେ ବର୍ଷରୁ ଅଧିକ କାଳ ପୂର୍ବେ ଆରମ୍ଭ ହୋଇଥିବା ଚତୁର୍ଦ୍ଦଶପଦୀ କବିତାକୁ (ଓଡ଼ିଆ ଭାଷାରେ ଏହାର ପ୍ରଥମ ସଂରଚକ ସ୍ୱର୍ଗତ ଗୋପାଳ ବଲ୍ଲଭ ଦାସ, ରମାଦେବୀଙ୍କ ପିତା) ବିଚାରକୁ ନିଆଯାଉ । ଏହି ସନେଟ୍ ରଚନାର form ଏବେବି ଭଲ ଲାଗୁଛି । ଏଥିରେ ଭାଷା ଓ ଭାବର ଅନ୍ତରଙ୍ଗ ମିଳନ ଘଟିଛି ।

'ଉଦ୍‌ଭାସ' ସମ୍ପାଦନାର ଅନୁରୋଧ, କବି ଲେଖକମାନେ ସେମାନଙ୍କର ରଚନା ଜାନୁଆରୀ (୨୦୧୧) ମାସ ଶେଷ ସୁଦ୍ଧା ଏଠାକୁ ପଠାନ୍ତୁ । ଆଜି ଶାରଦୀୟ ଅବକାଶରେ, ମହାଶକ୍ତି ଦୁର୍ଗାଦେବୀଙ୍କୁ ପ୍ରଣିପାତ ଜଣାଇ 'ଉଦ୍‌ଭାସ' ତା'ର ପାଠକ, ଲେଖକ ଓ ଶୁଭେଚ୍ଛୁବର୍ଗଙ୍କୁ ଶାରଦୀୟ ଅଭିନନ୍ଦନ ଜଣାଉଛି ।

❑❑❑

# କାଳେ କାଳେ ପ୍ରତାରଣା

## କବିତା–ନଈତୁଠ, ପୋହଳାମାଛ ଓ ପ୍ରତାରକ ପ୍ରେମିକ

## କବି–ବାସୁଦେବ ସୁନାନୀ

ନୀଳମାଧବଙ୍କ ମନ୍ଦିର ତଳେ ବହିଯାଉଛି ମହାନଦୀ । ଯେ କ'ଣ ସେହି ନଦୀ, ନା ଯେକୌଣସି ନଦୀ ? ହଁ, କବି ଲେଖିଛନ୍ତି କଣ୍ଟିଲୋର ମେଖଳା, ମହାନଦୀ, ତୁଠରେ ତା'ର ଦଳ ଦଳ ପୋହଳାମାଛ, ସତେ ଯେମିତି ସେମାନେ ପଚାରୁଛନ୍ତି, ସେ ପ୍ରତାରିତା ପ୍ରେମିକାକୁ, ''ପ୍ରେମ ବଦଳରେ ପାଇଲୁ କ'ଣ ? ବିଶ୍ୱାସ ବଦଳରେ ହରାଇଲୁ କ'ଣ ?'' ପୋହଳାମାଛମାନେ ବେଶ୍ ଚାଲାକ୍ ହେଲେଣି । ସବୁ ସରଳ ସହଜ ପ୍ରାଣୀମାନେ ଖୁବ୍ ଚାଲାକ୍ ହୋଇଗଲେଣି । ଏକଦା, ସେମାନେ ମୁଦିକୁ ଗିଳିଦେଇ ଜଣେ ପ୍ରେମିକାର ପ୍ରତାରିତା ହେବାର କାରଣ ହୋଇଥିଲେ । କିନ୍ତୁ, ଏଠାରେ ସେହି ପ୍ରତାରିତା ପ୍ରେମିକା ଶକୁନ୍ତଳାଙ୍କ କଥା ଆଲୋଚ୍ୟ ନୁହେଁ । ଯେ ପରବର୍ତ୍ତୀ ଯୁଗର କଥା । ଏତେ ଭଲ ପାଇବା ଓ ବିଶ୍ୱାସ ସତ୍ତ୍ୱେ ହାରିଯାଏ ପ୍ରେମିକା – ସେ ଯେ କେହି ପ୍ରେମିକା ହୋଇପାରେ: ମାତ୍ର ଏଠାରେ ପ୍ରେମିକାର ପ୍ରତୀକତା କରୁଛି, ଶବରକନ୍ୟା ଲଳିତା, ବିଶ୍ୱାବସୁ ଶବରରାଜଙ୍କ କନ୍ୟା । ଲଳିତା ଥିଲେ ବିଦ୍ୟାପତିଙ୍କ ପ୍ରେମିକା । ବିଦ୍ୟାପତି ଓଡ଼ିଶାର ଗଜପତି ରାଜାଙ୍କ ଅନୁଚର । ବିଦ୍ୟାପତି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ଆସିଥିଲେ ଶବର ରାଜ୍ୟକୁ । ଅରଣ୍ୟ ନିବାସୀ, ଶବର ସମ୍ପ୍ରଦାୟର ରାଜା ବିଶ୍ୱାବସୁ ତାଙ୍କ ଆରାଧ୍ୟ ଦେବତା ନୀଳମାଧବଙ୍କୁ ଏକ ଗୁପ୍ତସ୍ଥାନରେ ରଖି ପୂଜା କରୁଥିଲେ । ଏହି ଦେବତାଙ୍କୁ କଳେବଳେକୌଶଳେ ଆୟତ୍ତ କରିନେବାର ଅଭିପ୍ରାୟରେ ବିଦ୍ୟାପତି ପ୍ରେରିତ ହୋଇଥିଲେ । ମାତ୍ର ଦେବବିଗ୍ରହକୁ ସେ ଠାବ କରିବେ କିପରି ? ସରଳା ନିରୀହା ଶବରକନ୍ୟା ଲଳିତାଙ୍କୁ ପ୍ରଣୟପାଶରେ ଆବଦ୍ଧ କରିବାର ପ୍ରଯତ୍ନ କଲେ ବିଦ୍ୟାପତି । ଏସବୁ ଛଳନା ଲଳିତା ବା ଜାଣନ୍ତେ କିପରି ? ପ୍ରେମପାଇଁ ଯୁଗେ ଯୁଗେ ନାରୀ ତ୍ୟାଗ ସ୍ୱୀକାର କରିଛି । ଏକ ପକ୍ଷରେ ପିତାଙ୍କ ବିଶ୍ୱାସ ଓ ସ୍ନେହ, ଅପରପକ୍ଷରେ ପ୍ରେମିକ ବିଦ୍ୟାପତିଙ୍କ ଆଗ୍ରହ ଓ ଆପାତ ସରଳ ଅନୁନୟ ମଧ୍ୟରେ ଲଳିତା ନିଜ କର୍ତ୍ତବ୍ୟ ନିର୍ଣ୍ଣୟ କରିନେଲେ । ମାତ୍ର ପ୍ରତାରକ ପ୍ରେମିକ ନିଜ ଉଦ୍ଦେଶ୍ୟ ସାଧନ କରି, ପ୍ରେମିକାଙ୍କୁ ପ୍ରତ୍ୟାଖ୍ୟାନ କରି ସ୍ଥାନ ତ୍ୟାଗ କଲେ ।

ଏହି ଆଂଶିକ ପୁରାଣ ସମର୍ଥିତ କିମ୍ବଦନ୍ତୀଟିକୁ ଆଧାର କରି କବିତାଟି ରଚିତ । ସରଳା, ପ୍ରେମବିହ୍ୱଳା ବାଳିକାଟି ପ୍ରବଞ୍ଚନାର ଶିକାର ହୋଇଥିବାର କାରୁଣ୍ୟ ବହୁ ପ୍ରତୀକ ଓ ଚିତ୍ର ମାଧ୍ୟମରେ କବିତାଟିରେ ପ୍ରକଟିତ । କବିଙ୍କ ସ୍ୱରରେ ଗଭୀର ସମ୍ବେଦନା । ଉଦ୍ଦେଶ୍ୟମୂଳକ ପ୍ରେମାଭିନୟଦ୍ୱାରା ରାଜପ୍ରେରିତ ପ୍ରେମିକଟି ସରଳା ନାରୀର ସର୍ବସ୍ୱ ଲୁଣ୍ଠନ କରିନେଲା । ପ୍ରେମିକର ଛଦ୍ମବେଶରେ ସେ ବିଶ୍ୱାସଘାତକ ରୂପେ ଚିହ୍ନିତ ହେଲା । କିନ୍ତୁ ନାରୀଟି ଏହି ଚତୁରତାକୁ ହୃଦୟଙ୍ଗମ କଲାବେଳକୁ, ସେ ଭୂଲୁଣ୍ଠିତା ହୋଇସାରିଛି ।

ବିଦ୍ୟାପତିଙ୍କ ଜିଦ୍‌ରେ ଲଳିତା ତାଙ୍କୁ ନିଜ ପିତାଙ୍କ ଆରାଧ୍ୟ ଦେବତାଙ୍କ ଗୁପ୍ତ ନିବାସସ୍ଥଳୀକୁ ନେଇଯାଏ । ସତର୍କତାସ୍ୱରୂପ, ବିଦ୍ୟାପତିଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି ହାତ ଧରି ଲଳିତା ଗୁପ୍ତସ୍ଥାନକୁ ନେଇଯାଏ । କିନ୍ତୁ, ବିଦ୍ୟାପତିଙ୍କ କାନିରେ ବନ୍ଧା ସୋରିଷଦ୍ୱାରା ପଥ ନିର୍ଣ୍ଣୟ ହୋଇଯାଇଥାଏ । ଯାହାଫଳରେ ପାର୍ବତୀ ବାଳିକାର ବିଶ୍ୱାସକୁ ପଦାଘାତ କରି ବିଦ୍ୟାପତି ନୀଳମାଧବଙ୍କୁ ଚୋରାଇ ନେଇପାରିଛନ୍ତି । ଲଳିତାର ଅନ୍ତରାତ୍ମା ବିଳାପ କରିଉଠିଛି । କବିଙ୍କ ବକ୍ତବ୍ୟରେ କ୍ଷମତାପନ୍ନ ଲୋକେ, ଚତୁର ଲୋକେ କାଳ କାଳ ସରଳ ବିଶ୍ୱାସୀ, କ୍ଷମତାହୀନମାନଙ୍କୁ ଠକି ଚାଲିଛନ୍ତି । ଏହା ମାର୍ମିକଭାବେ ପରିସ୍ଫୁଟ ହୋଇଛି । ଭଲ ପାଇବାର ଛଦ୍ମ ଆଚାର ତଳେ ଷଡ଼୍‌ଯନ୍ତ୍ରକାରୀର ପ୍ରତାରଣା ବୁଝିବାରେ ବିଳମ୍ବ ଘଟିବା ସ୍ୱାଭାବିକ । କଣ୍ଟିଲୋର ତୁଠ ପାହାଚ ନିକଟରେ ଖେଳୁଥିବା, ପହଁରୁଥିବା ପୋହଳାମାଛ ଦଳଙ୍କୁ ପ୍ରତାରିତା ପ୍ରେମିକାଟି କ'ଣ କହିବ ? କିଭଳି ତା'ର ମର୍ମବେଦନା ବୁଝାଇପାରିବ ?

ଲୁଣ୍ଠିତା ବାଳିକାଟିର ଅନ୍ତର୍ବେଦନାକୁ ରୂପାୟିତ କରିଛନ୍ତି କବି –

> ''ଏବେ ସୋରିଷ ଦେଖିଲେଇଁ
> ଡିନ୍ତିଯାଏ ଛାତି କୋହରେ
> ଆଖିରେ ଉଠେ ଉଜାଣି ବିନା ମେଘରେ
> ଯାହାର ଧାଡ଼ିଏ ସୁନେଲି ଗଳା ହିଁ
> ପ୍ରାମାଣିକ ପଥ ହୋଇ ଫୁଟିଉଠିଲା
> ଦେହ ଓ ଦିଅଁ ଲୁଟିନେବାକୁ ଏକା ମୁଦ୍ରାରେ ।''

ବାସୁଦେବଙ୍କ ଭାଷା ଭାବବାହୀ, ପ୍ରତୀକଦ୍ୟୋତକ ଓ ସୂଚନାତ୍ମକ । କିମ୍ବଦନ୍ତୀର ଆଶ୍ରୟ ନେଇ ଗ୍ରଥିତ କରିଛନ୍ତି କବିତା, ଯାହା କ୍ଷମତାପନ୍ନ ମଣିଷର କପଟାଚାରର ଏକ ବିଶିଷ୍ଟ ଉଦାହରଣ ହୋଇ ରହିଛି । ଶ୍ରୀ ସୁନାନୀଙ୍କ ଏହି କବିତାଟି ହୃଦୟସ୍ପର୍ଶୀ, ସାର୍ଥକ । ସୁନାନୀଙ୍କ କବିତା ରଚନା–କର୍ମ ଅଭିନନ୍ଦନୀୟ ।

❑❑❑

## ଶବ୍ଦମାନଙ୍କ ଭରସାରେ
### କବି–ଗାୟତ୍ରୀବାଳା ପଣ୍ଡା

ପତ୍ରିକାମାନଙ୍କରୁ ଗାୟତ୍ରୀବାଳାଙ୍କ କବିତା ପଢ଼ି ମୁଁ ଆବିଷ୍ଟ ହୋଇଥିଲି । ପରେ, ତାଙ୍କ ସଙ୍କଳନ 'ଅଣାୟତ୍ତ'ରେ ମୁଁ ଉପରୋକ୍ତ ଶୀର୍ଷକର କବିତାଟିକୁ ପଢ଼େ । ତହିଁରେ ପ୍ରକଟିତ ଜୀବନ ସଙ୍କଟ, ସାଧନା ଓ ଆଶ୍ୱାସର ସ୍ୱର ମୋତେ ଅଭିଭୂତ କରେ । ଅଶେଷ ବିଡ଼ମ୍ବନା ଓ ନାନାବିଧ ପୀଡ଼ାକୁ ସାମ୍ନା କରୁ କରୁ କବି ଅବହିତ ହୁଅନ୍ତି ଯେ, ''ବିପର୍ଯ୍ୟୟ ଓ ବିଧ୍ୱଂସ ପରେ ବି ଫୁଲ ଫୁଟେ, ତରା ଉଏଁ ।'' ଏହି ଅବବୋଧ ହିଁ ତାଙ୍କୁ ସାହସ ଦିଏ, ଚେତନାକୁ ଶକ୍ତି ପ୍ରଦାନ କରେ । ଅଧିକନ୍ତୁ ଶବ୍ଦ ହିଁ ପାଲଟିଯାଏ ଏତାଦୃଶ ସାହସ ଓ ଶକ୍ତିର ଉତ୍ସ । ଜୀବନ ଓ ଜଗତର ଅସଙ୍ଗତି, ଯନ୍ତ୍ରଣା, କ୍ଷୟକ୍ଷତିକୁ ଭରିଦେଇ ନ ପାରିଲେ ବି ଅନ୍ତରଙ୍ଗତା ବାଣ୍ଟିଦେଇ ଏସବୁକୁ କିଛିଟା ଲାଘବ କରିବାକୁ ସେ ତତ୍ପର ହୁଅନ୍ତି । 'କଟି ଯାଇଥିବା ଡେଣା', 'ଜଳି ଯାଇଥିବା ଜଙ୍ଗଲ' ଓ 'ମୃତ ଯୋଦ୍ଧାଙ୍କ ଶେଷଇଚ୍ଛା' ଆଦି ଆଘାତ, ଧ୍ୱଂସ, ଆତ୍ମତ୍ୟାଗର ପ୍ରତୀକତା କରନ୍ତି । କବି ଚାହାନ୍ତି, ଏହିସବୁ ଉପରେ ଆତ୍ମୀୟତା ଓ ସମ୍ଭାବନାକୁ ସିଞ୍ଚି ଦିଅନ୍ତେ ।

କବିଟିଏ କବିତାରୁ ପାଏ କ'ଣ ? ଯଶ, ଉପଢୌକନ ? ସତ୍ କବିଟି ଯେ ଜାଗତିକ ପ୍ରାପ୍ତି ଭିତରେ ନ ଥାଏ । ଶବ୍ଦଙ୍କ ସହାୟତା ନେଇ ସେ ଆତ୍ମାକୁ ଖୋଜିବାରେ ଲିପ୍ତ ରହିଥାଏ । କାବ୍ୟନାୟିକା କହେ, ''ଶବ୍ଦମାନଙ୍କୁ ସାଙ୍ଗରେ ଧରି ମୁଁ ଖାଏ, ପିଏ, ଉଠେ, ବସେ, ଶୁଏ, ସ୍ୱପ୍ନକୁ ଶୃଙ୍ଗ ଗଢ଼େ / କାଉ କୋଇଲିଙ୍କୁ 'ଆହା' କରେ ।'' କବି କ'ଣ ଖାଲି ନିଜ ଦୁଃଖସୁଖରେ ଆନ୍ଦୋଳିତ ହୁଏ ? ନା, ସେ ସକଳ ଦୁଃଖୀ, ନିରାଶ୍ରୟଙ୍କ ସାହାରା ପାଲଟି ଯିବାକୁ ଆଗ୍ରହୀ ହୁଏ, ଆଗଭର ହୁଏ । ଅଥଚ ହୃଦୟର ଅବ୍ୟକ୍ତ ବେଦନା କଇଁ କଇଁ କାନ୍ଦରେ ଅଭିବ୍ୟକ୍ତ ହୋଇଯାଏ । ଗାୟତ୍ରୀ ବାସ୍ତବତାକୁ ବୁଝନ୍ତି, ତା'ର କଠୋରତା ଅସହ୍ୟ ହୁଏ, ସେସବୁର ନିରାକରଣପାଇଁ ସେ ବ୍ୟାକୁଳ ହୁଅନ୍ତି । ତାଙ୍କ କହିବାର ବାଗ, ଶବ୍ଦବିନ୍ୟାସ ଓ ଭାଷା ପ୍ରୟୋଗର ଯଥାର୍ଥତା, ତାଙ୍କ ସାମସମୟିକ କବିମାନଙ୍କ ଭିତରୁ ତାଙ୍କୁ ଅଲଗା କରିଦିଏ, ସେ ବାରି

ହୋଇପଡ଼ନ୍ତି । ତାଙ୍କ କବିତାଗୁଡ଼ିକ ସରଳ । ଅଥଚ ସେହି ସରଳତା ସହଜସାଧ୍ୟ ନୁହେଁ, କଳାତ୍ମକ । ଶୈଳୀ ସଂଳାପଧର୍ମୀ ।

ଏଠାରେ ଉଦ୍ଧାର କରାଯାଉ

''ଅନେକ ଗୁଡ଼ାଏ ଖେଳ
ବିପର୍ଯ୍ୟୟ, ବିଧ୍ୱଂସ ପରେ ବି
ଫୁଲ ଫୁଟେ ତରା ଉଏଁ
ପରାଜୟର ପଙ୍କରୁ ଆବିର୍ଭାବ ହୁଏ
ପୁଣ୍ୟ, ପ୍ରେମ ଆଉ ପ୍ରତିର
ଶୁଭ୍ର ସତେଜ ପଦ୍ମ ।''

ତାଙ୍କ ସାମ୍ନାରେ ଜୀବନ ଏକ ଦୁସ୍ତର ପାରାବାର । ତାଚ୍ଛଲ୍ୟ, ଅପବାଦ, ଅପରିଣାମ, ପରାଜୟ ଓ ଲୁହ ଏହି ପାରାବାରର ଜଳସଦୃଶ । ନାରୀ ହେଉ କି ପୁରୁଷ ହେଉ, ଯେକୌଣସି ବ୍ୟକ୍ତିଚେତନାକୁ ଏହି ଦୁସ୍ତର ପାରାବାର ତିକ୍ତତାରେ ଭରିଦିଏ । ତେଣୁ ସଚେତନ କବି ବ୍ୟକ୍ତିତ୍ୱଟିଏ ଘାରି ହେଉ ହେଉ, ଘାଣ୍ଟି ହେଉ ହେଉ ଆପଣା ଅନ୍ତରକୁ ଆଶ୍ୱାସ ଦେବାକୁ ବାଟ ଖୋଜେ । ଆଶ୍ୱସ୍ତ ହୁଏ ଯେ, ତା' ପାଖରେ ଶବ୍ଦ ଅଛି । ଆତ୍ମାର ପୀଡ଼ାକୁ କବିତା କରିଦେଲେ ସେ ହୁଏତ ନିଷ୍କୃତି ପାଇପାରିବ । ଗାୟତ୍ରୀଙ୍କ କବିସତ୍ତାଟି ଲୁହରେ ଭାଙ୍ଗିପଡ଼େ ସତ; ମାତ୍ର ଦମ୍ଭରେ ଠିଆ ହୋଇପାରେ ମଧ୍ୟ । ତେଣୁ ତାଙ୍କ କାବ୍ୟଚେତନା ବିଗଳନ ଓ ଦମ୍ଭର ଯୁଗପତ୍ ଯୋଗ୍ୟତା ଅର୍ଜନ କରିଛି । ତାଙ୍କ ସୃଜନ ସାଧନା କବିତାପ୍ରେମୀଙ୍କ ମନରେ ଗଭୀର ଆଶା ସଞ୍ଚାର କରିବା ସ୍ୱାଭାବିକ ।

□□□

## ସନ୍ତ୍ରସ୍ତ ଗୋପଗାଁରେ କବି
### କବିତା–ଗୋପଗାଁ, ପୁନଶ୍ଚ ଅକ୍ରୂର
### କବି–କେଦାର ମିଶ୍ର

କେତେକ କବିତା ପଢୁ ପଢୁ ଉପରୋକ୍ତ କବିତାଟିରେ କବିଙ୍କ ସ୍ୱପ୍ନଭଙ୍ଗର ପୀଡ଼ା ଓ ନୂଆ ସମୟର ପ୍ରତୀକ୍ଷା, ମୋତେ ଭଲ ଲାଗିଲା । ଏ କାଳରେ ପୁରାଣର ସୌନ୍ଦର୍ଯ୍ୟବୋଧ, ଆବେଗପ୍ରବଣତା ଅନୁପସ୍ଥିତ, ଜୀବନ କଠୋର ରୂପେ ପ୍ରତିଭାତ । କିନ୍ତୁ ଅକ୍ରୂର କ'ଣ ଇତିହାସ ? ନା, ଗୋପଗାଁ ଐତିହାସିକ ସତ୍ୟ ନୁହେଁ, ପୁରାଣରେ ହିଁ ତା'ର ସ୍ଥିତି ମାଧୁର୍ଯ୍ୟମୟ । କିନ୍ତୁ ଆଜି ଗୋପର ସେ ଚେତନାବିସ୍ତାରି ସ୍ଥିତି ନାହିଁ, ସେ ଗୋଟିଏ ବିନ୍ଦୁ ମାତ୍ର, ହ୍ଲାଦିନୀ ଶକ୍ତି ରାଧା ଆଜି ଯନ୍ତ୍ରଣା, ହାହାକାର ଓ ଅପ୍ରକଟ ବେଦନାର ପ୍ରତିଭୂ । ପତ୍ରଫୁଲର ସମ୍ଭାବନାହୀନ ଶୁଷ୍କ କଦମ୍ବ ଗଛ – ତାହା ଆଜିର ମଣିଷର ଲୋଭ, ଅବିଶ୍ୱାସ ଓ ନିଷ୍ଠୁରତା ତଥା କ୍ରୂର କର୍ମର ସାକ୍ଷୀ ହୋଇ ଦଣ୍ଡାୟମାନ, ଯାହା ମୁହୂର୍ତ୍ତକ ଭିତରେ କାଠୁରିଆର ଚୋଟରେ ଧରାଶାୟୀ ହୋଇଯିବ । କବିଙ୍କ ଉଚ୍ଚାରଣରେ –

> ''ଇତିହାସରର ଧୂଳିଭର୍ତ୍ତି ବଖରାରେ
> ଗୋପଦାଣ୍ଡ ବିନ୍ଦୁଟିଏ ମାତ୍ର ।
> ଯନ୍ତ୍ରଣା ଓ ହାହାକାର, ଅଫୁଟା ବେଦନା/ରାଧା ଏକ ଶୁଖିଲା କଦମ୍ବ ଗଛ
> ଦେହେ ତା'ର ବାଜୁଥାଏ
> କାଠୁରିଆ ଲୋଭିଲା ପାହାର ।''

କେବଳ ଏତିକି ନୁହେଁ, ଏକବିଂଶ ଶତକର ଏହି ଅବିଶ୍ୱସ୍ତ ସମୟ ମଣିଷକୁ ସନ୍ତ୍ରାସର ସାମ୍ନାସାମ୍ନି ଠିଆ କରାଇଛି । ଜୀବନ ପ୍ରତି ଆସ୍ଥାହୀନ କରିଛି । ପ୍ରେମର ମଧୁରତା, ଆବେଗର ଆକଣ୍ଠ ପ୍ଲାବନ ତରୁଣ ପ୍ରାଣକୁ ସିକ୍ତ କରୁ ନାହିଁ । ଗୋପାଙ୍ଗନା ଅପହରଣର ଶିକାର ହେଉଛି – ବାହୁବଳ ଓ କୁତ୍ସିତ କାମନା ପ୍ରେମୋତ୍କଣ୍ଠାର ସ୍ଥାନ ଅଧିକାର କରିନେଇଛି । ଆଜିର ବଂଶୀସ୍ୱନରେ ମାଦକତା ନାହିଁ, ଅନ୍ୟ ପକ୍ଷରେ ଦୁଃଖ ଓ କାରୁଣ୍ୟ ବଂଶୀସ୍ୱନରେ ଛନ୍ଦାୟିତ । ସ୍ୱପ୍ନ ଆଉ ସୌନ୍ଦର୍ଯ୍ୟର ପ୍ରତୀକ ମୟୂରଚୂଳ ରକ୍ତରଞ୍ଜିତ ଓ କୁତ୍ସିତ । ଆଜି ଯଦି ଛପି ଛପି କେହି ଆସେ ତ,

ସେ ପ୍ରେମପାଗଳ ନାଗର ନୁହେଁ, ସେ ନିଶ୍ଚୟ ନକ୍ସଲ, ଘାତକ, ହିଂସାପରାୟଣ ବା ହୋଇପାରେ ଜେହାଦି, ଯେ କି ଉଦ୍ଦେଶ୍ୟମୂଳକ ଭାବେ ନିରପରାଧ ଜନଗଣର ହତ୍ୟା କରିଥାଏ । ଅତୀତର ଚେତନାରେ ଉଜ୍ଜୀବିତ ଗୋପପୁରର ଉପରୋକ୍ତ ସମସ୍ତ ଐଶ୍ୱର୍ଯ୍ୟ ଆଜି ବିପର୍ଯ୍ୟସ୍ତ, ବିଧ୍ୱସ୍ତ । କଲ୍ୟାଣକାମୀ ନାୟକ କେବେ ଗୋବର୍ଦ୍ଧନ ପାହାଡ଼କୁ ଟେକିଧରି ଜନଗଣଙ୍କୁ ବଜ୍ରବିଦ୍ୟୁତ୍ ପ୍ରଳୟରୁ ଉଦ୍ଧାର କରିଥିଲା । କିନ୍ତୁ ଆଜିର ନାୟକ ଷଡ଼୍‌ଯନ୍ତ୍ରରେ ପରୋକ୍ଷ ଭାବେ ଲିପ୍ତରହି ପୃଥିବୀର ମେରୁଦଣ୍ଡକୁ ଖଣ୍ଡବିଖଣ୍ଡ କରିପକାଉଛି । ପ୍ରକୃତି କ୍ଷତ-ଜର୍ଜର । ଆଜିର ବର୍ଷା, ଅମ୍ଳଗନ୍ଧକର ବର୍ଷା । ଶରତ ବସନ୍ତ ଭଳି ସୁକୁମାର ଋତୁ ହରାଇଛନ୍ତି ସେମାନଙ୍କର ସମ୍ମୋହନ ଶକ୍ତି । ପୁରାଣର ଗୋପଗାଁ ଓ ଆଜିର ଗାଁର ସ୍ଥିତି ଭିତରେ ଆକାଶପାତାଳ ପ୍ରଭେଦ । ଆଜିର ଗାଁ ଦାରୁଣ ବିପର୍ଯ୍ୟୟରେ ଅସ୍ତବ୍ୟସ୍ତ ।

କିନ୍ତୁ କବି ଏସବୁକୁ ଚିହ୍ନେ । ପୁରାଣର ସେ ମହକ ତା' ଅନ୍ତରକୁ ମୁଗ୍ଧ କରି ରଖିଥାଏ । ବର୍ତ୍ତମାନର ବିପର୍ଯ୍ୟୟର ସେ ସାକ୍ଷୀ । ଅତୀତର ମାଧୁର୍ଯ୍ୟକୁ ସ୍ୱପ୍ନରେ ଜୀଆଇଁ ରଖି, ନଷ୍ଟଶୀଳ ବର୍ତ୍ତମାନକୁ ସାମ୍ନା କରୁଥାଏ ସେ । ତଥାପି, ସର୍ବଶେଷ ଧ୍ୱଂସ ବା ମୃତ୍ୟୁକୁ ସେ ସ୍ୱୀକାର କରେ ନାହିଁ । ଏକଦା ତିଷ୍ଠି ରହିଥିବା ପ୍ରେମ, ଆବେଗ, ବିହ୍ୱଳତା, ଉଚ୍ଛଳ ଜୀବନ୍ତ ପ୍ରକୃତି, ସମ୍ବେଦନା, କଲ୍ୟାଣକାମୀ ନେତୃତ୍ୱ – ଏସବୁ କିଛି ଉପରେ ସେ ବିଶ୍ୱାସ ରଖିଥାଏ । କବିର ଭବିଷ୍ୟ ଆଶାର ପ୍ରତୀକ ଅଙ୍କୁର – ଯେ ହୁଏତ ଦିନେ ରାମକୃଷ୍ଣଙ୍କୁ ଗୋପ ଗାଁକୁ ଫେରାଇ ଆଣିପାରିବ । କବି ହିଁ ଏ ପ୍ରକାର ଆଶା ଓ ବିଶ୍ୱାସରେ ବଞ୍ଚେ । ସମସ୍ତେ ହତାଶାରେ ଭାଙ୍ଗି ପଡୁଥିଲାବେଳେ ସେ ଆଶାବାଦର ସଙ୍ଗୀତ ଶୁଣାଏ । ସମସ୍ତେ ଶୋଇରହିବାବେଳେ ସେ ଚେଇଁ ରହିଥାଏ । ସେ ଅପେକ୍ଷା କରିଥାଏ । ହାତରେ କଲମ ଧରିଥାଏ – ଭଲ ସମୟର ପ୍ରତୀକ୍ଷାରେ ଅବିଚଳ ରହିଥାଏ ।

ସେ କବି – ଚିରଦିନର କବି । କେଦାରଙ୍କ ସତ୍ତା ତାଙ୍କଠାରେ ନିହିତ ରହିଛି । ତାଙ୍କ ଯୁବସୁଲଭ କାବ୍ୟମାନସ ହୃତସର୍ବସ୍ୱ ସ୍ଥିତିକୁ ଅଙ୍ଗେ ନିଭାଇଲେ ବି ମାଧୁର୍ଯ୍ୟର, ପ୍ରେମର, ବିଶ୍ୱାସର ସ୍ୱପ୍ନକୁ ବଞ୍ଚାଇ ରଖିବାକୁ ବଦ୍ଧପରିକର । ତେବେ, କେଦାର ଜଣେ ପ୍ରତିଶ୍ରୁତିସମ୍ପନ୍ନ କବି । ତାଙ୍କ ଶବ୍ଦଭଣ୍ଡାର ସମର୍ଥ । ସେ କ୍ରମଶଃ ତାଙ୍କ ପ୍ରକାଶର ଆୟୁଧକୁ ଅଧିକ ଶାଣିତ କରିବେ ବୋଲି ମୁଁ ବିଶ୍ୱାସ ରଖୁଛି ।

□□□

# ଦେବୀ ହେଉ କି ମାନବୀ ହେଉ

## କବିତା–ଦେବୀ

## କବି–ଶ୍ରୀ ପୀତାମ୍ବର ତରାଇ

'ଦେବୀ' କବିତାଟି ମୁଁ ପଢ଼େ ଗୋଟିଏ ପୂଜାସଂଖ୍ୟା ପତ୍ରିକାରେ । ପୀତାମ୍ବର ତରାଇଙ୍କ ଏହି କବିତାଟି ମୋତେ ଚାଉଁକିନା ଛୁଇଁଦିଏ । ପ୍ରତିଷ୍ଠିତ ବିଶ୍ୱାସ ପ୍ରତି ଏହି କବିତାରେ ବଡ଼ ଆତ୍ମୀୟ ଢଙ୍ଗରେ ପ୍ରଶ୍ନଟିଏ କରାଯାଇଛି। ସାହସିନୀ ରୂପେ ପ୍ରକୀର୍ତ୍ତିତା ନାରୀର କି ବିମୂଢ଼ ଅସହାୟତା ! ଅଭିଭୂତ ହୋଇପଡ଼ିଲି ମୁଁ । କବିତାର ମୁଖ୍ୟ ଚରିତ୍ର ଜଣେ ନାରୀ, ସେ ଦେବୀ ହେଉ କି ନ ହେଉ । ସେ ନାରୀତ୍ୱର ଲାଞ୍ଛନା କବିଙ୍କ ଅନ୍ତଃକରଣକୁ ଆନ୍ଦୋଳିତ କରିଛି, ଉଦ୍‌ବୁଦ୍ଧ କରିଛି । ଜଣେ ନିକଟତର ବ୍ୟକ୍ତି ରୂପେ ଆଗେଇଆସି କବି ପ୍ରଶ୍ନ କରନ୍ତି ଓ ଭାବାନ୍ତର ସୃଷ୍ଟି କରନ୍ତି । ଦୁର୍ଗା ଦେବୀତ୍ୱର ଅହଂକାରରେ ପ୍ରସିଦ୍ଧା, ପୁରାଣାନୁସାରେ କାମୁକ ଅସୁରପୁରୁଷ ସାମ୍ନାରେ ଉଲଗ୍ନ ହୋଇ ସେ ଅସୁରକୁ ହତବୀର୍ଯ୍ୟ କରାନ୍ତି ଓ ନିଧନ କରନ୍ତି । ନାରୀ ହେଲେ ହେଁ, ତାଙ୍କର ଏତାଦୃଶ ଆଚରଣ ଯୋଗୁଁ ସେ ନିନ୍ଦନୀୟା ହୋଇ ନାହାନ୍ତି । ବରଂ ଦେବୀତ୍ୱର ଆରୋପ ହେତୁ ସେ ପ୍ରଶଂସାଯୋଗ୍ୟା ଓ ବୀରା ରୂପେ ପ୍ରସିଦ୍ଧ ।

ଦେବତାମାନେ ମିଳିତ ଶକ୍ତି ଦେଇ ଦେବୀଙ୍କୁ ସୃଷ୍ଟି କଲେ, ଅଥଚ ସେ ଶକ୍ତି ଏଡ଼େ ସାମାନ୍ୟ ! ଯାହା ଫଳରେ କାମୁକ ଅସୁର ସମ୍ମୁଖରେ ଦେବୀଙ୍କର ଉଲଗ୍ନ ନ ହୋଇ ଅନ୍ୟ ଉପାୟ ନ ଥିଲା ! କି ବିଚିତ୍ର ବ୍ୟବସ୍ଥା । ଦେବତାମାନେ ପୁରୁଷ, ଯୁଗେ ଯୁଗେ ପୁରୁଷ ଯାହା କରିଆସିଛି, ତାହାହିଁ ସେମାନେ କଲେ । ଅଥଚ 'ନାରୀଟି ବିବସ୍ତ୍ରା ହେଉ' ଦେବତାମାନଙ୍କର ଏହି ଚକ୍ରାନ୍ତ ବୁଝିପାରିଲେ ନାହିଁ ଦେବୀ, ତେଣୁ କବି ତାଙ୍କୁ ପ୍ରତ୍ୟକ୍ଷ ଭାବେ ପ୍ରଶ୍ନ କରିଛନ୍ତି । ବସ୍ତୁତଃ କବି ଏଠାରେ ପରୋକ୍ଷଭାବେ ଦେବତା/ପୁରୁଷମାନଙ୍କୁ ମଧ୍ୟ ସେମାନଙ୍କ ଆଧିପତ୍ୟ ଓ ଅବିଚାର ପ୍ରତି ସଚେତନ କରାଇବାକୁ ପ୍ରୟାସ କରିଛନ୍ତି । ପୁରୁଷ ନାରୀକୁ ଶକ୍ତିମତୀ କରି ଗଢ଼ିତୋଳିବାକୁ ଇଚ୍ଛା କରିଛି ସତ: ମାତ୍ର ସେ ଇଚ୍ଛାର ଅନ୍ତରାଳେ ରହିଛି, ନାରୀକୁ ଉଲଗ୍ନ କରାଇବାର ଷଡ଼୍‌ଯନ୍ତ୍ର । ଶକ୍ତିମତୀ, ଅସୁରସଂହାରକାରିଣୀ

'ଦେବୀ' ହେଲେ ମଧ୍ୟ ନାରୀର ଗୌରବ ଏଠାରେ ପୂର୍ଣ୍ଣାଙ୍ଗ ହୋଇ ନାହିଁ । ସେ ଦେବୀ ହେଉ କି ମାନବୀ ହେଉ, ନାନା ଭାବରେ ସେ ପ୍ରବଞ୍ଚିତା । କବିଙ୍କ ସ୍ୱରରେ ଦେବୀଙ୍କ ପ୍ରତି କୋମଳ କଟାକ୍ଷ –

> ''ଉଭା ଲଙ୍ଗଳା ହେଲ, ଅସୁର ବଧିଲ
> ଏପରି ଅସହାୟ ଅବସ୍ଥାରେ ଗଡ଼ ଜିଣିବା
> କୋଉ ବଡ଼ କଥା ଯେ ।''

ପୁରୁଷର ଅଜଗରୀ କୂଟକପଟ, ବିଭ୍ରାନ୍ତବିଚାରର ମନ୍ତ୍ରଣା ନାରୀର ଅମର୍ଯ୍ୟାଦା କରେ । ଯୁଗେ ଯୁଗେ ନାରୀର ସୁନ୍ଦର ଶରୀରକୁ ଅଧିକାର କରି କାମାନ୍ଧ ପୁରୁଷ ତାକୁ ଅସୁନ୍ଦର କରିପକାଏ । ପ୍ରତିଷ୍ଠିତ ବିଶ୍ୱାସକୁ ଭାଙ୍ଗିଦେବାର ସାହସ ସହ ନାରୀ ସ୍ଥିତିର ବିଡ଼ମ୍ବନା ପ୍ରତି ଅନୁଚ୍ଚ ବିଦ୍ରୋହ କବିତାଟିରେ ଲକ୍ଷ୍ୟଣୀୟ । କାବ୍ୟଭାଷା ସଂକ୍ଷିପ୍ତ, ଅର୍ଥବହ ଓ ଅନୁଯୋଗମୂଳକ । ପୁରୁଷପ୍ରଧାନ ସମାଜର ଚକ୍ରାନ୍ତରେ ଅତ୍ୟନ୍ତ ଶକ୍ତିମତୀ ନାରୀ ମଧ୍ୟ ଅସହାୟତା ଓ ବିଭ୍ରମର ଶିକାର ହୁଏ । ଏହାହିଁ କବିତାର ଭାବଭୂମି । ଦେବୀ ଅବଶ୍ୟ ଭାଗ୍ୟବଶରୁ ଓ ଅସୁରର ମୃତ୍ୟୁଯୋଗ ଥିବାରୁ ବିଜୟିନୀ ହୋଇପାରିଛନ୍ତି । ନଚେତ୍ ଏହି କପଟାଚାରରେ ତାଙ୍କ ନାରୀତ୍ୱ ହୁଏତ ନଷ୍ଟଭ୍ରଷ୍ଟ ହୋଇଥାଆନ୍ତା । ଏହି ବକ୍ତବ୍ୟ ଖୁବ୍ ହୃଦୟସମ୍ବେଦୀ ହୋଇପାରିଛି । ଅନ୍ୟ ଅର୍ଥରେ, ନାରୀର ଶକ୍ତି, ତା'ର ମର୍ଯ୍ୟାଦାବୋଧ ସହ ପରିଶୀଳିତ ହେବା ଆବଶ୍ୟକ । 'ଦେବୀ' କବିତାଟି ନାରୀ ଓ ପୁରୁଷ ଚରିତ୍ରର ଦ୍ୱନ୍ଦ୍ୱାତ୍ମକ ସ୍ଥିତିକୁ ପ୍ରକଟ କରି, ନାରୀର ସ୍ୱରହୀନତାକୁ ସ୍ୱରଦେଇ ପାଠକଠାରେ ଭାବାନ୍ତର ଆଣିବାକୁ ସମର୍ଥ ହୋଇଛି ।

□□□

# ଭିଡ଼ ଭିତରର ଲୋକ
## କବିତା–ଜଣେ ଅଚିହ୍ନା ଲୋକର ଠିକଣା
## କବି–ଅଭୟ ନାୟକ

ସାଧାରଣ ମଣିଷଟିଏ ସେ, ହିନ୍ଦୁସ୍ଥାନର । ତୃତୀୟ ବିଶ୍ୱର ଅଭାବୀ ବ୍ୟକ୍ତିଟିଏ, ତା'ର ସ୍ୱପ୍ନ ଅଛି, କିନ୍ତୁ ସେ ସ୍ୱପ୍ନ ଅପହୃତ । ସାମାଜିକ ସ୍ଥିତି ହିଁ ତା'ର ସ୍ୱପ୍ନକୁ ଅପହରଣ କରିଛି । ବାତ୍ୟା, ବନ୍ୟା, ଘରପୋଡ଼ିର ଦାଉରେ ସେ ଛଟପଟ । ଅଥଚ ତା'କୁ ସେତିକିବେଳେ ଖୋଜାପଡ଼େ, ଯେବେ ବାଲଟ୍ ପେପରର କାରବାର ହୁଏ । ତା' ହାତ ଲେଖାରେ ଲୋକେ ମନ୍ତ୍ରୀପଦ ପାଆନ୍ତି, କିନ୍ତୁ ସାହୁକାରଦ୍ୱାରା ସେ ହୁଏ ପ୍ରତାରିତ । ସାଧା କାଗଜରେ ଟିପଚିହ୍ନ ଦିଏ, ବଢ଼ି ଚାଲିଥାଏ ତା'ର ଅଛିଣ୍ଡା ଋଣ, ଶୋକାତୁର ଜୀବନ । ଅଭୟ ନାୟକ ଏ କବିତାଟିରେ ଯାହା ଲେଖିଛନ୍ତି, ତା'ଠୁ ଅଧିକ କିଛି ରଖିଛନ୍ତି ଉହ୍ୟ, ପାଠକମାନଙ୍କ ବସାଣ ରସାଣର କରାମତି ଉପରେ ନିର୍ଭର କରି । ସୂଚନାତ୍ମକତା ସବୁବେଳେ ଭଲ କବିତାର ଗୁଣ । ତାଙ୍କ କବିତାର ନାୟକ ସାଧାରଣ ମଣିଷଟିଏ । ଭୋଟ ବେଳେ ମୁଣ୍ଡଗଣତିପାଇଁ ସେ ଦରକାର ପଡ଼େ ସିନା – କେହି ତା'ର ଖିଆଲ ରଖନ୍ତି ନାହିଁ । କିଏ ବା ଖିଆଲ୍ ରଖନ୍ତା ? ରାଜନୀତିକ ନେତା, ଋଣଦାତା ବ୍ୟାଙ୍କ୍ – କେହି ତାକୁ ଗଣନ୍ତି ନାହିଁ । ତେଣୁ ସେ ଅଚିହ୍ନା । କାହା ପାଖରେ ସେ ଅଚିହ୍ନା ? ଭାରତବର୍ଷର ସାଧାରଣ ଖଟିଖିଆ, କ୍ଷୁଦ୍ର କୃଷିଜୀବୀ, ଜୀବିକାର ଦୌଡ଼ରେ ଥକି ପଡୁଥିବା ମଣିଷଟିଏ । କିଏ ବା ତାକୁ ଚିହ୍ନନ୍ତା ? ଚିହ୍ନିପାରନ୍ତି କବି । ବ୍ୟକ୍ତିର ଉପର ଚେହେରା, ଧୂର୍ତ୍ତପଣ, ସ୍ୱାର୍ଥାନ୍ୱେଷାକୁ ଭେଦି ଯାହାଙ୍କ ଦୃଷ୍ଟି ମଣିଷପଣିଆର ଅଭ୍ୟନ୍ତରରେ ପହଞ୍ଚିପାରେ ।

ଦୁଃଖୀ ପଧାନ ନିଜକୁ ଚିହ୍ନେଇବାକୁ ଯାଏ ନାହିଁ । ତା'ର ନାଆଁ, ଗାଆଁ, ଠିକଣା ଯଦିବା ସେ ଶେଷପଙ୍କ୍ତିରେ ନ କହିଥାଆନ୍ତା, ତେବେ କିଛି ବି କ୍ଷତି ହୋଇ ନ ଥା'ନ୍ତା । ଫରକ୍ ପଡ଼ି ନ ଥାଆନ୍ତା କିଛି । ଭିଡ଼ ଭିତରେ ନିଜର ସ୍ୱତନ୍ତ୍ର ପରିଚୟ ରଖିପାରି ନ ଥିବା ମଣିଷଟିଏ ସେ । ଲକ୍ଷକୋଟି ମଣିଷଙ୍କ ପରି । ଯା ବୋଲି, ତା'ର କ'ଣ ଅବବୋଧ ନାହିଁ ? ନିଜକୁ ସେ ଅନ୍ୟ ପାଖରେ ବିଶିଷ୍ଟ କରି ଚିହ୍ନାଇପାରେନା ସତ, ତଥାପି ସେ କହେ ତା'ର ବି ଅଛି –

''ଉଡ଼ାଣଖୋର ମନ
ବରଫ ଶୀତଳ ମଗଜ
କଂକାଳପାକଳ ଗୁଜୁରାଣ ।''

ଉଡ଼ାଣଖୋର ମନ ତା'ର ରାତିଏ ତାରାକୁ ସାଇତିବାପାଇଁ ବସେ, ଅଧାର-ଅନ୍ୱେଷାରେ ବି ଉଡ଼ିବୁଲେ । ତା'ର ଥାତିପୂର୍ଣ୍ଣ ଜୀବନ ନାହିଁ, ସେ ଉଡ଼ାଚଢ଼େଇ ପରି । ଆଖି ତା'ର ଶ୍ରାବଣ ଆକାଶ ପରି ଓଜନ ଓ ଝର୍ଝର ଲୁହର ଜନ୍ମସ୍ଥାନ । ପାଣିପାଗକୁ ଆଶ୍ରାକରି ଆମ ଦେଶର ଚାଷୀ ବଡ଼ ହୀନିମାନ ଜୀବନ ବିତାଏ । ମାଟି ମଳୁକୁଟି ପରି ଶୀର୍ଣ୍ଣ ଦେହ ତା'ର ଗୁଜୁରାଣ ମେଣ୍ଟାଇବାରେ ଧାଇଁଥାଏ । ମେଣ୍ଟିପାରେ କି ତା'ର ଗୁଜୁରାଣ ? ତା'ର ପ୍ରାପ୍ୟ ଅଚଳ ଅଧୁଲିଟିଏ । ସାଧାରଣ ଜନତାର ପ୍ରତିନିଧି 'ଦୁଃଖୀ ପଧାନ'ର ଅଭାବ, ହତାଶା, ଶୋଷିତ ଓ ପ୍ରତାରିତ ସ୍ଥିତି ପ୍ରତି କବିଙ୍କ ସମ୍ବେଦନଶୀଳ ଦୃଷ୍ଟି ସଜାଗ ହୋଇଉଠିଛି, ପ୍ରତୀକ ପରେ ପ୍ରତୀକ ଗୁନ୍ଥି ସେ ମାଳାଟିଏ ତିଆରନ୍ତି । ଚିହ୍ନାଇ ଦିଅନ୍ତି ଏଇ ନୀରବ, ଆଢ଼େଇ ରହୁଥିବା ସ୍ୱଭାବର ମଣିଷଟିକୁ । ଦୁଃଖୀ ପଧାନ ସତେକି କବି ପାଲଟି ନିଜ ପରିଚୟ ଦିଏ –

''ନିଘଞ୍ଚ ଜଙ୍ଗଲରେ ମୁଁ କେବେ
ନିଖୋଜ କାଠହଣା ଚଢ଼େଇ,
ନଈପାଖ ଭେଡ଼ା ପାଟରେ
କେବେ ଏକ ହଳିଆ ରଇତ ।''

ପୁଣି ମେହନତି ଜୀବନର, ଝାଳ ସରସର ଶ୍ରମକ୍ଲାନ୍ତିକୁ କବି 'ପଥରକଟାଳି' ଓ 'ବୁଲାବିକାଳି'ର ସ୍ଥିତି ସହ ସାମିଲ କରିଛନ୍ତି । ଅଭାବୀ, ମେହନତି ମଣିଷର ବିଡ଼ମ୍ବିତ ଆଶା, ସ୍ୱପ୍ନ ଓ ତଥାପି ତା'ର ସଚେତନ ଅସ୍ତିତ୍ୱକୁ ଏହି କବିତାଟିରେ ଗଭୀର ମନନଶୀଳତା ସହ ଆଙ୍କିଛନ୍ତି କବି । ଏହି ଅଙ୍କନରୁ ଆମେ ଦଳିତ ମଣିଷଟିକୁ ଚିହ୍ନିପାରିବା । ସମବେଦନାରେ ଆର୍ଦ୍ର ହେଉ ହେଉ ପାଠକ, କୋଉଠି କେମିତି ମନ ଭିତରେ ନିଃଶବ୍ଦରେ ତା' ତୁଣ୍ଡରେ 'ଆହା' ପଦ ଫୁଟିଉଠିବ ।

ଓଡ଼ିଆ କବିତା ରାଜ୍ୟରେ ଶ୍ରୀ ଅଭୟ ନାୟକ ଯୁବପିଢ଼ିର ଏକ ପରିଚିତ ନାମ । ତାଙ୍କ ସ୍ୱର ଓ ସାଧନାର ଆନ୍ତରିକତା ବାରିହୋଇପଡ଼େ । ତାଙ୍କ ରଚନା ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ ସ୍ୱତଃ ଉତ୍ସାରିତ ହୋଇଥାଏ ।

❑❑❑

# ସେପାଖରେ କିଛି ଅଛି

## କବିତା–ଦୃଷ୍ଟି

## କବି–ସ୍ୱପ୍ନା ମିଶ୍ର

କବିତାରେ ବର୍ଣ୍ଣିତ ବିହ୍ୱଳଭାବ ମୋତେ ବି ଉହୁଁକି ଚାହିଁବାକୁ ଖୋରାକ୍ ଯୋଗାଇଛି । ସ୍ୱପ୍ନା ମିଶ୍ରଙ୍କ 'ଦୃଷ୍ଟି' ମୋତେ ଅବଶ୍ୟ ପୂରାପୂରି ଦୃଷ୍ଟ ହୋଇ ନାହିଁ, ଅଧା ଦିଶିଛି – ବାକି ଅଧକ ପାଠକମାନଙ୍କପାଇଁ ଦୃଷ୍ଟ ହେବାକୁ ବାକି ଅଛି । ନଭଚାରୀ ପକ୍ଷିଗଣ ଯେଉଁଠିକୁ ଉଡ଼ିଯାଉଛନ୍ତି, ଯେଉଁଠି ଦୃଶ୍ୟ ଜଗତର ଆପାତ ସୀମାରେଖା ନିର୍ଦ୍ଦିଷ୍ଟ – ତା' ଅନ୍ତରାଳରେ ନିଶ୍ଚୟ ରହିଛି ଆଉ ଏକ ଜଗତ । ସେ ଜଗତ ଆଶା, ସ୍ୱପ୍ନ ଓ ପ୍ରେମର ଏକ ରହସ୍ୟ ଜଗତ । ଆମ ସୀମିତ ଜଗତ ବାହାରେ ଅସୀମ କିଛିର ଜଗତ । ସେ ଜଗତ କେଉଁପରି ? ଯାହାକୁ ହେତୁବାଦୀମାନେ ଅସ୍ୱୀକାର କରନ୍ତି, ସଂସାରୀ ମଣିଷ, ଜାଗତିକ ବାସ୍ତବତାର ମଣିଷ ଯେଉଁ ଜଗତ 'ନାହିଁ' ବୋଲି କହିଥାଏ, ୟେ ସେହି ଜଗତର ଚିତ୍ର । ଏଠାରେ ଏକ ଇଙ୍ଗିତ ବୋଧଗମ୍ୟ ହେଉଛି, ଅର୍ଥାତ୍ ଯାହା ଦୃଶ୍ୟମାନ, ତାହାହିଁ କେବଳ ସତ୍ୟ କି ? ଯାହା ଦିଶୁ ନାହିଁ, ଅନ୍ତରାଳରେ ରହିଛି, ମାତ୍ର ହୃଦୟର ଗଭୀରତାରେ, ଚେତନାର ପରିସର ଭିତରେ ଯାହା 'ସତ୍ୟ' ବୋଲି ପ୍ରତୀତ ହେଉଛି, ତାହା 'ନାହିଁ', ତାହା ସ୍ଥିତିହୀନ କିପରି ? ସେହି ଅନ୍ତରାଳର ଜଗତକୁ କବି ଡେଇଁ ପଡ଼ିଛନ୍ତି, ସେଠିକାର ଅଭିଜ୍ଞତା ଲାଭ କରିଛନ୍ତି । ଯିବା ସମୟରେ ତାଙ୍କ ପାଦରେ ବନ୍ଧନ ନ ଥିଲା । ନ ଥିଲା ବି କିଛି ପ୍ରତିବନ୍ଧକ । ସୂର୍ଯ୍ୟ ହୁଏତ ବୁଡ଼ିବାକୁ ଆଉ ବେଶି ସମୟ ନାହିଁ, କାଳ ଆଗେଇ ଚାଲିଚି ସ୍ଥିରନିଶ୍ଚିତ ବେଗରେ । ହୁଏତ ସନ୍ଧ୍ୟା ବି ଆସିଯିବ । କବି ସେହି ସେପାଖର ଜଗତରେ ବଞ୍ଚିବାର ଅବଲମ୍ବନ ସବୁକୁ ଛାଡ଼ି ଆସିଛନ୍ତି । ଡଙ୍ଗାକୁ, କାତକୁ, ଅଝାଳକୁ, ଯାତ୍ରାର ସକଳ ପାଥେୟକୁ ଛାଡ଼ି ଆସିଛନ୍ତି । ସେଠାରେ ଅଛି ନୀଳଲୋହିତ ସକାଳ, ଅଛି ପୁଣି 'ପାପରଙ୍ଗ'ର ସମୟ । 'ପାପ' ବି ସେଠାରେ ତଥାକଥିତ ପାପ ହୋଇ ରହି ନାହିଁ ।

ନୀଳଲୋହିତ ସକାଳ ଆସିବାର ଅବ୍ୟବହିତ ପୂର୍ବରୁ ଥାଏ ଯେଉଁ ଅନ୍ଧାର, ତାହା ସୁଗନ୍ଧିତ, ପୁଣି ସେଠାରେ ରହିଥାଏ ଭିଟାମାଟି – ଆତ୍ମସ୍ୱାକ୍ଷରର ପ୍ରମାଣ ।

ମନ ଓ ଦେହର ବିହ୍ୱଳତା ଓ ବିଗଳନରେ ସେଠାକାର ମୃତ୍ତିକା ସିକ୍ତ ହୋଇଥାଏ । ସ୍ୱପ୍ନାଙ୍କର ଭାଷା ସୂଚନାଧର୍ମୀ ଓ ଭାବାଭିବ୍ୟକ୍ତି ନିମିତ୍ତ ସମର୍ଥ । ତା'ର ଉଦାହରଣ ଦେଖନ୍ତୁ ।

> "ମହ ମହ ଅନ୍ଧାରରେ କେତେ ଯେ ଦୃଶ୍ୟ
> ଭିଟାମାଟିର ଦଲିଲ୍, ପ୍ରମାଣପତ୍ର,
> ଲୁହ, ସ୍ୱେଦ ଓ ମେଦରେ ଓଦା ଓଦା ମାଟି ।"

ଏହି ଦିଗ୍‌ବଳୟ ଆରପାରିରେ ଥିବା ଜଗତର ଯିଏ ଦ୍ରଷ୍ଟା, ଯିଏ ଭୁକ୍ତଭୋଗୀ, ତା' ଆଖିରେ ଚମକ ଖେଳିଯାଉଛି, ପ୍ରତ୍ୟୟ ଉଇଁ ଉଠୁଛି । ଅଥଚ, ଅନ୍ୟମାନେ ତାହା ବୁଝୁ ନାହାନ୍ତି, ଜାଣୁ ନାହାନ୍ତି, ତେଣୁ ଅସ୍ୱୀକାର କରୁଛନ୍ତି । ତେବେ, ସେମାନଙ୍କ ସ୍ୱୀକାର ଅସ୍ୱୀକାର ପ୍ରତି କବି ଉଦାସୀନ । ସେ କେବଳ ଏତିକି କହୁଛନ୍ତି ଯେ, ଅନ୍ତରାଳର ସେହି ଅଦୃଶ୍ୟ ଜଗତ ସତ୍ୟ, ଏପରିକି ଦୃଷ୍ଟଜଗତଠାରୁ ତାହା ଅଧିକ ସତ୍ୟ ଏବଂ ଆନ୍ତରିକ । ଜୀବନର ବହୁ ମହାର୍ଘ ଭାବୋପଲବ୍‌ଧିର ବୀଜ ସେହି ମାଟିରେ ନିହିତ ରହିଛି । ସେଇଥିପାଇଁ କବି ସ୍ୱତନ୍ତ୍ରଭାବରେ ସେ ପାଖର ଜଗତ ପ୍ରତି ଆସ୍ଥାବାନ୍ ଓ ଆକୃଷ୍ଟ ହୋଇଛନ୍ତି । ସେପାଖକୁ ଚାହିଁବା ନିମିତ୍ତ, ତା'ଠାରେ ଦୃଷ୍ଟି ନିବଦ୍ଧ କରିବାପାଇଁ କବି ନିଆଁ ଉପରେ ପାଦ ଥାପିବାର ଜ୍ୱାଳା ଓ ଯନ୍ତ୍ରଣାକୁ ଆପଣେଇ ନେବାକୁ ଶ୍ରେୟ ମନେକରନ୍ତି ।

'ପ୍ରଚଣ୍ଡାନଳେ ପଥ ଚାଲିବାର' ଜ୍ୱାଳା ଏବଂ ସାହସକୁ ବରଣ କରିନିଅନ୍ତି କବି, ତେଣୁ ସେପାଖ ଏକ ଅସାଧାରଣ ଜଗତ, ସାଧାରଣରେ ଦୃଷ୍ଟ ନୁହେଁ ସିନା, କବିଙ୍କ ଅନ୍ତରାତ୍ମାରେ ତା'ର ଅବସ୍ଥିତି ଏକାନ୍ତ ସତ୍ୟ । ସେହି ରହସ୍ୟଜଗତର ଚିତ୍ର ଆଙ୍କିବାରେ ନିମଗ୍ନା ସ୍ୱପ୍ନାଙ୍କ କବିତାରେ ସାର୍ଥକତା ପ୍ରଚୁର । ତାଙ୍କର ପ୍ରକାଶଭଙ୍ଗୀ ଖୁବ୍ କଳାତ୍ମକ । ଓଡ଼ିଆ କବିତା ତାଙ୍କ ହାତରେ ସମୃଦ୍ଧି ଲାଭ କରିବ ବୋଲି ଆମର ପ୍ରତ୍ୟୟ ଜାଗିବା ସ୍ୱାଭାବିକ ।

❑❑❑

# ନିରାପତ୍ତାରହିତ ସମୟ
## କବିତା–ଚନ୍ଦ୍ରଭାଗା, କଇଁଛ ଓ କାର୍ଗିଲ
## କବି–ଶ୍ରୀ ଦୀପକ ସାମନ୍ତରାୟ

ସମୟ ପରିବର୍ତ୍ତିତ ହୋଇଚାଲିଛି – କାଳଚକ୍ର ଘୂରିଯାଉଛି । ବନଫୁଲ, ଉଦ୍ୟାନ ଫୁଲଠାରୁ ବର୍ତ୍ତମାନ ପ୍ଲାଷ୍ଟିକ୍ ଫୁଲର ଚାହିଦା ବଢ଼ିଯାଇଛି । ପ୍ରକୃତି କୋଳରେ ଲାଳିତ ମଣିଷ ଯନ୍ତ୍ରଦାନବ ତିଆରିଛି ଓ ତାହାଦ୍ୱାରା କବଳିତ ହୋଇଯାଇଛି । ଆଜି ମଣିଷ ପାଲଟିଯାଇଛି ଯନ୍ତ୍ର । ଦୟାମାୟାହୀନ, ସ୍ୱାର୍ଥସର୍ବସ୍ୱ, ସୁବିଧାବାଦୀ ହୋଇପଡ଼ିଛି । ତା'ର ଏତାଦୃଶ ଆଚରଣରେ ମଣିଷ ସମାଜ ଓ ପ୍ରକୃତିଜଗତ ଉଭୟେ ଆହତ ଓ ଅତିଷ୍ଠ । କଇଁଛ ଗୋଟିଏ ନିରୀହ ପ୍ରାଣୀ, ଅଥଚ ଏକାଗ୍ରତା ନିମିତ୍ତ ସେ କିମ୍ବଦନ୍ତୀୟ ହୋଇଯାଇଛି । ଘୁଷୁରି ଘୁଷୁରି ନଗଣ୍ୟ ଅଗ୍ରଗତି କରୁଥିବା କଇଁଛ ନିଷ୍ଠାପର ଓ କର୍ତ୍ତବ୍ୟନିରତ । ଆତ୍ମରକ୍ଷା ନିମିତ୍ତ ପ୍ରକୃତି ତା' ଶରୀରକୁ ଶକ୍ତ ଆବରଣ 'ଖୋଳପା'ରେ ଆବୃତ କରିଛି । କିନ୍ତୁ ଆଜି ଯନ୍ତ୍ରଚାଳିତ ଟ୍ରଲରର ଧକ୍କାରୁ ତା'ର ଖୋଳପା ତାକୁ ରକ୍ଷା କରିବା ନିମିତ୍ତ ସମର୍ଥ ନୁହେଁ । ଧୀବରଙ୍କ ନାଇଲନ୍ ଜାଲରୁ ତା'ର ମୁକ୍ତି ନାହିଁ । ପ୍ରକୃତିପ୍ରଦତ୍ତ ତା'ର ନିରାପତ୍ତା ଆଜି ଯନ୍ତ୍ରର ବ୍ୟୂହ ମଧ୍ୟରେ ପରାସ୍ତ । ସେ ଅକାଳମୃତ୍ୟୁ ଲଭୁଛି । ସେତିକି ନୁହଁ, ସାଧାରଣ ପଶୁପକ୍ଷୀମାନଙ୍କ ଜୀବନରକ୍ଷାର ବିଧି ଆଜି ବହୁ ଭାବରେ ପରାଭୂତ – କେତେକ ଭୂପୃଷ୍ଠରୁ ନିଶ୍ଚିହ୍ନ ହୋଇଯିବାର ବିପଦ ମଧ୍ୟ ଦେଖାଦେଇଛି ।

ଏକଦା ପଶାଖେଳରେ ଉଜୁଡ଼ି ଯାଇଥିଲା ସାମ୍ରାଜ୍ୟ । ଆଜି ମଧ୍ୟ ପଶାପାଲିର ରଙ୍ଗ, ରୂପ ନକ୍‌ସା ବଦଳି ଯାଇଛି । ଖେଳ ହୋଇଯାଇଛି ଉଦ୍ଦେଶ୍ୟମୂଳକ, ଅମାନବିକ ।

ମଣିଷ ଜାତିର ଅଗ୍ରଗତି ପଥରେ ଶୁଦ୍ଧ, ସରଳ ପ୍ରାକୃତିକତା ଧ୍ୱସ୍ତ ହୋଇଛି । ସମୟ, ଜୀବନଧାରା, ବିବେକ ଓ ବିଶ୍ୱାସ ପରିବର୍ତ୍ତନର ଶିକାର ହୋଇଛି । ଚନ୍ଦ୍ରଭାଗା ମୁହାଁଣରେ ସମୁଦ୍ରରୁ ଭାସିଆସି ଅଗଣିତ ଅଲିଭ୍ ରିଡ୍‌ଲେ କଇଁଛଙ୍କ ଶବ ପଡ଼ିରହିଛି । ମଣିଷର ଯନ୍ତ୍ରବତ୍ ଅସ୍ତିତ୍ୱ ତାକୁ ଏତେ ବେଶି

ଅମାନବିକ ଓ ସ୍ୱାର୍ଥସର୍ବସ୍ୱ କରିଛି ଯେ, ନିଜ ଚାରିପାଖର ଦୁଃଖୀ, ନିରନ୍ନ, ଅସହାୟଙ୍କ ପ୍ରତି ସେ ବୀତସ୍ପୃହ, ନିର୍ବିକାର ଓ ଦରଦହୀନ । ଏପରିକି ଗର୍ଭସ୍ଥ କନ୍ୟାଭ୍ରୂଣକୁ ହତ୍ୟା କରିବାରେ ମଧ୍ୟ ତତ୍ପର । ଏଭଳି ଭ୍ରୂଣହତ୍ୟା ନିମିତ୍ତ ପିତାମାତା ମଧ୍ୟ ଉତ୍ସୁକ । କାରଣ, ବିବାହ ବଜାରରେ ଦର କଷାକଷିର ଯୂପକାଠରେ ବଳିପଡ଼ିବା ପୂର୍ବରୁ, 'ମୂଳୁ ମାଇଲେ ଯିବ ସରି' ନ୍ୟାୟରେ କନ୍ୟାର ଜନ୍ମକୁ ନିଷେଧ କରାଯାଉଛି । ଏହି ପ୍ରକାର ସକଳ ଅବିବେକିତା ଓ ଅମାନୁଷିକତା ଜୀବନ ପ୍ରତି ମଣିଷର ବିଶ୍ୱାସକୁ ଦୋହଲାଇ ଦେଉଛି । ଏହି ଅମାନବିକତା ମଣିଷକୁ ଧର୍ମାନ୍ଧ କରିପକାଇଛି । ସହାବସ୍ଥାନକୁ ପଦାଘାତ କରି ବ୍ୟକ୍ତି ସନ୍ତ୍ରାସ, ଯୁଦ୍ଧ ଓ ହତ୍ୟା ନିମିତ୍ତ ପାଗଳ ହୋଇଉଠିଛି । ପ୍ରତାରଣାର ଶିକାର ହୋଇ ଭାରତୀୟ ସୈନ୍ୟ କାର୍ଗିଲ୍‌ରେ 'Sitting Ducks' ପରି ନିହତ ହୋଇଛନ୍ତି । ଏସବୁ ପରିପ୍ରେକ୍ଷୀରେ କବିଙ୍କ ନିବିଷ୍ଟ ଚେତନା ଉଚ୍ଚାରଣ କରିଛି – ସହଜ, ସ୍ୱାଭାବିକ ଅନ୍ତରଙ୍ଗତା, ମାନବିକତା ଓ ନିରାପତ୍ତା ଏବେ ପରାହତ । ସକଳ ସମ୍ଭାବନା ଓ ଜୀବନାଦର୍ଶ ପରାସ୍ତ –

> "ନିରାପଦ ନୁହେଁ ଆଉ ଏବେ
> କଇଁଛ ପିଠିର ଶକ୍ତ ଖୋଳପା
> ଆଦର୍ଶର ଅମ୍ଳାନ ଚାଦର
> ନିଜ ଦୁନିଆରେ ନିଜେ ଥିବାର
> ଅବ୍ୟର୍ଥ ଆଶ୍ୱାସନା ।"

ନିଜ ଜୀବନ ଓ ଜୀବନର ସମ୍ଭାବନା ସମ୍ପର୍କରେ ମଣିଷ ଆଜି ସନ୍ଦିହାନ । ଏକ ବିରୁଦ୍ଧ ବାତାବରଣ ଭିତରେ ବଞ୍ଚୁଥିବା ମଣିଷର କେଉଁ ନିରାପତ୍ତା ବା ରହିଛି ? ସ୍ନେହ, ବିଶ୍ୱାସ, ତ୍ୟାଗ, ଆତ୍ମୀୟତାଦ୍ୱାରା ପ୍ରତିଷ୍ଠିତ ସେହି ପୁରାଣ–ମାନବତା, ପ୍ରକୃତି ଓ ମଣିଷର ଏକାତ୍ମତା ଆଜି ବିପନ୍ନ । ରକ୍ଷାକବଚ ରୂପେ ପୂର୍ବର ଆତ୍ମବିଶ୍ୱାସ ଓ ବିଚାରବୋଧ ଆଜି ଅନ୍ତର୍ହିତ । ମଣିଷ ସ୍ୱାର୍ଥାନ୍ଧ ହୋଇ ପ୍ରକାରାନ୍ତରେ ନିଜ ସ୍ୱାର୍ଥମୂଳରେ ହିଁ କୁଠାରାଘାତ କରୁଛି ।

ସମାଜ ସମଗ୍ର ମଣିଷ ଜାତିର ଏକ ମୂର୍ତ୍ତ ରୂପ । ସମୟ ସ୍ରୋତ ସହ ସମାଜର ପରିବର୍ତ୍ତନ ଘଟିଥାଏ । ମାତ୍ର ଯୁଗୋପଯୋଗୀ, ଗଠନମୂଳକ ପରିବର୍ତ୍ତନ ମଣିଷ ପ୍ରାଣରେ ବିଶ୍ୱାସ ଆଣେ, ନିର୍ଭୀକତା ଭରିଦିଏ । ନିରାପତ୍ତାରହିତ ଏହି ସମୟକୁ ଜଣେ ଯଥାର୍ଥ ମଣିଷ ହୃଦୟଙ୍ଗମ କରୁଛି – ମାନବିକତାର ନିଃଶ୍ୱାସରେ ଯିଏ

ବଞ୍ଚେ । କବି ଦୀପକ ଅନୁରୂପ ଅବବୋଧ ନେଇ କହନ୍ତି ଯେ, ଚିରଦିନର ସେ ରକ୍ଷାକବଚ ଆଜି ଦୀର୍ଣ୍ଣ । ମଣିଷ ପାଇଁ ଆଶ୍ୱାସନା ଆଉ ସହଜ ନୁହେଁ ।

ମୂଳତଃ କବିତାଟିରେ ଏକ ବିଭଙ୍ଗକାଳର ଚିତ୍ର ଉତ୍କୀର୍ଣ୍ଣ । ସେଠାରେ ଅଛି ଯୁଦ୍ଧ, ପ୍ରତାରଣା, ନିର୍ଦ୍ଦୟତା, ଅବିବେକିତା ଓ ଅର୍ଥଲୋଭ । ଫଳରେ ମାନବିକତା ବିରଳ ହୋଇପଡ଼ିଛି । ହୁଏତ ଏ ଚିତ୍ରଗୁଡ଼ିକ ନିଃସୃତ ହୋଇଛନ୍ତି କବିଙ୍କ ନିରୀକ୍ଷଣରୁ, ବିଚାରବୋଧରୁ । କିନ୍ତୁ ଏଗୁଡ଼ିକ କବିଙ୍କଠାରୁ ଅଧିକ ସମ୍ବେଦନା ଦାବି କରନ୍ତି । ମନନଶୀଳ ଅଥଚ ଖିଆଲୀ କବି ଦୀପକ ଏମାନଙ୍କ ଦାବିକୁ ପୂରଣ କରିବେ କେବେ ?

❑❑❑

# ବିଧାତାଠୁ ଅକୃପଣ

## କବିତା–ମହାନାରୀ, ସଂ. ଶଙ୍ଖନାଭି ଓ ଅନ୍ୟାନ୍ୟ କବିତା

## କବି–ହରିହର ମିଶ୍ର

ଅଗ୍ରଜ କବିଙ୍କ କୃତି ଉପରେ ଲେଖିବାର ଧୃଷ୍ଟତା ମୋର ଅନେକ ଦିନଠାରୁ ରହିଛି । ପ୍ରଥମେ କବି ସୀତାକାନ୍ତ, ନୃସିଂହ ରଥ, ନିତ୍ୟାନନ୍ଦ ନାୟକ, ବିଜୟିନୀ ଦାସଙ୍କ କୃତିକୁ ସମୀକ୍ଷା କରିବାଠାରୁ ଆରମ୍ଭ କରି କବି ରମାକାନ୍ତ, ଜୟନ୍ତ ଓ ଜଗନ୍ନାଥ ପ୍ରସାଦ ଦାସଙ୍କ ପର୍ଯ୍ୟନ୍ତ ସକଳ କବିକୃତିକୁ ବିଶ୍ଳେଷଣ କରି ମୋର ଆବେଗାତ୍ମକ ଓ ସମୀକ୍ଷାତ୍ମକ ଦୃଷ୍ଟିକୁ ଲିପିବଦ୍ଧ କରିଛି । ଆହୁରି ବି ଇଚ୍ଛା ଅଛି, କେତେକ ସାମସମୟିକ ତଥା ଅଗ୍ରଜ ପ୍ରିୟକବିଙ୍କ ରଚନାକୁ ସମୀକ୍ଷା କରିବି, ମୋତେ କ'ଣ ଭଲ ଲାଗିଛି, ନ ଲାଗିଛି, ତାହା ଉପସ୍ଥାପନ କରିବି । ତେବେ, ଖୁବ୍ ଓଜନଦାର, ଆଳଙ୍କାରିକ ବିଶ୍ଳେଷଣ ଦୃଷ୍ଟିକୁ ମୁଁ କବିମାନଙ୍କଠାରେ ଲଗାଇ ନାହିଁ । ମୁଁ ଏକଥା ବି ଜାଣେ ଯେ, କବିତା ନିଜେ ନିଜର ମୂଲ୍ୟ ପ୍ରତିଷ୍ଠା କରିବ । ମାତ୍ର ବିଭିନ୍ନ ଅନୁଷ୍ଠାନ, ପତ୍ରପତ୍ରିକାଙ୍କ ଅନୁରୋଧ ଓ ଆଗ୍ରହକୁ ମାନିନେଇ ମୁଁ କବିତା ବିଶ୍ଳେଷଣରେ ମନ ଦେଇଛି । ନଚେତ୍ ଖାଲି ଅଧ୍ୟାପିକା ସୁଲଭଭଙ୍ଗୀରେ କବିତା ବ୍ୟବଚ୍ଛେଦ କରିବାକୁ ମୁଁ ପସନ୍ଦ କରେ ନାହିଁ । ବର୍ଷ ବର୍ଷ ଧରି କବିତା ପଢ଼ିବା ଓ ଲେଖିବା ଭିତରେ ମୋ ଆଖିକୁ ଯାହା ଦିଶିଯାଏ, ମନକୁ ଯାହା ଘେନିନିଏ, ତା' ଭିତରେ ଆବେଗାତ୍ମକ ଭଲ ପାଇବା ଓ ସମୀକ୍ଷାତ୍ମକ ପଦ୍ଧତି ମିଶି ରହିଛି ନିଶ୍ଚୟ । ତେବେ ପ୍ରଥମରୁ କବିକୃତିକୁ ସମ୍ମାନ କରି, ଶ୍ରଦ୍ଧା କରି ହିଁ ତାହାକୁ ବ୍ୟବଚ୍ଛେଦ କରିବା ନିମିତ୍ତ ମୁଁ ପ୍ରୟାସ କରିଥାଏ ।

ସମ୍ବାଦପତ୍ର ବିଜ୍ଞାପିତ କରିଛି ଓ ନିଜେ ଭାରତର ମାନବ ସମ୍ବଳ ବିକାଶ ବିଭାଗ ମନ୍ତ୍ରୀ ଜଣାଇଛନ୍ତି ଯେ ୨୦୦୧ ବର୍ଷଟି ନାରୀ ସାମର୍ଥୀକରଣ ସମ୍ବତ୍ସର (Women Empowerment Year) । ସେଥିପାଇଁ ନାରୀଙ୍କୁ ନେଇ କିଛି ଲେଖାଯାଉ ବୋଲି ମୁଁ ସ୍ଥିର କଲି । ମୂଳତଃ କବି ହରିହର ମିଶ୍ରଙ୍କ 'ମହାନାରୀ' କବିତାଟି ମୋତେ ଭଲ ଲାଗିଥିଲା । 'ଶଙ୍ଖନାଭି' ସଙ୍କଳନ ପୂର୍ବରୁ ପଢ଼ିଥିଲି, ମାତ୍ର ଏଇ 'ମହାନାରୀ' କବିତାଟି ଦ୍ୱିତୀୟ ମୁଦ୍ରଣରେ ସଂଯୋଜିତ ନୂଆ କବିତା । ଏହି ଶୀର୍ଷକରେ ଯୁଗପତ୍ ଉଚ୍ଚାରିତ ବ୍ୟଙ୍ଗ ଓ କାରୁଣ୍ୟ ମୋତେ ଆକୃଷ୍ଟ କଲା ।

କବି ହରିହରଙ୍କ ଏକ ଦୀର୍ଘ କବିତା 'ଶଙ୍ଖନାଭି'ର ଆବୃତ୍ତି ମୁଁ ପ୍ରଥମେ ଶୁଣେ ୧୯୬୪ ମସିହା ଯୁବଲେଖକ ସମ୍ମିଳନୀରେ । ପରେ ପରେ ତାଙ୍କ କବିତା ପଢ଼ିଛି । ସାହିତ୍ୟ, କବିତା ସମୀକ୍ଷା କାଳରେ ମଧ୍ୟ ପଢ଼ିବାକୁ ହୋଇଛି । 'ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ' ପୁସ୍ତକ ରଚନା କାଳରେ ଗରୀୟାନ୍ ଓ ବଳୀୟାନ୍ ପ୍ରାୟ ସମସ୍ତ କବିଙ୍କ କବିତା ମୁଁ ତନ୍ନ ତନ୍ନ ପଢ଼ିଛି, ଦାୟ ବି ପଡ଼ିଛି ସେଥିପାଇଁ । 'ମହାନାରୀ' ଏବେ ପ୍ରଥମ ଥରପାଇଁ ପଢ଼ିଲି । କେତେକ ଫିଚର ପତ୍ରିକାରେ ମାହାରୀମାନଙ୍କ ନୃତ୍ୟ ଓ ଏହି ପରିବର୍ତ୍ତିତ ପରିସ୍ଥିତିରେ ସେମାନଙ୍କ ଜୀବନଯାତ୍ରାର ବୃତ୍ତାନ୍ତ ବି ପଢ଼ିଥିଲି । ଲାଭଖୋର ସମାଜ ବ୍ୟବସ୍ଥା, ଅବକ୍ଷୟୀ ଧର୍ମଚେତନା ଓ ମାନବିକତାର ସଙ୍କଟ ମଝିରେ ମାହାରୀ ଯେ 'ମହାନାରୀ' ପାଲଟି କବିଙ୍କ ଲେଖନୀକୁ ସ୍ପର୍ଶ କରିଛି, ଏହା ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ । କବି ହରିହର ଓଡ଼ିଆ ଜାତିର ସଂସ୍କାର, ଧର୍ମ ଓ ଅଧ୍ୟାତ୍ମଚେତନା ପ୍ରତି ସଚେତନ । ପ୍ରାରମ୍ଭିକ କାବ୍ୟ ଜୀବନରୁ ପୁରୀ, ଜଗନ୍ନାଥ ମହାପ୍ରଭୁ ଓ ଓଡ଼ିଶାର ଐତିହ୍ୟ ତାଙ୍କର କାବ୍ୟର ପୃଷ୍ଠଭୂମି ରୂପେ ସ୍ୱୀକୃତ । ଜଗନ୍ନାଥ ଚେତନା, ପରମ୍ପରା ଓ ପୁରୋଦୃଷ୍ଟିକୁ ନେଇ ତାଙ୍କ କାବ୍ୟଜଗତ ସୁସଙ୍ଗଠିତ । ବହୁ କବିତା ସଙ୍କଳନର ରଚୟିତା, 'ଅନାମ'ର ଅନ୍ୟତମ ସ୍ରଷ୍ଟା ରୂପେ ଚିହ୍ନିତ ଅଗ୍ରଜ କବି ହରିହରଙ୍କ ଗୋଟିଏ ମାତ୍ର କବିତା ପ୍ରତି ମୋର କାବ୍ୟିକ ପ୍ରତିକ୍ରିୟା ପ୍ରକାଶ କରିବାକୁ ମୁଁ ଏଠାରେ ପ୍ରସ୍ତୁତ ହୋଇଛି ।

ଶଶି, ପରଶମଣି, ମାଣିକ, ମୁକ୍ତା, ଚାନ୍ଦ ଓ କୋଇଲି – ଓଡ଼ିଆଣୀଙ୍କର ସୁନ୍ଦର ନାଆଁ ସବୁ (ଫିଚରରେ ପଢ଼ିଥିବା ଅନ୍ୟତମା ମାହାରୀ ହରିପ୍ରିୟାଙ୍କୁ ମୁଁ ଏକତ୍ର କରୁଛି) – ଗୀତ, ସୁର ଓ ଛନ୍ଦରେ ପଟୁତା ଲାଭ କରିଥିବା ଓଡ଼ିଆ ଝିଅସବୁ, ସେମାନେ ମାହାରୀ । ସେମାନେ ଅନୂଢ଼ା ରହିବେ, ଶ୍ରୀଜୀଉଙ୍କ ପହଡ଼ ପୂର୍ବରୁ ନାଚିବେ, ଗୀତଗାଇ ତାଙ୍କୁ ଶୁଆଇ ପକାଇବେ । ଠାକୁରଙ୍କ ଅଙ୍ଗଲାଗି ବୋଲି ସେମାନେ ଭକ୍ତି ଓ ସମ୍ମାନର ହକ୍‌ଦାର । ହେଲେ ଯୁଗ ବଦଳିଛି, ଈଶ୍ୱରଙ୍କଠାରୁ ମଣିଷର ଆଖି ଫେରିଛି, ହାତ ଖସିଛି । ନିତ୍‌ସେଙ୍କ 'God is dead' ସମାଜରେ ଭାବାନ୍ତର ସୃଷ୍ଟି କରିଛି । ଏପରି କାଳରେ ମାହାରୀଙ୍କ ଖାତିର୍ କମିଛି, ହ୍ରାସ ପାଇଛି ସେମାନଙ୍କ ସାମାଜିକ ସମ୍ମାନ । ଦେବାର୍ପିତା ନାରୀମାନଙ୍କୁ କିଏ ଗୁରୁତ୍ୱ ଦେଉଛି ? ସେମାନଙ୍କର ଅଛି ସ୍ୱାମୀର ଜୋର୍‌ଦାର୍ ସାହାପକ୍ଷ, ନା ଅଛି ଅର୍ଥବଳ ? ଅଥଚ ଯେଉଁ ସମାଜ ଦିନେ ଭକ୍ତି ସମ୍ମାନ କରୁଥିଲା, ତାହା ଆଜି ଅନୁପସ୍ଥିତ । ନିଃସହାୟା ନାରୀମାନଙ୍କ

ମଧ୍ୟରେ ପରିଗଣିତା ମାହାରୀ, ଅବହେଳିତା, ଲାଞ୍ଛିତା । 'କୃଷ୍ଣ ଆଶ୍ରେ କରି ସୁବିଦ୍ୟା ଆଚରି' ମଧ୍ୟ ତା'ର ଉତ୍ତମ ଗତି ନାହିଁ । ବୟସ ହେଲା, ମାହାରୀ ଭୂମିକା ତୁଲାଇବାର ସାମର୍ଥ୍ୟ ଗଲା, ସେ ଭୂମିକାର ଆବଶ୍ୟକତା ମଧ୍ୟ ଅନୁଭୂତ ହେଲା ନାହିଁ ପୂଜାର୍ଚ୍ଚନା କାଳରେ । ମାହାରୀ ଗୋଷ୍ଠୀ ଦିଗହରା ହୋଇପଡ଼ିଲେ । କବି ତାଙ୍କୁ ହୁଏତ ମାହାରୀ ପ୍ରତି କରୁଣାବଶତଃ ହେଉ ବା ବ୍ୟଙ୍ଗ କରିବାକୁ ଯାଇ 'ମହାନାରୀ' ରୂପେ ଅଭିହିତ କରିଛନ୍ତି । 'ମହାନାରୀ' ଶବ୍ଦରୁ ଅପଭ୍ରଷ୍ଟ 'ମାହାରୀ' ହୋଇଥିବାରୁ କବି ହୁଏତ ଏପରି ଏକ ବିଶିଷ୍ଟତା ପ୍ରଦାନ କରିଛନ୍ତି । 'ମହାନାରୀ'ର ମୂଳ ଅର୍ଥର ବିପରୀତ ଅର୍ଥକୁ ସୂଚିତ କରୁଛି ବର୍ତ୍ତମାନର 'ମାହାରୀ'ର ସ୍ଥିତି ।

ନାରୀର ଦୈନନ୍ଦିନ କର୍ମ ଅଇଁଠା ବାସନ ମାଜିବା । ତାହା ଯଦି ନିଜ ଘରର ନ ହୁଏ, ତେବେ ନିଶ୍ଚୟ ଅସମ୍ମାନଜନକ । ଏହି ନିଉଛୁଣା କାମରେ ନିୟୋଜିତା ଆଜିର ମହାନାରୀ (ମାହାରୀ) । ତା' ଜୀବନର ବିଡ଼ମ୍ବନା ଦୟନୀୟ ଭାବରେ ସ୍ପଷ୍ଟ । ଶ୍ରୀମନ୍ଦିରରେ ନୃତ୍ୟ ଏବେ ଅପ୍ରାସଙ୍ଗିକ, ଭକ୍ତିମତ୍ତା, ଆଡ଼ମ୍ବରରେ ବିଧିବିଧାନରେ ନିଷ୍ଠା ଅପେକ୍ଷା ଲୋକାଚାର ଅଧିକ । ନୃତ୍ୟ ଉପାସନାରେ କଳଙ୍କି ଲାଗିଗଲାଣି, ନୂପୁର ପୋତି ହୋଇପଡ଼ିଲାଣି ବାଲି ଭିତରେ । ମୁରଲୀ (ନୃତ୍ୟର ସଙ୍ଗତିପାଇଁ ବାଦନ କରାଯାଉଥିବା)ରେ ଓଠର ସ୍ପର୍ଶ ନାହିଁ, ନାହିଁ ଝଙ୍କାର, ତାଳ । ମରୁଭୂମିର ସନସନ ପବନ ଡାକିଯାଉ ନାହିଁ ନର୍ତ୍ତକୀକୁ । ବରଂ ଇନ୍ଦ୍ରିୟ ବିକାରକୁ ପଞ୍ଚମକାରକୁ (ମଦ୍ୟ, ମତ୍ସ୍ୟ, ମାଂସ, ମୈଥୁନ, ମୁଦ୍ରା) ପଞ୍ଚକନ୍ୟା ରୂପରେ ଆବାହନ କରୁଛି ବଂଶୀଧ୍ୱନି । ଶ୍ରୀଜୀଉଙ୍କ ବଧୂ ମାହାରୀର ବଉଳପାଟ ଅସରପା ସାଲୁବାଲୁ ପେଡ଼ି ଭିତରେ ହୁଏତ ପୋକକଟା ଅବସ୍ଥାରେ ଥିବ । କୈଶୋର କାଳରେ ଯେଉଁ ବିଶ୍ୱାସରେ ମାହାରୀ ନିଜର ଉତ୍ସର୍ଗିତ ଜୀବନକୁ ଅତିବାହିତ କରୁଥିଲା ଆଜି ପରିବର୍ତ୍ତିତ ପଟ୍ଟଭୂମିରେ ସେ ଅନୁଭବ କରୁଛି ସେହି ବିଶ୍ୱାସ ଓ ଉତ୍ସର୍ଗପଣ ଅପାଙ୍‌କ୍ତେୟ । ତଥାପି ଜଗନ୍ନାଥଙ୍କ ନିଯୋଗରେ ଆପଣାକୁ ନିୟୋଜିତ କରିଥିବା ମାହାରୀ କ'ଣ ସ୍ୱପ୍ନ ଦେଖେନା ? ଦେଖେନା, ଅଙ୍ଗୁଳିହୀନ ମଣିଷମାନଙ୍କ ସେହି କାଠ ହାତ ସାଉଁଳି ଆଣନ୍ତା ତା'ର କାଖତଳ ? ଅବଶ୍ୟ ଦେଖେ । କେବେ ନିଃସନ୍ତାନ ମାହାରୀର ସନ୍ତାନ ରୂପରେ ସେ ଆସନ୍ତି । କହନ୍ତି – "ମାଆ ମୋର ! ତୋର କୋଳରେ ମୁଁ ଖେଳିବି, ମୋତେ ସରଲ୍‌ବଣି ଖୁଆଇ ଦେ ।"

କେବେ ବା ଅଷ୍ଟପାଟବଂଶୀ ରାଣୀଙ୍କ ଭିତରୁ ଜଣେ ବୋଲି ସେ ମାହାରୀକୁ କହନ୍ତି । ମହାମହିମ ମାହାର୍ଜା ସେ, ତାଙ୍କୁ ସ୍ୱପ୍ନରେ ଦେଖେ ଅସୂର୍ଯ୍ୟଂପଶ୍ୟା ଅକ୍ଷତଯୋନି ମାହାରୀ । ସେ ପତ୍ନୀ, ସେ ପୁଣି ପରକୀୟା ପ୍ରେମିକା । ବାର୍ଦ୍ଧକ୍ୟରେ ସେ ପାଲଟିଯାଏ ଜନନୀ । କବିଙ୍କ ଲେଖନୀରେ – ''ତମେ ମୋର ପାଟବଂଶୀ ରାଣୀ × × × ତମେ ମୋ ମାନସୀ ରାଧା ।''

କବି ଜଗନ୍ନାଥ ଓ କୃଷ୍ଣଙ୍କୁ ଏକକରି ଦେଖନ୍ତି – ରୁକ୍ମିଣୀ ଓ ରାଧା ହେବାର ସ୍ୱପ୍ନରେ ଉଚ୍ଚାଟ ହୁଏ ମାହାରୀ । ସେ କେବେ ରାସରଙ୍ଗିଣୀ ରାଧା କେବଳ ନୁହେଁ, ସେ ଗୋପିକା, ଚନ୍ଦ୍ରାବଳୀ, ପ୍ରେମପାଗଳୀ । ସ୍ୱପ୍ନର ପରିସର ଦିଗ୍‌ବିଦିଗ ବ୍ୟାପିଯାଏ । ଅସହାୟା ମାହାରୀର ମୃତ୍ୟୁକାଳରେ ଶ୍ମଶାନରେ ଠିଆ ହୁଅନ୍ତି ସ୍ୱୟଂ ମହାବାହୁ ''ମୁହଁରେ ତୋ ନିଆଁ ଦେବି / ଅବଢ଼ା ତୋରାଣି ଦେବି × × × ଆଉ କି ସମ୍ପର୍କ ଚାହୁଁ ମାହାରୀ ଲୋ...'' ସ୍ୱପ୍ନ ଆଉ ସତ୍ୟର ବିଡ଼ମ୍ବନା ଭିତରେ ବଞ୍ଚୁଥିବା ମାହାରୀର ହୀନିମାନ ପଣକୁ କବି ପରମ୍ପରା ଓ ନିଯୋଗର ମନ୍ତ୍ର ପଢ଼ି ଧନ୍ୟ କରିବାକୁ ପ୍ରୟାସ କରନ୍ତି ।

ବାସ୍ତବ ଜୀବନରେ ଏତେ ସବୁ ଭୂମିକା ନିର୍ବାହ କରି, ଦିଅଁଙ୍କୁ ବିଡ଼ିଆପାନ ଖୁଆଇ, ପହଡ଼ ପକାଇସାରି ମାହାରୀ ଫେରେ । ଫେରେ ଅଧରାତିରେ ଦୀପଟିଏ ଧରି ତା'ର ନିଃସଙ୍ଗ ବସାଘରକୁ । କାଠପୁତଳି ପରି ସେ, ଧର୍ମର ବିଧିବିଧାନରେ ତା'ର ଜୀବନ ବିଭକ୍ତ । ବାଧ ପାର୍ବଣରେ ପଶୁବଳିର ରକ୍ତକୁ ସେ ପଣତରେ ପୋଛିଦିଏ । ସେ ଦିବ୍ୟନାରୀ ରୂପେ ସେବାଧିକାର ପାଇଥାଏ । ମାତ୍ର ସେହି ନିଶାର୍ଦ୍ଧରେ ବରଫଳ ପରି ଲାଲ୍ ଆଖି ମଦ, ଗଞ୍ଜା, ଅଫିମ ନିଶାରେ ବିଭୋର ପୁରୁଷର ଲୋଭ ନିକଟରେ ସେ ତ୍ରସ୍ତ ହୋଇପଡ଼େ । ଏପରି ଏକ ବିଶେଷତ୍ୱହୀନ, ନିର୍ଯାତନାର ଭୂମିରେ ମହାନାରୀକୁ ପରିତ୍ୟାଗ କରି କବି ରହିପାରନ୍ତି ନାହିଁ । ତାକୁ ପବିତ୍ର ଆତ୍ମୋତ୍ସର୍ଗର ଚିରନ୍ତନ ମୂଲ୍ୟରେ ମୂଲ୍ୟାୟିତ କରନ୍ତି । ସେ ମହାପ୍ରଭୁଙ୍କ ଅଙ୍ଗଲାଗି ନାରୀ, ଏହା ସତ୍ୟ; ମାତ୍ର ଲମ୍ପଟ ପୁରୁଷପାଇଁ ସେ ଖଡ଼୍‌ଗଧାରିଣୀ ଚଣ୍ଡୀ । ପ୍ରମତ୍ତପୁରୁଷ ସାମ୍ନାରେ ସେ ସଂହାରିଣୀ, ସାକ୍ଷାତ୍ ଦୁର୍ଗାଦେବୀ । କବି ଅକାତର ଭାବେ ନିରିମାଖି ମାହାରୀକୁ ଛିଡ଼ା କରାନ୍ତି ଦେବୀ ରୂପରେ – ''ଯେଉଁଠି ପୁରୁଷମାନେ ଧାଇଁଆସନ୍ତି ଝାଳନାଳ / ବଟଫଳ ଭଳି ଆଖି × × × ମାହାରୀ ତୁ ଅଷ୍ଟଧାତୁ ବେଣ୍ଟଲଗା ଖଡ଼୍‌ଗ ହସ୍ତେ ଠିଆହେଉ × × × ଲମ୍ପଟ ଆଗରେ ।'' କାରଣ ନାରୀତ୍ୱକୁ ଶକ୍ତିମଣ୍ଡିତ କରିବା କବିଙ୍କର ଲକ୍ଷ୍ୟ । କବିତ୍ୱର, ସ୍ରଷ୍ଟାପଣର ଏଇ ସ୍ୱତନ୍ତ୍ର ଶକ୍ତିକୁ ସେଦିନ ଚିହ୍ନାଇଥିଲେ କବିଗୁରୁ ରବୀନ୍ଦ୍ରନାଥ ସ୍ୱରଚିତ କବିତାର ଅସହାୟା ନାୟିକା ମୁଖରେ । ତାଙ୍କ ମତରେ

କବିଠାରୁ ବିଧାତା ଅଧିକ କୃପଣ । ବିଧାତା ଯାହାକୁ ଅସହାୟା କରିଦିଏ, କବି ତାହାଂକୁ ଶକ୍ତିଯୁକ୍ତ କରାଏ । ରବୀନ୍ଦ୍ରଙ୍କ କବିତାରେ ଗ୍ରାମ୍ୟ ବାଳିକାଟିଏ ନିଜ ଅସହାୟ ସ୍ଥିତିକୁ ବ୍ୟକ୍ତ କରି ଚିଠି ଲେଖୁଛି ଔପନ୍ୟାସିକ ଶରତଚନ୍ଦ୍ରଙ୍କୁ – 'ଶରତବାବୁ ! ଉଚ୍ଚ ତୋମାର ମନ୍ / ତୋମାର୍ ଲେଖନୀ ମହୀୟସୀ / ଆମାର ଦଶା ଯାଇ ହୋକ୍ / ଖାଁଟୋ କେରୋନା ତୋମାର କଳ୍ପନା / ତୁମି ତୋ ନଓ ବିଧାତାର ମତୋ ×××'' । ସେଇ ପତି-ପରିତ୍ୟକ୍ତା ବାଳିକା ଲେଖିଥାଏ, 'ଶରତବାବୁ, ମୋର ଦୁଃଖ ତ ଘୁଞ୍ଚିବାର ନୁହେଁ, କିନ୍ତୁ ତୁମ ଉପନ୍ୟାସର ନାୟିକାକୁ ତୁମେ କଳ୍ପନାର ସ୍ପର୍ଶରେ ଶକ୍ତିମୟୀ, ସୁଖଭାଗିନୀ କରାଇବ – କାରଣ ମୁଁ ଜାଣେ, ତୁମେ ବିଧାତାଙ୍କ ପରି କୃପଣ ନୁହଁ ।''

ସେହି ନ୍ୟାୟରେ କବି ହରିହର ବିଧାତାଙ୍କ ଭଳି ନିଷ୍ଠୁର ଓ କୃପଣ ହୋଇପାରନ୍ତି ନାହିଁ । ବିଧିର ବିଧାନ ଯେଉଁ ଓଡ଼ିଶୀ ନୃତ୍ୟ ପଟ୍ଟୀୟସୀ ନାରୀକୁ ଅଣଓଡ଼ିଆ ଘରେ ଉଚ୍ଛିଷ୍ଟ ଧୁଆଏ, କବି ତାକୁ ବିପ୍ଳବିଣୀ କରି ଗଢ଼ିତୋଳନ୍ତି ଓ ତା' ହାତରେ ଅଷ୍ଟଧାତୁର ଖଡ୍‌ଗ ଧରାନ୍ତି । ମହାନାରୀର ରୂପକୁ ବିଭିନ୍ନ ସ୍ତର ମଧ୍ୟରେ, ଚିତ୍ରକଳ୍ପନା ମଧ୍ୟରେ ପ୍ରତୀକିତ କରି କବି ତାକୁ ତାହାର ନିରିମାଖି ସ୍ଥିତିରୁ ଉଠାଇ ଆଣନ୍ତି ପୂଜାବେଦୀକୁ । ଏହି ରୂପାନ୍ତରର ପ୍ରାୟୋଗିକ ସାଫଲ୍ୟକୁ ବିଚାର କରିବା ଅବାନ୍ତର । କାରଣ ଏହା ସତ୍ୟ ନ ହେଲେ ମଧ୍ୟ ସମ୍ଭାବନାମୟ । ଏହି ସମ୍ଭାବନାକୁ କେବଳ କବିଦୃଷ୍ଟି ହିଁ ଦର୍ଶନ କରିପାରେ । କାରଣ କବି ଦୃଶ୍ୟ-ବାସ୍ତବତା ମଧ୍ୟରେ ଅଦୃଶ୍ୟ-ବାସ୍ତବତାକୁ ସନ୍ଧାନ କରିପାରନ୍ତି ଏବଂ ଅଦୃଶ୍ୟ-ବାସ୍ତବତା ଦୃଶ୍ୟ-ବାସ୍ତବତାଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ, ଏହା ହୃଦୟଙ୍ଗମ କରିଥା'ନ୍ତି ।

ନୂତନ ସମୟର ପରିବର୍ତ୍ତିତ ସ୍ଥିତିରେ, ଭିନ୍ନ ଏକ ବିଚାରବୋଧର ଭିତ୍ତିଭୂମି ଉପରେ, ଅବକ୍ଷୟୀ ବିଶ୍ୱାସର ଟଳମଳ ଶପଥ ସମ୍ମୁଖରେ ତଥାପି କବିଙ୍କ ଅଙ୍କିତ ମହାନାରୀ 'ଦେବୀ' ରୂପରେ ଉଦ୍ଭାସିତ ହୁଏ । କବିତାଟିର ସର୍ବତ୍ର ପରମ୍ପରା ଓ ମୂଲ୍ୟବୋଧ ସହ କବିଚେତନାର ଗଭୀର ଆତ୍ମୀୟତା ପ୍ରକଟିତ । ଏହା ଏକ କରୁଣ ରସାଶ୍ରିତ କବିତା ସତ, ମାତ୍ର ସ୍ୱପ୍ନ ଓ ଆଶାବାଦରେ ଉଜ୍ଜ୍ୱଳ । କବି ଏଠାରେ ଅଇଁଠା ବାସନ ମାଜୁଥିବା ମାହାରୀର ହାତରେ ଅଷ୍ଟଧାତୁର ଖଡ୍‌ଗ ଧରାଇ ଦେବୀ ରୂପରେ ପ୍ରତିଷ୍ଠା ଦେଇଛନ୍ତି, ସତ୍ୟ ଓ ସମ୍ଭାବନାର ସୀମାରେଖା ଲିଭେଇ ଦେବାକୁ ସମର୍ଥ ହୋଇପାରିଛନ୍ତି ।

❑❑❑

# କୁଳୀନତା ଓ ପୌରୁଷର ଯୂପକାଠରେ ବସୁଷେଣ

## କାବ୍ୟ–'ବସୁଷେଣ'ର ଶେଷାଂଶ

## କବି–ହୃଷୀକେଶ ମଲ୍ଲିକ

''କ୍ୟା ସତ୍ୟ ହୈ, ଜୟ କେ ଲିୟେ
କେଓ୍ୱଲ୍ ନହୀଁ ବଲ୍ ଚାହିୟେ ?
କୁଛ୍ ବୁଦ୍ଧୀ କା ଭୀ ଘାତ୍
କୁଛ୍ ଛଲ୍, ଛଦ୍‌ମ୍, କୌଶଲ୍ ଚାହିୟେ ?''

– 'ରଶ୍ମିରଥୀ' : କବି ରାମଧାରୀ ସିଂ ଦିନ୍‌କର

ଅଥଚ, ନା କୁଳୀନତା, ନା ପୌରୁଷ – ଏ ଦୁଇଟିରୁ କେଉଁ ଗୋଟିକ ମଧ୍ୟ ମହାଭାରତ ଯୁଦ୍ଧର ଶେଷ ପର୍ଯ୍ୟାୟରେ ବୀର କର୍ଣ୍ଣଙ୍କୁ ଅର୍ଥମୟ ମନେ ହୋଇ ନାହିଁ । ଦିନ୍‌କର୍‌ଙ୍କ ଲେଖନୀରେ ତେଣୁ କର୍ଣ୍ଣଙ୍କର ଏହି ଉପଲବ୍ଧି-କୂଟବୁଦ୍ଧି, ଛଳ, ଛଦ୍ମ, କପଟାଚାର ହିଁ ବିଜୟର ନିଶ୍ଚିତ ସୋପାନ, ମହାରଥୀ କର୍ଣ୍ଣ ଏହି ସତ୍ୟକୁ ହୃଦୟଙ୍ଗମ କରିଛନ୍ତି ।

'ମହାଭାରତ'ର ଅନ୍ୟତମ ନାୟକ 'ବସୁଷେଣ' (ଅନ୍ୟନାମ କର୍ଣ୍ଣ) ସ୍ୱ-ବୀରତ୍ୱ ଓ ପରାକାଷ୍ଠାରେ ଅପରାଜେୟ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ଜୀବନଚର୍ଯ୍ୟା ରହସ୍ୟମୟ, ସଙ୍କଟପୂର୍ଣ୍ଣ ଘଟଣାମାନଙ୍କଦ୍ୱାରା ଗ୍ରଥିତ ହୋଇଥିବାର ବ୍ୟାସଦେବ ରଚନା କରିଯାଇଛନ୍ତି । ପରବର୍ତ୍ତୀକାଳରେ ବିଭିନ୍ନ କବିମାନଙ୍କଦ୍ୱାରା ବହୁ ପ୍ରକ୍ଷେପ ଏଥିରେ ସନ୍ନିବିଷ୍ଟ । ଯେଉଁଥିରେ ଯେତେ ଅଧିକ ରହସ୍ୟମୟତା ଥାଏ, ସେତେ ଅଧିକ ପ୍ରକ୍ଷେପର ସୁଯୋଗ ସେଥିରେ ନିହିତ ଥାଏ । ତେଣୁ କର୍ଣ୍ଣଙ୍କ ଚରିତ୍ର ପ୍ରକ୍ଷେପବହୁଳ । ପୁରାଣ ଯେହେତୁ ଇତିହାସ ନୁହେଁ, ପୁରାଣ ମଧ୍ୟରେ ବହୁ ଉହ୍ୟ ସ୍ଥାନ ରହିଥାଏ – ବହୁ କଳ୍ପନାର ସଂଯୋଗ ନିମିତ୍ତ ଆମନ୍ତ୍ରଣ ରହିଥାଏ, ତେବେ ବ୍ୟାସଙ୍କ ରଚନାକାଳରୁ ଏଯାବତ୍, ପାଠକ ଓ ରଚନାକାରଗଣ କର୍ଣ୍ଣଙ୍କୁ ପ୍ରାଧାନ୍ୟ ଦେଇଛନ୍ତି । ନିୟତିର କ୍ରୂର ପରିହାସ-କବଳିତ ତାଙ୍କ ଜୀବନ – ସାଧନାର ମହିମା ପ୍ରତି ଆକୃଷ୍ଟ ହୋଇଛନ୍ତି, ହୋଇଛନ୍ତି ବିଗଳିତ । ବ୍ୟାସଦେବଙ୍କ ଉକ୍ତିକୁ ସସମ୍ମାନ ଉଦ୍ଧାର କରିଛନ୍ତି ସହସ୍ରବାର – 'ଦୈବାୟତ୍ତଂ କୁଳେ ଜନ୍ମଂ/ମଦାୟତ୍ତଂ ଚ ପୌରୁଷଂ' ।

ଯୁଗେ ଯୁଗେ ଭାଗ୍ୟପୀଡ଼ିତ ବିଶିଷ୍ଟ ବ୍ୟକ୍ତିଙ୍କପାଇଁ କର୍ଣ୍ଣଙ୍କ ବ୍ୟକ୍ତିତ୍ୱ ପାଲଟିଛି ଏକ ଅବିକଳ୍ପ ଉଦାହରଣ । ସେଥିନିମିତ୍ତ କେତେକେଜାଣି କାବ୍ୟ ଓ ଗଦ୍ୟ କର୍ଣ୍ଣଙ୍କୁ ନେଇ ସଂରଚିତ ହୋଇଛି । ମହାଭାରତ ପୁରାଣର ସୂର୍ଯ୍ୟଦେବ ଓ କୁନ୍ତୀପୁତ୍ର କର୍ଣ୍ଣ ଅପରିଚୟର ଘେର ଭିତରେ ଛନ୍ଦି ହୋଇଥିଲେ, ଲାଞ୍ଛନା ଭୋଗିଥିଲେ ସୁଦ୍ଧା ସେ ନିଜକୁ ଦାନଶୀଳ, ସତ୍ୟବାକ୍ ଓ ମହାରଥୀରୂପେ ପ୍ରତିଷ୍ଠିତ କରିପାରିଛନ୍ତି ।

କବି ହୃଷୀକେଶ ମଲ୍ଲିକ ଏକବିଂଶ ଶତକର ପ୍ରାରମ୍ଭରେ ମିଥ୍‌ର ଏହି ମହାରଥୀଙ୍କୁ ନେଇ 'ବସୁଷେଣ' ଖଣ୍ଡକାବ୍ୟଟି ରଚନା କରିଛନ୍ତି । ତାଙ୍କ ରଚନାରେ କର୍ଣ୍ଣ ଏକାଧାରରେ ଯୁଦ୍ଧ ଓ ପ୍ରେମ ତଥା ସାହସ ଓ ହୃଦୟବତ୍ତାର ଏକ ବିରଳ ଚରିତ୍ର ରୂପେ ପ୍ରତୀତ ହୁଅନ୍ତି । ଦ୍ୱାପର ଯୁଗରେ ଏକ ବିଶେଷ ସନ୍ଧିକ୍ଷଣରେ କର୍ଣ୍ଣ ଏକ ମହାରଥୀ ରୂପେ ଉଭା ହୁଅନ୍ତି ଏବଂ ଦ୍ରୁପଦକନ୍ୟା ଏକ ସାହସିନୀ ନାରୀର ପରିଚୟ ଦିଅନ୍ତି । ଚିରକାଳ ବୀରପୁରୁଷ ପ୍ରତି ବୀରାଙ୍ଗନାମାନେ ଓ ବୀରାଙ୍ଗନା ପ୍ରତି ବୀରପୁରୁଷଗଣ ଆକୃଷ୍ଟ ହୋଇଥାଆନ୍ତି । ଅନ୍ତତଃ ହୃଦୟରେ ପରସ୍ପର ପ୍ରତି ଶ୍ରଦ୍ଧା ଓ ସମ୍ମାନ ପୋଷଣ କରିଥା'ନ୍ତି । ତେଣୁ କର୍ଣ୍ଣ ଓ ପାଞ୍ଚାଳୀ (ଦ୍ରୌପଦୀ)ଙ୍କ ମଧ୍ୟରେ ଏପରି ପାରସ୍ପରିକ ସୌହାର୍ଦ୍ଦ୍ୟ ଅନୁକ୍ତ ହୋଇ ରହିଥିବା ଅସମ୍ଭବ ହୋଇ ନ ପାରେ । ଆମ ଓଡ଼ିଆ କବି ସାରଳା ଦାସ ତ ସ୍ୱରଚିତ ମହାଭାରତରେ 'ସତ୍ୟ ଆମ୍ବ' ଉପାଖ୍ୟାନରେ ଦ୍ରୌପଦୀଙ୍କ କଣ୍ଠରେ ଏ ପ୍ରକାର ଆକର୍ଷଣଜନିତ ଆକାଙ୍‌କ୍ଷାକୁ ଅଭିବ୍ୟକ୍ତ କରିଛନ୍ତି । ତା' ପୁଣି ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ଉଚ୍ଚାରିତ ହୋଇଛି । 'କୃଷ୍ଣାବତାର'ର ମହାନ୍ ଲେଖକ କେ. ଏମ୍. ମୁନ୍‌ସୀ ମଧ୍ୟ ଦ୍ରୌପଦୀଙ୍କ ସହ କର୍ଣ୍ଣଙ୍କର ପୂର୍ବ ପରିଚୟ ଓ ସାକ୍ଷାତ୍ ହୋଇଥିବାର ବ୍ୟକ୍ତ କରିଛନ୍ତି । ତେଣୁ ବସୁଷେଣ କାବ୍ୟରେ କର୍ଣ୍ଣଙ୍କ ହୃଦୟରେ ସଞ୍ଜୀବିତ ପାଞ୍ଚାଳୀ-ପ୍ରେମ ଖୁବ୍ ପ୍ରାସଙ୍ଗିକ । କବି ଦିନ୍‌କର୍‌ଙ୍କ ମତରେ ଯେଉଁ ସମୁଦ୍ର ଯେତେ ବେଶି ରତ୍ନଗର୍ଭା, ତା'ର ଜ୍ୱଳନ ବା ଅଗ୍ନି ତଦନୁରୂପ ତୀବ୍ର । ଯେଉଁ ପୁରୁଷର ପୁରୁଷାର୍ଥ ମହାନ୍, ତା' ହୃଦୟରେ ନାରୀ-ପ୍ରେମ-ବହ୍ନି ସେତେ ତୀବ୍ରଭାବେ ପ୍ରଜ୍ୱଳିତ । ଏହି ନ୍ୟାୟରେ ପ୍ରକ୍ଷେପକାରୀ ରଚନାକାରଗଣ କର୍ଣ୍ଣ ଓ ଦ୍ରୌପଦୀଙ୍କ ମଧ୍ୟରେ ବିଭିନ୍ନ ଘଟଣାକ୍ରମରେ ପରସ୍ପର ପ୍ରତି ସପ୍ରଶଂସଭାବ ତିଷ୍ଠି ଥିବାର ବ୍ୟକ୍ତ କରିଛନ୍ତି । ଏହା ଏକ ସ୍ୱତନ୍ତ୍ର ପ୍ରସଙ୍ଗ ଅବଶ୍ୟ ।

'ବସୁଷେଣ' କାବ୍ୟରେ କର୍ଣ୍ଣଙ୍କ ଚରିତ୍ରର ନିରୀକ୍ଷଣଦ୍ୱାରା ଯେଉଁ ମହାଭାବ ପ୍ରସ୍ଫୁଟିତ ହୋଇଛି, ତାହା ଯଥାର୍ଥରେ କୁଳ-ପରିଚୟହୀନ ଏକ ମାନବାତ୍ମାର ଊର୍ଦ୍ଧ୍ୱାୟନକୁ ସୂଚିତ କରେ । ପୁରାଣର କେଉଁ ଚରିତ୍ରଟି ବା

ସମ୍ପୂର୍ଣ୍ଣ ଦୋଷମୁକ୍ତ ? ସେହି ଅର୍ଥରେ ଦୁରାଚାରୀ ଦୁର୍ଯ୍ୟୋଧନ ପ୍ରତି କର୍ଣ୍ଣଙ୍କର ଅଟଳ ସମର୍ଥନ ମନେହୁଏ କର୍ଣ୍ଣଙ୍କ ଅହଂକାରରୁ ପ୍ରସୂତ । ଏହାସତ୍ତ୍ୱେ ମହାଦାନୀ କର୍ଣ୍ଣ ଏକ ରୂପକ (Metaphor) ପାଲଟି ଯାଇଛନ୍ତି । କୁନ୍ତୀଙ୍କ ଅବିଚାରକୁ ସେ ନିଜସ୍ୱ ନିର୍ଣ୍ଣୟରେ ସହ୍ୟ କରିଛନ୍ତି ଶେଷକ୍ଷଣପର୍ଯ୍ୟନ୍ତ । ତାଙ୍କ କପଟକୁଟୁମ୍ୱିତାକୁ, ପ୍ରପଞ୍ଚକୁ ହୃଦୟବାନ୍ କର୍ଣ୍ଣ ସ୍ୱୀକାର କରିନେଇଛନ୍ତି । ଛଳନାକାରୀ ବ୍ରାହ୍ମଣ ହାତରେ ଧରାଇ ଦେଇଛନ୍ତି ଜୀବନସୂତ୍ର – ସଜ୍ଞାନ ଓ ସଚେତନ ଭାବରେ । ଏତାଦୃଶ କାର୍ଯ୍ୟାବଳୀର ନାୟକ କର୍ଣ୍ଣ, ତେଣୁ ଅନେକ ଶାସ୍ତ୍ରକାର, ସାହିତ୍ୟପ୍ରେମୀଙ୍କ ସମ୍ବେଦନାରେ ପରିପ୍ଳୁତ ହୋଇ ମହାଭାରତର ବିକଳ୍ପ 'ନାୟକ' ରୂପେ ଅଧିଷ୍ଠିତ ହୋଇଥାଆନ୍ତି ।

କବି ହୃଷୀକେଶଙ୍କର ବିଶେଷତ୍ୱ ଯେ, ସେ ପୁରାଣର ଛାଞ୍ଚ ଉପରେ ଏକ ସାବଲୀଳ, ଅନ୍ତରଙ୍ଗ ଖଣ୍ଡକାବ୍ୟକୁ ଗଢ଼ି ଥୋଇଛନ୍ତି । ସେଥିରେ ତତ୍ସମଠାରୁ ଦେଶଜ ଶବ୍ଦର ସୁନିର୍ବାଚିତ ପ୍ରୟୋଗ, ଏକ ଅଭିନବ ଗ୍ରନ୍ଥନ ଶୈଳୀ, ଘଟଣା ଏବଂ ପରିବେଶର ସୂଚନାତ୍ମକ ସମ୍ପର୍କ କବିଙ୍କ ନୂତନ ପରିବେଷଣକୁ ଆକର୍ଷଣୀୟ କରିପାରିଛି । ମୋର ଏହି ସଂକ୍ଷିପ୍ତ ଆଲୋଚନାଟିରେ କର୍ଣ୍ଣଙ୍କ ଜୀବନର ଶେଷ ପର୍ଯ୍ୟାୟର ଚୂଡ଼ାନ୍ତ ଅବବୋଧକୁ ସଂକ୍ଷେପରେ ବିଶ୍ଳେଷଣ କରାଯାଇଛି । କର୍ଣ୍ଣ ଏକାଧାରରେ 'ରଣରଙ୍ଗ' ପୁଣି 'ରଣଛୋଡ଼୍' । ମହାରଥୀ ଭାବରେ ସେ ଥିଲେ ଆଜୀବନ ରଣରଙ୍ଗ । ମାତ୍ର ଆସନ୍ନ ଯୁଦ୍ଧକାଳରେ ତାଙ୍କ ଉପଲବ୍ଧିରେ ବ୍ୟାପକ ଓ ଆଶ୍ଚର୍ଯ୍ୟକର ପରିବର୍ତ୍ତନ ଆସିଲା । 'ରଣରଙ୍ଗ'ରୁ ସେ ପାଲଟିଗଲେ 'ରଣଛୋଡ଼୍' । କବିଙ୍କ ଉଚ୍ଚାରଣରେ – 'ଯୁଦ୍ଧ ଖାଲି ନିଏ/ ଜିତିବା ଲୋକ ବି ଫେରିଆସନ୍ତି / ଖାଲି ହାତରେ ଘରକୁ ।'' ଏହି ସହଜ ସତ୍ୟଟିକୁ ହୃଦୟଙ୍ଗମ କରିବା ନିମିତ୍ତ କେତେ ବୀରପୁରୁଷ ବୃଥାସ୍ଫାଳନରେ ଜୀବନ ନ ହରାନ୍ତି ! ଦ୍ୟୂତକ୍ରୀଡ଼ା ପରି ଏକ ପ୍ରପଞ୍ଚ ବାସ୍ତବତା ହେଉଛି କୁନ୍ତୀଙ୍କ ପୁତ୍ରସ୍ନେହ ଓ ଦୁର୍ଯ୍ୟୋଧନର ମିତ୍ରପଣ । ଚେତନା ସ୍ତରର ସଂଘାତରେ କର୍ଣ୍ଣ ଏହି ସତ୍ୟର ଆହ୍ୱାନକୁ ସାମ୍ନା କରନ୍ତି । ''ସେଦିନ ଅନାଥ ହୋଇ ନଈରେ ଭାସିଆସିବା କ'ଣ ଦ୍ୟୂତ ନୁହେଁ ମାଆପଣର ? ଓ ସର୍ବୋପରି ଅଥଳରେ ଭାସି ଯାଉ ଯାଉ / କୁଟାଖିଅ ପରି ମୋତେ ମିଳିଥିବା ହସ୍ତିନାର ସଖ୍ୟ / କ'ଣ ସବୁ ଦ୍ୟୂତ ?'' ବାରମ୍ବାର ଛଳନା, ଅସ୍ୱୀକାର ଓ ଧୂର୍ତ୍ତତାର ଯୂପକାଠକୁ ସାମ୍ନା କରିଥିବା କର୍ଣ୍ଣଙ୍କ ଚେତନାର ନବନିର୍ମାଣ ଘଟିପାରିଛି । ସେ ବୁଝିଛନ୍ତି –

"କୁଳୀନତା, ବୁନିଆଦି ବୋଲି / ମଣିଥିଲି ଯାହାକୁ ମୁଁ / ଏତେକାଳ, ଆଜି ବୁଝିଗଲି / ସେ ହିଁ ଶିକୁଳି ।" (ପୃ. ୬୮) ବୁଝାମଣାର ଏହି ସଙ୍କଟ କେତେ ବିଦ୍ୱାନ୍, ବୀରଙ୍କୁ ହା-ହତୋଽସ୍ମି କରିଥାଏ – ଜୀବନର କୌଣସି ନା କୌଣସି ବିନ୍ଦୁରେ ସେମାନେ ସଙ୍କଟାପନ୍ନ ହେବା ଅବଧାରିତ । ମଣିଷର ଚିରନ୍ତନ ଉପଲବ୍‌ଧିରୁ ଗୋଟିଏ ଧାଡ଼ି କର୍ଣ୍ଣଙ୍କ କଣ୍ଠରୁ ବିଧ୍ୱନିତ – "ମଧୁସୂଦନ ! ସ୍ୱପ୍ନଇ କ'ଣ / କେବଳ ସେଇୟା ଦିଏ, ଯାହା / ମନା କରିଦିଏ ଜୀବନ !"

ନିଦାରୁଣ ଭବିତବ୍ୟ ଦିଗକୁ ଆଗେଇ ଯାଉଥିବା ବସୁଷେଣ ପ୍ରତ୍ୟକ୍ଷ କରୁଛନ୍ତି – ଯୁଦ୍ଧରେ ଅଂଶଗ୍ରହଣ କରିବାଠାରୁ ତାଙ୍କର ପରିତ୍ରାଣ ନାହିଁ । ଯୁଦ୍ଧର ଅସାରତା ଓ ଆଚରିତ ମିଥ୍ୟାଚାର କାଳେ କାଳେ ମଣିଷକୁ ହତାଶାର ଗହ୍ୱରକୁ ଠେଲିଦେଇଛି । ବର୍ତ୍ତମାନ, ଅନ୍ତିମକାଳରେ ଆସନ୍ନମୃତ୍ୟୁ ସାମ୍ନାରେ କର୍ଣ୍ଣ ନିଜକୁ ସବୁଥିରୁ ପ୍ରତ୍ୟାହୃତ କରିନେଇ, ସେହି ଦୈବତ ସ୍ୱନ ପ୍ରତି ଉତ୍କର୍ଣ୍ଣ ହୋଇଉଠିଛନ୍ତି । ଜଣେ ବୀରପୁରୁଷର ଶେଷ ଅବଲମ୍ବନ ହେଉଛି ମୃତ୍ୟୁ ଏବଂ ମୃତ୍ୟୁକୁ ଏକ ବିହ୍ୱଳ ଅନୁଭବରେ ପରିଣତ କରୁଛି ଶ୍ରୀକୃଷ୍ଣଙ୍କ ମହାଜାଗତିକ ବଂଶୀସ୍ୱନ । ତେଣୁ କର୍ଣ୍ଣଙ୍କର ସର୍ବଶେଷ ନିର୍ଣ୍ଣୟ ବଡ଼ କରୁଣ ଅଥଚ ବଡ଼ ଦାମ୍ଭିକ – "କାଲି/ ନିଶ୍ଚେ କାଲି / ଛୋଟ ଛୋଟ ମଣିଷଙ୍କ / ଛୋଟ ଛୋଟ ହସ୍ତିନାପାଇଁ / ମୁଁ ରକ୍ତ ଦେବି, ନିଃଶ୍ୱାସ ଦେବି ।" ଏତାଦୃଶ ବିପୁଳ ଅବବୋଧରେ ଉପନୀତ ହୋଇଛନ୍ତି ମହାଦାନୀ, ମହାବୀର ବସୁଷେଣ (କର୍ଣ୍ଣ) । ପ୍ରକୃତପକ୍ଷେ ସ୍ୱେଚ୍ଛାରେ ମୃତ୍ୟୁବରଣ କରୁଥିବା ମହାରଥୀଙ୍କ ସମ୍ମୁଖରେ, ଯେ ଭୌଗୋଳିକତା କେତେ କ୍ଷୁଦ୍ର ! ଯୁଦ୍ଧ ମାନବ ଇତିହାସର ଅନିବାର୍ଯ୍ୟ ନିୟତି । ଯୁଦ୍ଧଭୂମିରେ ଅବତରଣ ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନାହିଁ, ଅଥଚ ଏହି ଯୁଦ୍ଧକୁ ନିଜ ପୁରୁଷକାରର ପ୍ରତିଷ୍ଠା ରୂପେ ଗ୍ରହଣ କରିବା ଭ୍ରମାତ୍ମକ, ଏହା ସେ ହୃଦୟଙ୍ଗମ କରିସାରିଛନ୍ତି – ତେଣୁ ସେ ବିକଳ୍ପର ସ୍ୱରୂପ ଆଙ୍କିଛନ୍ତି । ଯୁଦ୍ଧର ବିକଳ୍ପ ହୋଇପାରନ୍ତା, ମଧୁକ୍ଷରା ମାନବୀୟ ପ୍ରେମର ସଂସ୍ରବ – ଯାହା ମହାରଥୀ, ମହାମାନବଙ୍କର ହୋଇପାରନ୍ତା ମହାନତାର ସାର୍ଥକ ପରିଚୟ । କର୍ଣ୍ଣଙ୍କ ନିର୍ଣ୍ଣୟ କବିଙ୍କ ପଙ୍‌କ୍ତିରେ – "ଉଡ଼ିଆସିବା ଓ ଫେରି ବସିବାର ନିରନ୍ତରତାରେ ମୁଗ୍ଧ / ମହୁମାଛିଟିଏ ହେବାକୁ / କାହିଁକି ମଣିବ ନାହିଁ, ଇତିହାସ / ମୋ ପୁରୁଷକାର ?" ଯେ ପ୍ରଶ୍ନର ଉତ୍ତର ନାହିଁ – ଚିରକାଳକୁ ଏହା ମାନବଜାତିର ଇତିହାସ ପ୍ରତି ଏକ ଅନୁତ୍ତରିତ ପ୍ରଶ୍ନବାଚୀ ?

ପୂର୍ବରୁ କୁହାଯାଇଛି, କବି ହୃଷୀକେଶ ବହୁ ପୌରାଣିକ ତଥ୍ୟର ଗ୍ରନ୍ଥନରେ, ଦେଶଜ ଶବ୍ଦଭଣ୍ଡାର ଓ ଲୋକବିଶ୍ୱାସର ଯଥୋଚିତ ପ୍ରୟୋଗରେ ଏହି ଖଣ୍ଡକାବ୍ୟଟିରେ ଜୀବନର ବିପୁଳ ଅର୍ଥକୁ ଉନ୍ମୋଚିତ କରିଛନ୍ତି । ମାନବ ଇତିହାସରେ ଚିରକାଳକୁ, ଦାମ୍ଭିକତା, ତ୍ୟାଗ ଓ ମର୍ଯ୍ୟାଦାବୋଧର ପ୍ରତୀକ ହେଉଛନ୍ତି କର୍ଣ୍ଣ – ଯଥାର୍ଥରେ ମହାଭାରତର ନାୟକ । ତାଙ୍କ ଜୀବନସାଧନା ଉତ୍ତରଣର ଶିଖରରେ ଆରୂଢ଼ ।

ହୃଷୀକେଶ ଜଣେ ସମର୍ଥ କବି । ନାନା ଉଦ୍‌ବୋଧନକାରୀ ପ୍ରତୀକ ଓ ଚିତ୍ର ପ୍ରୟୋଗରେ ସେ ମାନବ ଇତିହାସର ନିୟତିକୁ ଅଭିବ୍ୟଞ୍ଜିତ କରିଛନ୍ତି । ଏହି ମିଥିକ୍ ଖଣ୍ଡକାବ୍ୟ ରଚନା ତାଙ୍କ କବିତ୍ୱର ଏକ ସାର୍ଥକ ନିଦର୍ଶନ । ତଥାପି ମହାଭାରତ ପୁରାଣର ମହାନାୟକ କର୍ଣ୍ଣଙ୍କୁ ନେଇ ଏକ ଖଣ୍ଡକାବ୍ୟର ରଚନା ଯେତିକି ପ୍ରମାଦପୂର୍ଣ୍ଣ – ଏହି ଖଣ୍ଡକାବ୍ୟର ଏକ ନିର୍ଦ୍ଦିଷ୍ଟ ଅଂଶର ସଂକ୍ଷିପ୍ତତମ ଆଲୋଚନାଟି ଉପସ୍ଥାପନ କରିବା ମଧ୍ୟ ସେତିକି ଦୁରୂହ । ଏହି ଆଲୋଚନାଟି ମୋର ପଠନଜନିତ ରସୋଲ୍ଲାସ ହେତୁ ସମ୍ଭବ ହୋଇପାରିଛି ବୋଲି ମୁଁ ମନେକରେ ।

□□□

## ବୁନ୍ଦାଏ ଜଳର ବିଶ୍ୱ
### କବିତା–ପାଣି, ସଂ– ପାଣି ଓ ଅନ୍ୟାନ୍ୟ କବିତା
### କବି–ଶତ୍ରୁଘ୍ନ ପାଣ୍ଡବ

''ହୁତାଶନୁଁ ଜଳବୁନ୍ଦେ ହେଲା ପ୍ରକାଶ ।''

– *ଭୀମ ଭୋଇ*

ଅଗ୍ନିରୁ ଜଳ ସମ୍ଭୂତ, ପୁନଶ୍ଚ ଜଳ ଭିତରୁ ଅଗ୍ନିର ଉଦ୍ଭବ (ବାଡ଼ବାଗ୍ନି) । ଅଥଚ ଜଳସିଞ୍ଚନରେ ଅଗ୍ନି ନିର୍ବାପିତ ହୋଇଥାଏ । ଅଗ୍ନିର ଦହନକୁ ଜଳ ଉପଶମ କରିପାରେ । ପୃଥିବୀର ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ମତରେ ଯଦି କେବେ ତୃତୀୟ ବିଶ୍ୱଯୁଦ୍ଧ ସମ୍ଭବ ହୁଏ, ଏହା ଜଳ ନିମିତ୍ତ ହିଁ ସଂଘଟିତ ହେବ । ଆମ ଶାନ୍ତିପ୍ରିୟ ଭାରତଭୂମିରେ ବିଭିନ୍ନ ନଦୀମାନଙ୍କର ଉତ୍ସ ଓ ପ୍ରବାହକୁ ନେଇ ରାଜ୍ୟ ରାଜ୍ୟ ମଧ୍ୟରେ ଉପୁଜୁଥିବା ଏବଂ ସ୍ଥଳବିଶେଷରେ ଭାରତ ଓ ଚୀନ୍ ମଧ୍ୟରେ ଲାଗିରହିଥିବା ଦ୍ୱନ୍ଦ୍ୱ ଓ ବିପ୍ଳବ ଜଳର ଏପ୍ରକାର ବୈଶିଷ୍ଟ୍ୟକୁ ପ୍ରତିପାଦିତ କରେ । ଯଦି ଜନମଙ୍ଗଳ ପ୍ରତି ଧ୍ୟାନ ନ ଦେଇ ଅନ୍ୟ ଦେଶ ଉଦାହରଣସ୍ୱରୂପ – ଚୀନର ଉତ୍ସରୁ ନିଃସୃତ ନଦୀସ୍ରୋତକୁ ମୂଳଦେଶ (ଚୀନ୍) ଅବରୁଦ୍ଧ କରିପକାଏ – ତା'ହେଲେ ସମଗ୍ର ମାନବଜାତି ଛାରଖାର ହୋଇଯିବ ନାହିଁକି ?

ଏଠାରେ କବି ଶତ୍ରୁଘ୍ନଙ୍କ କାବ୍ୟନାୟକ ପାଣି ଖୋଜୁଛି – ତା'ର ପାଣି ଦରକାର । ପାଣିର ଉତ୍ସମୂଳ ଝିଲ୍, ଝରଣା ଓ ବୃଷ୍ଟିପାତ ପ୍ରତି ବ୍ୟାକୁଳ ଅନ୍ୱେଷଣ ଜାରି ରଖୁଛି । ଏହି ଅନ୍ୱେଷଣ ପୁଣି ଅନ୍ୟ ଏକ ଦିଗକୁ ମଧ୍ୟ ପ୍ରଧାବିତ ହେଉଛି – ତାହା ହୃଦୟଭରା ଶ୍ରଦ୍ଧା, ମମତା, ମାନବିକ ସମ୍ପର୍କ ଓ ବିଚାରବୋଧ ଦିଗକୁ । ମାନବଜାତିର ଅନ୍ତଃସ୍ଥଳରେ ଆତ୍ମୀୟତା ଉଚ୍ଛଳ ଥିଲେ, ପରସ୍ପର ପ୍ରତି ସମ୍ବେଦନା ପୂରି ରହିଥିଲେ, ହୁଏତ ଏ ପ୍ରକାର 'ପାଣିଖୋଜା'ର ବ୍ୟାକୁଳତା ହ୍ରାସ ପାଆନ୍ତା । କିନ୍ତୁ ମାନବହୃଦୟର ଏତାଦୃଶ ସମ୍ବେଦନା ଓ କରୁଣାର ଧାରା ମଧ୍ୟ କ୍ରମଶଃ ଶୁଷ୍କ ହୋଇଯାଉଛି – ମଣିଷ ମଣିଷ ଭିତରର ମମତ୍ୱବୋଧ ଓ ସମ୍ପୃକ୍ତି ମରୁଭୂମି ପାଲଟି ଯାଉଛି – ବୁନ୍ଦାଏ ସ୍ନେହମମତା ସେଠାରେ ଅନୁପସ୍ଥିତ । ତେଣୁ ପାଣିର ଅବର୍ତ୍ତମାନ ମରୁଭୂମିର ମରୀଚିକା-ମାୟାରେ ତୃଷାର୍ତ୍ତ ମଣିଷକୁ

ଦିଗ୍‌ଭ୍ରାନ୍ତ କରିପକାଉଛି । କବି ଶତ୍ରୁଘ୍ନ ଅନୁଚ୍ଚ, କୋମଳ, ଆନ୍ତରିକ ସ୍ୱରରେ ଏକ ଚିରକାଳୀନ କଠୋର ସମସ୍ୟାକୁ ଉପସ୍ଥାପନ କରୁଛନ୍ତି – ''ପାଣି କାହିଁ ? × × × ଭୂମିରେ, ଝିଲ୍‌ରେ, ଝରରେ / ଧାରାଶ୍ରାବଣରେ / ତୁମ ଆଖିର ସବୁଜ ହ୍ରଦରେ / ସୁନାବ୍ୟା ହୃଦୟର ଉପକୂଳରେ ?'' ଜଳର ଏକାନ୍ତ ଅଭାବରେ ଭୟଙ୍କର ଭବିଷ୍ୟତ ଯେ ମାନବଜାତି ପ୍ରତି ଆସନ୍ନ, ଏହା କବି ସସ୍ନେହ ଦୃଷ୍ଟିରେ ଦେଖିପାରନ୍ତି – କବିଙ୍କ ପ୍ରକୃତି-ସଂପ୍ରୀତି ଗଭୀର ଓ ନିବିଡ଼ ଏବଂ ତହିଁରୁ ସଂଜାତ ତାଙ୍କର ଏହି ଚେତାବନୀ – ଭଲପାଇବାକୁ ହେବ ମଣିଷକୁ, ତା'ର ଭବିଷ୍ୟତକୁ, ପ୍ରକୃତି ଓ ପର୍ଯ୍ୟାବରଣକୁ । ଖୁବ୍ ସଚେତନ ଭାବେ, ସମାହିତ ଦୃଷ୍ଟିରେ ବିଚାର କରି ଏଗୁଡ଼ିକୁ ଲାଳନ କରିବାକୁ ହେବ । ଆଜିର ବିଧ୍ୱସ୍ତ ପରିବେଶର ପୃଷ୍ଠପଟ୍ଟରେ ରହିଛି ମଣିଷର ଅଜ୍ଞତା, ରହିଛି ମଧ୍ୟ କ୍ରୂର ସ୍ୱାର୍ଥପରତା । ମଣିଷ ଜାଣେ ନାହିଁ ଯେ, ସେ ନିଜ ଗୋଡ଼ରେ କୁରାଢ଼ି ଚୋଟ ମାରି ନିଜର ସ୍ଥିତିକୁ ଧ୍ୱଂସମୁଖୀ କରିଚାଲିଛି । କବି କହନ୍ତି, ''ଯୁଦ୍ଧ ପରେ ଯୁଦ୍ଧ, ଅସଂଖ୍ୟ ଯୁଦ୍ଧରେ କ୍ଷତାକ୍ତ ହୋଇଛନ୍ତି ଲୋକେ'' – ମଣିଷମାନେ ନିଜ ଭୂଗୋଳର ସୀମା ସରହଦରେ ଗାର କାଟି, ତାକୁ ହିଁ ସର୍ବସ୍ୱ କରି ଯୁଦ୍ଧ କରିଚାଲିଲେ । ବର୍ତ୍ତମାନ ସେମାନେ ଭୂମିତଳର ସଞ୍ଚିତ, ସର୍ବୋତ୍କୃଷ୍ଟ, ନିଃଶ୍ୱାସ ପ୍ରଶ୍ୱାସ ପାଇଁ ଜରୁରୀ, ପାଣି ଆଞ୍ଜୁଳେ ନିମିତ୍ତ ଯୁଦ୍ଧ କରିବେ । ଯେ ସମ୍ପଦ ପ୍ରକୃତିର । ଅଥଚ ଏହି ଯୁଦ୍ଧ ଅବଶ୍ୟମ୍ଭାବୀ ଏବଂ ଜଳବିହୁନେ ମାନବଜାତି ଧରାପୃଷ୍ଠରୁ ନିଶ୍ଚିହ୍ନ ହେବ ।

ସାରା ବିଶ୍ୱର ପ୍ରାୟ ଏକଶତ କୋଟି ଜନସାଧାରଣ ବିଶୁଦ୍ଧ ପାନୀୟ ଜଳରୁ ବଞ୍ଚିତ – କୋଡ଼ିଏ ଲକ୍ଷ ଲୋକ ଜଳବାହିତ ରୋଗଦ୍ୱାରା ମୃତ୍ୟୁବରଣ କରୁଛନ୍ତି । ଏହା ପରିସଂଖ୍ୟାନ ଅବଶ୍ୟ, ମାତ୍ର କବି ଏହି ସତ୍ୟକୁ କଳାତ୍ମକ ରୂପପ୍ରଦାନ କରିବାରେ ସମର୍ଥ । ଏହି ପରିପ୍ରେକ୍ଷୀରେ ସେ ଓଡ଼ିଶାର ବିଭିନ୍ନ ଅଞ୍ଚଳର କରୁଣ ଦୃଶ୍ୟକୁ ଶବ୍ଦ ମାଧ୍ୟମରେ ଚିତ୍ରାର୍ପିତ କରୁଛନ୍ତି – ଜଳବିହୁନେ ମରୁଭୂମି ହିଁ ବ୍ୟାପିଯିବ – ମେଘ ଆସିବ କେଉଁଠୁ – ଆକାଶ ଆଖିରେ ନ ଥିବ ଜଳୀୟବାଷ୍ପ, ଜୈବ ବିବିଧତାପୂର୍ଣ୍ଣ ଅରଣ୍ୟ କ୍ରମଶଃ ନିପାତ ହୋଇଚାଲିଥିବ । ଜଳଚକ୍ର ତିଷ୍ଠିବ ନାହିଁ । ନଗ୍ନସ୍ୱାର୍ଥ, ନିଷ୍ଠୁରତା, ହୃଦୟହୀନତା, ଅବିମୃଶ୍ୟକାରିତାର କବଳରେ ପଡ଼ି ମଣିଷ ପାଣିର ଚିତାଗ୍ନି ଜଳାଇବ – ଦାହ୍ୟ ହେବ ପାଣି ଏବଂ ତା' ପୂର୍ବରୁ ଦାହ୍ୟ ହୋଇସାରିଥିବ ମଣିଷର ଭବିଷ୍ୟତ । ରୋଗ, ହାହାକାର, ଦୁର୍ଭିକ୍ଷ,

ଅକାଳ, ମରୁଡ଼ି ଘୋଟିଯିବ ଚତୁର୍ଦ୍ଦିଗ । ଏବେଠାରୁ ପ୍ରକୃତି ଓ ପରିବେଶକୁ ତା' ସହ ନିଜର ଭବିଷ୍ୟତକୁ ପ୍ରକାରାନ୍ତରେ ତିଳ ତିଳ ହତ୍ୟା କରିସାରିଛି ଏ ମଣିଷ । ନଦୀବକ୍ଷରୁ ବୋହିନେଉଛି ବାଲି, ପୋତି ପକାଉଛି ଝିଲ୍, ତଡ଼ାଗ – ହୁଏତ ଏଣିକି ଜହ୍ନ ବି ଭୁଲିଯିବ ନଦୀବକ୍ଷରେ ଦେଖିବାକୁ ତା'ର ପ୍ରତିବିମ୍ବ । ମଣିଷର ସଂସ୍କୃତି, ସ୍ୱାଭିମାନପାଇଁ ସର୍ବୋପରି ବଞ୍ଚିବାପାଇଁ ପାଣିର ଭୂମିକା ଅପରିହାର୍ଯ୍ୟ । କବି ଏଠାରେ ମଣିଷ ସହ ପାଣିର ଅନାଦିକାଳରୁ ତିଷ୍ଠି ରହିଥିବା ଆବେଗାତ୍ମକ ସଂଯୋଗର ସ୍ୱରୂପ ଆଙ୍କୁଛନ୍ତି । ଏହି ପାଣିରେ ମୃତକଙ୍କ ଶୁଦ୍ଧିକ୍ରିୟା ସମ୍ପାଦନ ହୁଏ – ତୃଷା ନିବାରଣ କରିବା ତ ପାଣିର ପ୍ରଥମ ଭୂମିକା । ତଥାପି କେଡ଼େ କରୁଣ, ଅନ୍ତର୍ନିହିତ ଏହାର ଆପଣାପଣ । କବି ଏହି ପରମ୍ପରା ସୂତ୍ରକୁ ଧରି ଖୋଜିଛନ୍ତି ଜଳାଧାର –

> ''ବୋଉର ଶ୍ରାଦ୍ଧବେଳେ ଗାଁର ସେ ଅସନା ପୋଖରୀର/
> ଆଣ୍ଠୁଏ ପାଣିରେ ଜଳୁଥିବା ପ୍ରେତହାଣ୍ଡିକୁ ପିଟି/
> ମୁଁ କଷ୍ଟେମଷ୍ଟେ ମୁଣ୍ଡ ବୁଡ଼ାଇଲି –/
> ତା'ର ଅସ୍ଥି ଧରି ବାହାରିଛି ଯେ/
> ତାକୁ କେଉଁଠି ବିସର୍ଜନ କରିବି କହ –/
> କେଉଁ ପବିତ୍ର ନଈରେ/
> କେଉଁ ଗଙ୍ଗା ସରଯୂର ଶୁଦ୍ଧ ଧାରରେ ?/
> × × × ନଈସାରା ଆବର୍ଜନାର ନୀଳ/
> କାହିଁ ପାଣି ?''

ସାମ୍ପ୍ରତିକ ସମୟର ରାଜନୀତିକ ଶଠତା, କୃଷକର ଅସହାୟ ସ୍ଥିତି, ବହୁ ସାମାଜିକ ଅବ୍ୟବସ୍ଥାକୁ କବି ରୂପାୟିତ କରିଛନ୍ତି, ଖୁବ୍ ଅନୁଚ୍ଚ ଅଥଚ ହୃଦୟଗ୍ରାହୀ ପ୍ରତିବାଦର ସ୍ୱରରେ । ସ୍ୱାଧୀନ ଭାରତର ସ୍ୱପ୍ନକୁ ସୂଚିତ କରିବାପାଇଁ କବି 'ବନ୍ଦେ ମାତରମ୍' ପଙ୍‌କ୍ତିକୁ ସ୍ମରଣ କରୁଛନ୍ତି । ଭାରତମାତାର ସେ ସୁଜଳା, ସୁଫଳା ଚିତ୍ରଟି କେଉଁଠି ? ଆଜିର ସ୍ୱାର୍ଥାନ୍ଧ ମଣିଷ ଆସନ୍ତାକାଲିକୁ ଭ୍ରୂକ୍ଷେପ କରୁ ନାହିଁ – ମାନବଜାତିର ଭବିଷ୍ୟତ ପ୍ରତି ଦୃକ୍‌ପାତ କରୁ ନାହିଁ । ଚିପୁଡ଼ି ଶୋଷି ନେଉଛି ପାଣି । କିନ୍ତୁ ଏହି ପ୍ରାକୃତିକ ଅମୂଲ୍ୟ ସମ୍ପଦଟି କେତେକାଳ ସହିବ ଯେ ଅତ୍ୟାଚାର ? କେତେକାଳ କ୍ଷମା କରିପାରିବ ଯେ ସଂହାରକାରୀ ମଣିଷ ଜାତିକୁ ? ଅନ୍ତରର ଶୁଭକାମନାକୁ ବାଙ୍‌ମୟ କରି ନିଦାରୁଣ ସତ୍ୟକୁ ପ୍ରକଟ କରୁଛନ୍ତି କବି –

> "ପାହାଡ଼ଙ୍କ କଙ୍କାଳ ଗଛଙ୍କ ହାଡ଼/
> ଝରଣାର କଟାବେକ ଧରି ଏମାନେ/
> ନଦୀକୁ ଖୋଜିଲାବେଳକୁ/
> ନଦୀ ଫେରିଯାଇଥିବ ତା'ର ଆଦିମ ଗିରିଗହ୍ୱରକୁ ।"

ତା' ଭିତରେ ଉଭାନ୍ ହୋଇଯିବ ହୁଏତ । ଗୁମ୍ଫା ଭିତରୁ 'କାହିଁ ପାଣି'ର ଚିତ୍କାରର ପ୍ରତିଧ୍ୱନି ଶୁଭିବ କ୍ଷଣକାଳ । ଯୁଦ୍ଧ ବିଭୀଷିକାଠାରୁ କୌଣସିମତେ କମ୍ ଭୟଙ୍କର ନୁହେଁ ଏହି ଜଳାଭାବ । ଏହା ମଣିଷ ଜାତିର ଅନ୍ତକାଳର ଏକ ମୃତ୍ୟୁଘଣ୍ଟି ।

ଶତ୍ରୁଘ୍ନ ଭାବଗମ୍ଭୀରତାର କବି । ସଚରାଚର ପ୍ରତି ମଙ୍ଗଳ ମନାସ ମଧ୍ୟରେ ଯୁଗୋପଯୋଗୀ ଏକ ସମସ୍ୟାର ଅବତାରଣା ସେ କରିଛନ୍ତି । ଏହା ବାସ୍ତବ କିନ୍ତୁ ଏହି ବାସ୍ତବତାକୁ ବିଭିନ୍ନ ଦିଗରୁ ଚିତ୍ରଣ କରୁ କରୁ ମଣିଷ ଅନ୍ତଃସ୍ଥଳର କୋମଳ ଆବେଗକୁ ଉଦ୍‌ବୋଧନ ଦେଇଛନ୍ତି । ପରମ୍ପରା ମାନ୍ୟତା ରହିଛି । ରହିଛି ଅତୀତ ଇତିହାସର ଉଚ୍ଚାରଣ । ତାଙ୍କ ପଙ୍‌କ୍ତିଗୁଡ଼ିକ ପାଠକ ପ୍ରାଣକୁ ଆନ୍ଦୋଳିତ କରିଦେବାର ସାମର୍ଥ୍ୟ ରଖନ୍ତି । ବିଭିନ୍ନ ଯଥୋଚିତ ପ୍ରତୀକ ଓ ଚିତ୍ରରେ ବକ୍ତବ୍ୟ ଶାଣିତ ଓ ସଂପ୍ରେଷଣଶୀଳ ହୋଇପାରିଛି ।

□□□

## ଆଶ୍ୱାସର ଦୃପ୍ତସ୍ୱର
### କବିତା–ବଡ଼ଭାଇ, ସଂ–ବଡ଼ଭାଇ
### କବି–ଅକ୍ଷୟ ବେହେରା

'ବୈକୁଣ୍ଠ ସମ୍ମାନ ଆହା ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।

*– କବି ମଧୁସୂଦନ ରାଓ*

ସାଧାରଣ ସାଂସାରିକତା ଭିତରେ କବିଟିଏର ଆତ୍ମା ଛଟପଟ ହେଉଥାଏ । ଲାଭ, କ୍ଷତି, ସ୍ୱାର୍ଥପରତା, ଅବହେଳା, ସ୍ୱଜନର ନିଷ୍ଠୁରତା ତାକୁ ହତାଶ କରିପକାଏ । ମାତ୍ର ସେ ଯେ ସାଧାରଣ ଅସ୍ତିତ୍ୱ ଭିତରେ ଅନୁପସ୍ଥିତ ଥାଏ । ଆଉ ଏକ ପ୍ରଶସ୍ତ, ସୁନ୍ଦର ଜଗତରେ ତା'ର ହୃଦୟ ବିଚରଣ କରୁଥାଏ । ସେଠାରେ ସେ ସ୍ନେହସମ୍ବେଦନାପ୍ଲୁତ ଆଶ୍ୱାସମୟ କରାଙ୍ଗୁଳିର ସ୍ପର୍ଶ ପାଇପାରେ । ସେଥିପାଇଁ ବଞ୍ଚିବା ତା' ନିମିତ୍ତ ବରଣୀୟ ହୁଏ । ପ୍ରକୃତିର ଅନୁପମ ମାୟାଜାଲ ତା'ର ଏକାକୀ ଅନ୍ତଃକରଣକୁ ଛନ୍ଦିପକାଏ । ସ୍ୱଜନ ବା କିଏ ? କିଏ ପରଜନ ? ରକ୍ତସମ୍ପର୍କ ଛିଣ୍ଡିଯାଏ – ରକ୍ତ ବୋହିଯାଏ । ଅଥଚ ସେହି ରକ୍ତକୁ କେହି ଅପରଜନ ପୋଛିଦିଏ, ଉପଶମର ମଲମ ବୋଲି ସମ୍ଭାବନାର ଦୀପଟିକୁ ଜଳାଇରଖେ । ମଣିଷ ପାଇଁ କେହି ନା କେହି ଆଶ୍ରୟଦାତା, କୋଉଠି ନା କୋଉଠି ଥାଏ । ଜଣେ ଅକାରଣ ଆଘାତ କଲେ, ଅନ୍ୟ କେହି ଜଣେ ପୀଡ଼ାହରଣ କରିନେବାକୁ ଆଗେଇଆସେ ।

'ବଡ଼ଭାଇ' ସଂକଳନଟି ରକ୍ତ ସମ୍ପର୍କକୁ ନେଇ ଅନେକ କବିତାର ସମାହାର । ଏଥିରେ କବି ଅକ୍ଷୟ ବେହେରା ଭିନ୍ନ କେତେକ ଭାବାନୁଭୂତିର କବିତା ମଧ୍ୟ ସଂଯୁକ୍ତ କରିଛନ୍ତି: କିନ୍ତୁ ଏହି ସଂକଳନର ପ୍ରଥମ ତିନିଗୋଟି କବିତା ଏଠାରେ ଆଲୋଚନା ନିମିତ୍ତ ଗ୍ରହଣ କରାଯାଇଛି । କାରଣ ଯେ ତିନୋଟି କବିତା ଗୋଟିଏ ସ୍ୱାଦର, ଗୋଟିଏ କଥା ହିଁ ଗୋଟିଏ ସ୍ୱରରେ କହେ । ଏଥିରୁ ସାଧାରଣ ମାନବିକ ସମ୍ପର୍କକୁ ଚିହ୍ନି ହୁଏ, ବୁଝି ହୁଏ ଏହାର ଅସାରତା, ତଥାପି ନିଃସଙ୍ଗତାର ଭୂଖଣ୍ଡ ମଧ୍ୟରେ କବିତାର ମନ୍ତ୍ରୋଚ୍ଚାରଣ କବିପାଇଁ ଏକ ଭିନ୍ନ ପତିଆରା ସୃଷ୍ଟି କରେ । କବିତା ହିଁ କବିକୁ ସିଂହାସନରେ ଅଧିରୂଢ଼ କରାଇପାରେ । ହେଉ ପଛେ ଏହି ସିଂହାସନ

ମାଟିର । ଜଗତ ଯେତେବେଳେ କବିକୁ ଆଡ଼େଇଯାଏ, ତା'ର ଅନ୍ତର୍ଲୋକରେ ଏକ ଉତ୍ତୀର୍ଣ୍ଣଜଗତର ଦ୍ୱାର ଖୋଲିଯାଏ – ନିଃସ୍ୱ କବିଟି ମହାମହିମ ଈଶ୍ୱରଙ୍କ ସ୍ପର୍ଶ ପାଇବାକୁ ହକ୍‌ଦାର୍ ହୁଏ ।

ନିଜ ତୁଚ୍ଛ ଜୀବନର ଅଭିମାନକୁ କେବଳ ନୁହେଁ, କାବ୍ୟିକ ଜୀବନର ସମଗ୍ରପ୍ରାପ୍ତିକୁ ମଧ କବି ଈଶ୍ୱରଙ୍କ ଚରଣପ୍ରାନ୍ତରେ ନିବେଦିତ କରିଥାଏ । ସ୍ୱଜନ ବା ପରଜନ ଯାହାଦ୍ୱାରା ଆଘାତପ୍ରାପ୍ତ ହେଲେ ମଧ, କ୍ଷତର ଯନ୍ତ୍ରଣାକୁ ଭୁଲି ସେ କବି-ଜନୋଚିତ ସର୍ବଜନର ମଙ୍ଗଳ କାମନା କରିଥାଏ । କାରଣ ତା'ର ସୀମିତ ସତ୍ତାର ଆର୍ତ୍ତିକୁ ଉପେକ୍ଷା କରି ସାରା ବିଶ୍ୱର ଆର୍ତ୍ତିକୁ ସେ ନିଜ ହୃଦୟରେ ଲିପିବଦ୍ଧ କରିରଖେ । ଆମର ଏହି ନିତିଦିନିଆ ସଂସାରରେ କେତେ ଈର୍ଷା, ଦ୍ୱେଷ, ହିଂସା, ପରଶ୍ରୀକାତରତା ପୋଷଣକାରୀ ବ୍ୟକ୍ତିମାନଙ୍କ ସହିତ କବି ସାମ୍ନାସାମ୍ନି ହୋଇଥାଏ । ତା'ର ସ୍ନେହ-ମମତାସିକ୍ତ ହୃଦୟକୁ କେହି ମଧ ଚୋଟ ପରେ ଚୋଟ ପକାଇ ହାଣିବାରେ ଲାଗିଯାଏ । ତଥାପି ତ ମଣିଷ ସେଇଠି ମରିଯାଏନା – କେଉଁଠି କିଏ ଭରସାର କାଛଟିଏ ପାଲଟିଯାଇ କବି ମଣିଷର ଭାଙ୍ଗି ଖଣ୍ଡ ଖଣ୍ଡ ହେଉଥିବା ଶରୀରକୁ, ଆତ୍ମାକୁ ଆଶ୍ରା ଦେଇଥାଏ । କବିଙ୍କର ଏହି ବିଶ୍ୱାସ ଜୀବନର ସକଳ ଦୁଃସ୍ଥିତି ମଧରେ ଆଶାର ଆଲୋକ ଜଳାଇ ରଖିବାକୁ ସମର୍ଥ ହୁଏ । ସେ ନିଜକୁ ପ୍ରବୋଧନା ଦିଅନ୍ତି –

"ସେଦିନଠୁଁ କାଛ ମୋର ଈଶ୍ୱର
ଅମାଅନ୍ଧାର ଝଡ଼ରାତିର ଦୂର ବତିଘର ।"

ଏହି ପ୍ରତ୍ୟୟ ସକଳ ଏକାକୀତ୍ୱ ମଝିରେ ସହାୟ ହୋଇ ଠିଆହୁଏ । କୃତଜ୍ଞତାର ସହ ସେ ଜୟଗାନ କରନ୍ତି ସେହି ଜୀବନ ଦେବତାଙ୍କର –

"ଜୀବନପାତ୍ର ମୋ ଭରିଛ କେତେ ମତେ
ନ ଦେଲ କିଛି ବୋଲି କହିବି କି ହେ ଆଉ ।"

କବି ବୈକୁଣ୍ଠନାଥଙ୍କ ସହ ସ୍ୱର ମିଳାନ୍ତି କବି । ପ୍ରକୃତରେ ଜୀବନ ମହାର୍ଘ – ତା'ର ତୁଳନା ନାହିଁ ।

ଆପଣାର ଲୋକେ ବ୍ୟକ୍ତି ପ୍ରତି ଅସହିଷ୍ଣୁ ହୋଇ ତାକୁ ଅସହାୟତାର ଗହ୍ୱରକୁ ଠେଲିଦିଅନ୍ତି । ସେ ମଧ ହୋଇପାରନ୍ତି ନିଜର ସୋଦର, ରକ୍ତସମ୍ପର୍କ – ବଡ଼ଭାଇ । କବିଙ୍କ ସ୍ନେହକାଙ୍ଗାଳ ମନ ଛଟପଟ ହୁଏ । ବିଶ୍ୱାସଘାତର ବିଷ ତାଙ୍କ ସ୍ଥିତିକୁ କରେ ବିପନ୍ନ । ବଡ଼ଭାଇ ସର୍ତ୍ତ ରଖନ୍ତି ଓ ସେ ସର୍ତ୍ତ ପୂରଣ କରିବା ନିମିତ୍ତ କବି ହୁଅନ୍ତି ପ୍ରତିଜ୍ଞାବଦ୍ଧ । କିନ୍ତୁ ସକଳ ନିଷ୍ଠା ସତ୍ତ୍ୱେ ସର୍ତ୍ତପୂରଣ କରିବା ଦିଗରେ କବି ସଫଳ

ହୋଇପାରନ୍ତି ନାହିଁ । ନିର୍ଦ୍ଦୋଷରେ ସେ ଦୋଷୀ ସାବ୍ୟସ୍ତ ହୁଅନ୍ତି । ମାତ୍ର ତାଙ୍କର ଦୋଷ କେଉଁଠି ? ଲକ୍ଷେ ପଦ୍ମ ତୋଳିପାରିଲେ ନାହିଁ ସେ - ସର୍ତ୍ତାନୁସାରେ ଏକ ପଦ୍ମ ଊଣା ହେଲା । କିଂକର୍ତ୍ତବ୍ୟବିମୂଢ଼ ସାନଭାଇଟି ରୁଷ୍ଟ ବଡ଼ଭାଇଙ୍କୁ ପ୍ରଶ୍ନ କଲା । ଏଠାରେ ପୁରାକଳ୍ପର ଦୃଷ୍ଟାନ୍ତ ଦେଇ କବି ଉଚ୍ଚାରିଲେ -

''ଏଥର କୁହ ଭାଇ/
ନିଜ ଆଖି ତାଡ଼ି ଭରଣା କଲେ କି/
ପୂର୍ଣ୍ଣ ହେବ ତୁମ/
ମନସ୍କାମନା ?''

ଏତେ ବ୍ୟାକୁଳତା ସତ୍ତ୍ୱେ ଦୃଢ଼ତାର ଭୂମି ଉପରେ ଦଣ୍ଡାୟମାନ ହୋଇଥା'ନ୍ତି କବି । ସେହି ବିଶ୍ୱାସଘାତକମାନଙ୍କୁ ତାଚ୍ଛଲ୍ୟ କରନ୍ତି । ତାଙ୍କର ବିଶ୍ୱାସ, ସମୟ କାହାକୁ ବି କ୍ଷମା କରେ ନାହିଁ । ପ୍ରତ୍ୟେକ କର୍ମର ଏକ ନିର୍ଦ୍ଧାରିତ ଫଳାଫଳ ଥାଏ । ଏହା ଆମ ହିନ୍ଦୁଦର୍ଶନର ଅନୁରୂପ । ଆପଣାର ଅନ୍ତଃସତ୍ତାରେ ଦୃଢ଼ମୂଳ ହୋଇ କବି ଏକାକୀତ୍ୱରୁ ମୁକୁଳାଇ ଆଣନ୍ତି ନିଜକୁ । ହଜିଯାଉଥିବା ମଣିଷପଣକୁ ଚିରାଚରିତ ଅହଂକାରର ବିପକ୍ଷରେ ସେ ଠିଆକରାନ୍ତି । କହନ୍ତି -

''ସମୟର ବାକିଖାତାରେ/
ଗୋଟି ଗୋଟି ଟିପା ହୋଇଛି/
ତମ ଅହଂକାରର ଋଣ/
ନିଜେ ଜାଣନା, କେତେ ପୁଣ୍ୟରେ/
ଫେରି ପାଇହୁଏ, ନିରୁତା/
ମଣିଷପଣ ।''

ଏହା ହୃଦୟଙ୍ଗମ କରି କପଟୀ ପ୍ରିୟଜନଙ୍କୁ କ୍ଷମା କରିଦିଅନ୍ତି ସେ ।

କବି ଅକ୍ଷୟ କବିତା ରଚନାରେ ଆନ୍ତରିକ । ସମ୍ପାଦନା କର୍ମରେ ମଧ୍ୟ କୁଶଳୀ । ତାଙ୍କ ମର୍ମବେଦନାର ଓ ଆଶ୍ୱସ୍ତ ଆତ୍ମାର ମିଳିତ ସ୍ୱର ପ୍ରତିଧ୍ୱନିତ ହୋଇଛି ଆଲୋଚ୍ୟ ଏହି ରଚନାରେ । ଦୁଃଖ ଅଛି, ପ୍ରତାରଣାର ଶରାଘାତ ବି ରହିଛି, ତଥାପି କବିତା କବିପ୍ରାଣକୁ ଏକ ନୂତନ ସଖ୍ୟ ଓ ସାହସ ପ୍ରଦାନ କରିଛି । ଏହି ବିଚାରବୋଧ ହିଁ ମାନବସମାଜପାଇଁ ମଙ୍ଗଳକର । ଆଶ୍ୱାସନାର ସ୍ୱସ୍ତ୍ୟୟନ । ❑❑❑

## ନବ୍ୟାଲୋଚନା

# ଭାରତୀୟତା ଓ କବିର ମାନସିକତା

କବି କ'ଣ ସତକୁ ସତ କେଉଁ ନିର୍ଦ୍ଦିଷ୍ଟ ଦେଶର, କେଉଁ ନିର୍ଦ୍ଦିଷ୍ଟ ଜାତିର ? ଜଣେ ଚିନ୍ତାନାୟକଙ୍କ ମତରେ 'ସାହିତ୍ୟର ଭୂଗୋଳ ନାହିଁ, କବି ବିଶ୍ୱବାସୀ' ଏକଥା ସତ ଯେ, କବିର ମନୋଭୂମିରେ ସମଗ୍ର ବିଶ୍ୱ, ସମଗ୍ର ମାନବଜାତି ଅନ୍ତରଙ୍ଗତାପ୍ରାପ୍ତ ଓ ଉଜ୍ଜୀବିତ । ତଥାପି, ଭୌଗୋଳିକ ସୀମା ମଧ୍ୟରେ ଗଢ଼ିଉଠିଥିବା ସଂସ୍କୃତି କବିର ମାନସିକତାକୁ ପ୍ରଭାବିତ କରିଥାଏ । ତେଣୁ ଭାରତୀୟ କବିର ଅନ୍ତଃକରଣରେ ଭାରତୀୟ ସଂସ୍କୃତି ଜୀବନ୍ତ ଓ କ୍ରିୟାଶୀଳ ରହିବା ସ୍ୱାଭାବିକ । ଭାରତୀୟ ପୁଣି କ'ଣ ? ଭାରତବାସୀର ଅନ୍ତର୍ମୂଲ୍ୟ ଓ ଦୃଶ୍ୟମୂଲ୍ୟ ହିଁ ଭାରତୀୟ ସଂସ୍କୃତିରୂପେ ଗୃହୀତ । ଭାରତର ଇତିହାସ, ଭୂଗୋଳ, ଅତୀତ, ବର୍ତ୍ତମାନ, ଭବିଷ୍ୟତ, ମିଥ୍, କିମ୍ବଦନ୍ତୀ, କଳା, ବିଜ୍ଞାନ, ବୈଦେଶିକତା ଓ ତା'ର ଗୌରବ ହିଁ ତା'ର ଭାରତୀୟତା । ଏହାକୁ ଚିହ୍ନିହେବ, ମାତ୍ର ସହଜରେ ବୁଝାଇହେବ ନାହିଁ ।

ଯେକୌଣସି ଭାଷାରେ ରଚିତ କବିତାରେ ପ୍ରତିଫଳିତ ତା'ର ଲୋକବିଶ୍ୱାସ, ମିଥ୍, କିମ୍ବଦନ୍ତୀ, ଆର୍କିଟାଇପ୍, ଚିନ୍ତା ଓ ଚଳଣିରୁ ସେହି ଭୂଖଣ୍ଡର କାବ୍ୟିକ ଚେତନାର ସ୍ୱରୂପ ନିର୍ଣ୍ଣୟ କରିହେବ । ତେଣୁ ଭାରତୀୟତା କହିଲେ ବୁଝିବାକୁ ହେବ ଯେ, ଆକୁମାରୀ ହିମାଚଳ ଓ ଆକଚ୍ଛ ଆସାମକୁ ବ୍ୟାପିଥିବା ଅସଂଖ୍ୟ ଶାଖା-ପ୍ରଶାଖାଯୁକ୍ତ ସଂସ୍କୃତିର ସେହି ମହାଦ୍ରୁମ, ଯାହା ସର୍ବକାଳୀନ, ସାର୍ବଜନୀନ ସତ୍ୟର ଉଦ୍‌ଘୋଷଣା କରିଥାଏ । ସେହି ବୃକ୍ଷର ଚେର ଭାରତ ଭୂମିରେ ପ୍ରୋଦ୍‌ଥିତ ଓ ଭାରତୀୟ ରକ୍ତ ପ୍ରବାହରୁ ସମ୍ଭୂତ । ଭାରତର ଯେକୌଣସି ଆଞ୍ଚଳିକ ଭାଷାରେ ରଚିତ ସାହିତ୍ୟ ମଧ୍ୟରେ ଏହି ଭାରତୀୟ ଅନ୍ତଃସ୍ରୋତ ପ୍ରବାହିତ ହେଉଥିବାର ଲକ୍ଷ୍ୟ କରାଯାଇପାରିବ । ଭାରତୀୟ କବିବୃନ୍ଦ ଓଡ଼ିଆ, ବଙ୍ଗଳା, ଆସାମୀ, ହିନ୍ଦୀ, ମରାଠୀ, ତେଲଗୁ, କନ୍ନଡ଼, ମାଲାୟଲମ୍, ଗୁଜରାଟୀ, ପଞ୍ଜାବୀ ଆଦି ୨୨ ଗୋଟି ସ୍ୱୀକୃତିପ୍ରାପ୍ତ ଭାଷାରେ ସଂରଚନା କରିଚାଲିଛନ୍ତି । ଏହିସବୁ ସଂରଚନାର ଭାଷା ଭିନ୍ନ ହେଲେ

ମଧ୍ୟ କାବ୍ୟିକ ଚେତନା ସ୍ତରରେ ଓ ମାନସିକତା ସ୍ତରରେ ଏମାନଙ୍କ ମଧ୍ୟରେ ସାଦୃଶ୍ୟ ଓ ମେଳକ ଅପ୍ରତିହତ ରହିଅଛି । ଏହି ପରିପ୍ରେକ୍ଷୀରେ ଆମ ଭାରତୀୟ ସାହିତ୍ୟକୁ ଏକ ପଦ୍ମଫୁଲ ସହ ତୁଳନା କରାଯାଇପାରିବ । ଏହାର ପ୍ରତ୍ୟେକ ଭାଷା ସାହିତ୍ୟ ଏକ ଏକ ପାଖୁଡ଼ାକୁ ପ୍ରତୀକିତ କରେ । ଅନ୍ୟ ଭାବରେ କହିଲେ, ଭାରତୀୟ ସାହିତ୍ୟ ଏକ ଚକ ଏବଂ ଭାଷାଗୁଡ଼ିକ ସାହିତ୍ୟର କେନ୍ଦ୍ରରୁ ପରିଧିକୁ ସଂଯୁକ୍ତ କରିଥିବା ଗୋଟିଏ ଗୋଟିଏ ଅର । ଅତଏବ, ଭାରତର ଭାଷା – କବିମାନଙ୍କର ଚେତନାଗତ ଐକ୍ୟ ଓ ଚିନ୍ତାଗତ ସାମଞ୍ଜସ୍ୟକୁ ଭାରତୀୟତା ବୋଲି ବୁଝିବାକୁ ହେବ । ଭାରତୀୟ କବିମାନଙ୍କଦ୍ୱାରା ଭାରତୀୟ ଭାଷାରେ ଭାରତର ଜନଜୀବନର ଆଶା ଓ ଆକାଙ୍‌କ୍ଷା ପ୍ରମୂର୍ତ୍ତ ହେଲାବେଳେ ଭାରତୀୟ ସମାଜ, ରାଜନୀତି ଓ ସଂସ୍କୃତି ତଥା ସାହିତ୍ୟର ପୃଷ୍ଠପଟ୍ଟରେ ଭାରତୀୟମାନଙ୍କୁ ବିଶ୍ଳେଷଣ କରିବାକୁ ହେବ ।

ଅନ୍ତର୍ଦୃଷ୍ଟିରୁ ଭୂୟୋଦୃଷ୍ଟିକୁ ଯାତ୍ରା, ଆତ୍ମାନୁସନ୍ଧାନ ଓ ଅଧ୍ୟାତ୍ମବାଦ ଭାରତୀୟତାର ମୂଳଗୁଣ । ଏଠାରେ ଦୃଶ୍ୟ ଯେତିକି ସତ୍ୟ ଅଦୃଶ୍ୟ ସେତିକି ସତ୍ୟ । ସତ୍ୟଠାରୁ ସମ୍ଭାବନା ମଧ୍ୟ ଦୂରବର୍ତ୍ତୀ ନୁହେଁ । ଭାରତୀୟ ଅବବୋଧରେ ତ୍ୟାଗ ମଧ୍ୟରେ ଭୋଗର ଆନନ୍ଦ ନିହିତ । ଭୋଗ ଅପେକ୍ଷା ତ୍ୟାଗ ମାଧ୍ୟମରେ ହିଁ ବିଶୁଦ୍ଧ ଭୋଗକୁ ଉପଲବ୍‌ଧି କରିହୁଏ । ମଣିଷର ଆତ୍ମଦର୍ଶନ, ଆତ୍ମାର ବିସ୍ତାର ଓ ରୂପାନ୍ତରଣରେ ଭାରତ ବିଶ୍ୱାସ ସ୍ଥାପନ କରେ । କରୁଣା ଓ ସ୍ୱାର୍ଥତ୍ୟାଗର କ୍ରିୟାଶୀଳତା ମଣିଷର ଆତ୍ମଶକ୍ତିକୁ ରୂପାନ୍ତରିତ କରିଥାଏ । ଉପନିଷଦର ଦର୍ଶନ ଓ ଶ୍ରୀଅରବିନ୍ଦଙ୍କ ଦର୍ଶନ ମଧ୍ୟ ମଣିଷର ସର୍ବୋତ୍ତମ ରୂପାନ୍ତରଣରେ ଆସ୍ଥାବାନ୍ । ଏହି ଭାରତ ଭୂମିରେ ପାର୍ଥିବ ସତ୍ୟ 'ମନୁଷ୍ୟ ମରଣଶୀଳ' ଯେତିକି ସ୍ୱୀକୃତ, ଭିନ୍ନ ଏକ ସ୍ତରରେ ଏହାର ବିପରୀତ ଉକ୍ତି 'ମନୁଷ୍ୟ ଅମର' ବା ଅନ୍ୟ ପରିଭାଷାରେ 'ଅମୃତସ୍ୟ ପୁତ୍ରାଃ' ସେତିକି ସତ୍ୟ ଭାବେ ସ୍ୱୀକୃତ । ଭାରତୀୟ ଦର୍ଶନ ଅନୁସାରେ ମୃତ୍ୟୁବରଣ ପୀଡ଼ାଦାୟକ, ମାତ୍ର ଏହା ଶେଷ କଥା ନୁହେଁ, ବରଂ 'ଦେହାନ୍ତ' ଅର୍ଥାତ୍ ଶରୀରର ମୃତ୍ୟୁ ସହ ପୂର୍ବ ଜନ୍ମ ଓ ପୁନର୍ଜନ୍ମର ଯୋଗସୂତ୍ର ରହିଛି । ଅତଏବ, ଭାରତୀୟ ତଥା ଓଡ଼ିଆ ସାହିତ୍ୟରେ ଭାରତୀୟତା ମୂଳତଃ ଗଙ୍ଗାନଦୀର ଧାର ପରି ବିଦ୍ୟମାନ । ମଧ୍ୟେ ମଧ୍ୟେ ତହିଁରେ ଅନ୍ୟାନ୍ୟ ଉପନଦୀର ସମ୍ମିଶ୍ରଣ ହୋଇଛି, କିଛିକାଳ ପରେ ପୁନଶ୍ଚ ଗଙ୍ଗାଧାର ପୂର୍ବବତ୍ ସ୍ୱଚ୍ଛ ଓ ପ୍ରଭାବମୁକ୍ତ ହୋଇଯାଇଛି ।

ତେବେ ଭାରତୀୟତା ଉପରେ ଏବେ ଗୁରୁତ୍ୱ ଦେବାର କାରଣ କ'ଣ ? ଭାରତୀୟତା କ'ଣ ବିପଦଗ୍ରସ୍ତ ? ଏବେ ବିପଦଗ୍ରସ୍ତ ନା ପୂର୍ବରୁ କେବେ କୌଣସି ବିପଦର ସମ୍ମୁଖୀନ ହୋଇଥିଲା ? ୧୯୯୬ରେ ମହାରାଷ୍ଟ୍ର ରାଜ୍ୟର ଜଲଗାଓଁ ବିଶ୍ୱବିଦ୍ୟାଳୟରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (ୟୁ.ଜି.ସି.) ତରଫରୁ ଆୟୋଜିତ ଏକ ଭାରତୀୟ ସ୍ତରର ସେମିନାରରେ 'ଭାରତୀୟ ସାହିତ୍ୟରେ ଭାରତୀୟତା' ବିଷୟବସ୍ତୁର ବିଚାର-ଆଲୋଚନା ହୋଇଥିଲା । ସେଠାରେ 'ଓଡ଼ିଆ ସାହିତ୍ୟରେ ଭାରତୀୟତା' ପ୍ରବନ୍ଧଟି ମୁଁ ଉପସ୍ଥାପନ କରିଥିଲି । ମନେ ହେଉଛି, ଭାରତୀୟତାକୁ ଚିହ୍ନି ପ୍ରତିଷ୍ଠା କରିବାର ନିଷ୍ଠାପର ଉଦ୍ୟମ ଏହାର ପୃଷ୍ଠପଟରେ ନିହିତ । ଏଠାରେ କୁହାଯାଇପାରେ ଯେ, ବେଦ ଉପନିଷଦ ଓ ପୁରାଣ ଯୁଗରେ ଭାରତୀୟତା ପ୍ରତିଷ୍ଠିତ ହୋଇଥିଲା ଓ ବର୍ତ୍ତମାନ ମଧ୍ୟ ଏହାର ପ୍ରତିଷ୍ଠା ବିଶେଷ ବ୍ୟାହତ ହୋଇ ନାହିଁ । ବିଶ୍ୱଦର୍ଶନ ସହ ଆତ୍ମଦର୍ଶନ ବା ଅସ୍ମିତାବୋଧଦ୍ୱାରା ଭାରତୀୟତା ସୁସମୃଦ୍ଧ ହୋଇଛି ଓ ସୁସଙ୍ଗଠିତ ହୋଇଚାଲିଛି । ମାତ୍ର ସାମ୍ରାଜ୍ୟବାଦୀ ଶାସନ୍ ଫଳରେ ଭାରତୀୟ ତଥା ଓଡ଼ିଆ ସାହିତ୍ୟରେ ବିଶେଷକରି କବିତା କ୍ଷେତ୍ରରେ ଯେଉଁ ପ୍ରକାର ଅନୁକରଣ ଓ ଅନୁସରଣ ପ୍ରବୃତ୍ତି ଆମକୁ ଅନ୍ଧ କରି ପାଶ୍ଚାତ୍ୟସର୍ବସ୍ୱ କରିଥିଲା, ତାହା କ୍ରମଶଃ ଦୂରୀଭୂତ ହେବାରେ ଲାଗିଛି । ବିଂଶ ଶତାବ୍ଦୀର ପ୍ରାକ୍‌କାଳ ଓ ଏହି ଶତାବ୍ଦୀର ପରବର୍ତ୍ତୀକାଳର କବିଗଣ ଯଥାର୍ଥରେ ପାଶ୍ଚାତ୍ୟମୁଖୀ ହୋଇପଡ଼ିଥିଲେ । ୧୯୫୦ ବେଳକୁ ଭାରତୀୟ କବିର ମାନସିକତା ଏହି ଉପନିବେଶବାଦୀ ଗ୍ରାସ ମଧ୍ୟରେ ରହିଯାଇଥିଲା । ମାତ୍ର ୧୯୬୦ ପରବର୍ତ୍ତୀ କାଳକୁ କ୍ରମଶଃ ଏହି ପ୍ରଭାବ ଶିଥିଳ ହେଲା ଓ କବିଙ୍କ ଚେତନା ଭୂମି ପାଶ୍ଚାତ୍ୟ ଗ୍ରାସରୁ ମୁକୁଳି ତୀବ୍ର ଭାବରେ ଭାରତୀୟତାର ଆଧାର ପାଲଟିଯିବାରେ ଲାଗିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଆ କବିତାକୁ ବିଶ୍ଳେଷଣ କରିବା ଏହି ପ୍ରବନ୍ଧର ପରିସରଭୁକ୍ତ ହୋଇଅଛି ।

ପୁନଶ୍ଚ, ଏକବିଂଶ ଶତାବ୍ଦୀର ବିଶ୍ୱରେ ଜଗତୀକରଣର ପ୍ରମୁଖ ସ୍ରୋତରେ ସବୁକିଛି ଯେତେବେଳେ ବିସ୍ତାରିତ ହୋଇପଡୁଛି, କବିର ମାନସିକତା ନିଜ ମୌଳିକତାର ସୁରକ୍ଷା ନିମିତ୍ତ ଅଧିକ ସଚେତନ ହୋଇପଡୁଛି । ପରମ୍ପରା ପ୍ରତି ବିଶ୍ୱସ୍ତ ହେବା ନିମିତ୍ତ ନିଷ୍ଠାପର ହୋଇପଡୁଛି । ନିଜକୁ ପ୍ରଶ୍ନ କରୁଛି, ତା'ର କାବ୍ୟଚେତନା ଭାରତୀୟତାଦ୍ୱାରା ସମୃଦ୍ଧ ତ ? ସେ ନିଜ ମୂଳ ସଂସ୍କୃତିରୁ ବିଚ୍ଛିନ୍ନ ହୋଇ ତ୍ରିଶଙ୍କୁ ପାଲଟିଯାଇ ନାହିଁ ତ ? ସେଥିପାଇଁ ବାହ୍ୟ ପ୍ରଭାବରୁ ସେ ନିଜର ମାନସିକତାକୁ ଯଥାସମ୍ଭବ ଦୂରରେ ରଖିବାର ପ୍ରୟାସ କରୁଅଛି ।

କ୍ରୌଞ୍ଚ ପକ୍ଷୀର କରୁଣ କ୍ରନ୍ଦନରୁ ଭାରତୀୟ ମହାକବିଙ୍କର ସ୍ୱରଚନାର ପ୍ରଥମ ପଙ୍‌କ୍ତି ନିଃସୃତ ହୋଇଥିଲା । କେବଳ ମଣିଷ ପ୍ରତି ନୁହେଁ, ମାନବେତର ପ୍ରତି ମଧ ଏହି ସମ୍ବେଦନଶୀଳତାର ଉପସ୍ଥିତି ଭାରତୀୟ କବିମାନସରେ ସ୍ପଷ୍ଟଭାବେ ଲକ୍ଷ୍ୟଣୀୟ । ଆପଣା ମଧରେ ବିଶ୍ୱବ୍ରହ୍ମାଣ୍ଡର ଉପଲବ୍‌ଧି, ସମଗ୍ର ମାନବଜାତି ସହ ଅଭିନ୍ନତ୍ୱ ଅନୁଭବ ବୈଦିକ ରଚନାର ମୂଳମନ୍ତ୍ର ରୂପେ ସ୍ୱୀକୃତ । 'ସଂଗଚ୍ଛଧ୍ୱଂ... ସମ୍ବଦଧ୍ୱଂ... ସମ୍ୱୋ ମନାଂସି ଜାନତାମ୍' ଏକାଠି ଚାଲ, ମନ ଓ ଚେତନାରେ ଅଭିନ୍ନ ରହି ଆଗୁସାର ହୁଅ, ଏହା ଭାରତୀୟତାର ବିଶ୍ୱଦୃଷ୍ଟି ।

ପୁନଶ୍ଚ ସମାଜ ଓ ପରିବାରରେ ନାରୀ ପୂଜିତା ହେଲେ (ମର୍ଯ୍ୟାଦାପ୍ରାପ୍ତ ହେଲେ) ସେହି ସ୍ଥାନ 'ଦେବଭୂମି' ରୂପେ ପରିଗଣିତ ହୁଏ । ଋଷିକଣ୍ଠରୁ ଉଚ୍ଚାରିତ ହୁଏ – 'ଯତ୍ରନାର୍ଯ୍ୟସ୍ତୁ ପୂଜ୍ୟନ୍ତେ, ରମନ୍ତେ ତତ୍ର ଦେବତାଃ' । ଏହା ନାରୀର ସମ୍ମାନାସ୍ପଦ ସ୍ଥିତିର ସ୍ୱରୂପ ଉଦ୍‌ଘୋଷଣା କରେ । ଏହାବ୍ୟତୀତ ମାନବ ଓ ମାନବେତର ସ୍ଥିତି ସମୂହ ଏକ ବ୍ୟାପକ ଶାନ୍ତି ପ୍ରସ୍ତୁତି ନିମିତ୍ତ ଆତ୍ମିକ ସହଯୋଗ ପ୍ରଦାନ କରନ୍ତି । ବନସ୍ପତି, ସିନ୍ଧୁ, ପ୍ରାଣୀ, ପ୍ରକୃତିସକଳ ଶାନ୍ତି ପ୍ରତିଷ୍ଠା ନିମିତ୍ତ ପ୍ରୟାସ କରିଥା'ନ୍ତି । ଏହିଁ ଦୃଷ୍ଟିରୁ ବିଶ୍ୱ ପ୍ରତି କଲ୍ୟାଣ କାମନା ଭାରତୀୟ ସ୍ରଷ୍ଟା ମାନସର ଏକ ବିଶିଷ୍ଟ ବିଭାବ ।

ଭୌତିକ ସ୍ଥିତିକୁ ନେପଥ୍ୟରେ ରଖି ଆଧାତ୍ମିକତାକୁ ଅଗ୍ରାଧିକାର ଦେବା ଭାରତୀୟତାର ମୁଖ୍ୟ ପରିଚାୟକ । କବିର ମାନସିକତା ଏତାଦୃଶ ଚେତନାଦ୍ୱାରା ସମୃଦ୍ଧ ଓ କବିର ରକ୍ତସ୍ରୋତରେ ଭାରତୀୟତା ଉଜ୍ଜୀବିତ । ଏହି ଭାରତୀୟତା କବି ଚେତନାକୁ ଆବୋରି ରଖି ତା'ର ସାଂସ୍କୃତିକ, ସାମାଜିକ, ନୃତତ୍ତ୍ୱ, ଧର୍ମ ଆଦି ସକଳ ଦୃଷ୍ଟିକୁ ଗଭୀରଭାବେ ପ୍ରଭାବିତ କରିଥାଏ ଏବଂ କବିର ଅବଚେତନରେ ମଧ ଏହା ସଂଜୀବିତ ଓ କ୍ରିୟାଶୀଳ ରହିଥାଏ । କବିତାରେ ଏହି ସଂସ୍କାର ପରିମାର୍ଜିତ ଓ ଉଜ୍ଜ୍ୱଳ ହୋଇ ଅଧିକରୁ ଅଧିକ ଶକ୍ତିଶାଳୀ ହେବାରେ ଉଦ୍ୟତ ଥାଏ ।

ପୂର୍ବରୁ କୁହାଯାଇଛି ଯେ କବି ଓ ତତ୍ତ୍ୱଜ୍ଞ – ପାଉଣ୍ଡ ଏବଂ ଏଲିଅଟ୍‌ଙ୍କ ସୃଷ୍ଟିତତ୍ତ୍ୱର ପ୍ରଭାବରୁ ଭାରତୀୟ କବିତା କ୍ରମଶଃ ମୁକ୍ତିଲାଭ କରିଛି । ସ୍ରଷ୍ଟାଗଣ ନିଜସ୍ୱ ଭୂମି ଓ ଜୀବନଧାରାକୁ ନିଜସ୍ୱ ଦୃଷ୍ଟିରେ ନିରୀକ୍ଷଣ କରିବାକୁ ଆରମ୍ଭ କରିଛନ୍ତି । ସେହି ହେତୁ କବି ଗୁରୁପ୍ରସାଦ 'କାଳପୁରୁଷ'ରେ ଏଲିୟଟୀୟ ନଷ୍ଟ

ମୂଲ୍ୟବୋଧର ପୃଥିବୀକୁ ଚିତ୍ରିତ କଲାବେଳେ ଉପସଂହାରରେ ଉପନିଷଦ ବାଣୀର ଉଦ୍‌ଘୋଷଣା ଶୁଣାଇଛନ୍ତି - ଦତ୍ତଂ, ଦୟଧ୍ୱଂ, ଦାମ୍ୟତାମ୍ ।

କବି ଚେତନାରେ ଭାରତୀୟତାର ବିଶ୍ଳେଷଣ ନିମିତ୍ତ ଏଠାରେ ଭାରତୀୟ ନିର୍ଯାସକୁ ମୁଖ୍ୟତଃ ୪ ଗୋଟି ଦିଗରୁ ଚିହ୍ନିତ କରି ଆଲୋଚନା କରାଯିବ । ପ୍ରଥମତଃ, ନିଜସ୍ୱ ମୂଳ ଚେତନାକୁ ପ୍ରତ୍ୟାବର୍ତ୍ତନ । ନିଜ ଭାଷାର, ପୁରାଣକଳ୍ପର, ନିଜ ଦେଶର ଐତିହାସିକ ଚରିତ୍ର ଓ ପରିବେଶର ପୁନରାନୁବର୍ତ୍ତନ, ଅଧ୍ୟାତ୍ମଚେତନା ଓ ରହସ୍ୟ ଧାରାର ଆଲୋକରେ ବର୍ତ୍ତମାନ ଯୁଗର ଅନୁଶୀଳନ ଏବଂ ଏ ଯୁଗର ପ୍ରାସଙ୍ଗିକତାକୁ ନେଇ ଲୋକସଂସ୍କୃତିର ସଫଳ ପ୍ରୟୋଗ ହିଁ କବିତାରେ ଗୁରୁତ୍ୱଲାଭ କରିଛି । ଏହା ସହିତ ପରମ୍ପରାର ଜୀବନ୍ତ ଚିତ୍ରଣ, ସ୍ୱ-ପରିବେଶ ଓ ପ୍ରକୃତି ପ୍ରତି ଆତ୍ମୀୟତା, ଗ୍ରାମ୍ୟ ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ଅନୁଧ୍ୟାନ ଓ ଚିତ୍ରଣରେ ଯୁଗୋପଯୋଗିତାର ପରିଶୀଳନ ତଥା ତନ୍ମଧ୍ୟରେ ଭାରତୀୟତାର ମୂର୍ତ୍ତ ରୂପର ଉପସ୍ଥାପନ । ଭାରତୀୟ ରହସ୍ୟବାଦ, ଅଧ୍ୟାତ୍ମଚେତନା ଓ ପାରିତ୍ରିକ ପ୍ରତି କବିଚିତ୍ତର ସଚେତନତାର ବିଶ୍ଳେଷଣ ଆଦିକୁ ଏହି ପର୍ଯ୍ୟାୟରେ ଗ୍ରହଣ କରାଯାଇପାରେ ।

ଦ୍ୱିତୀୟତଃ, ଜୀବନ ଦୃଷ୍ଟିରେ ଅସ୍ତିବାଚକତାର ଉଦ୍‌ଘୋଷଣା । କବି ନିଜର ସମୟ ଓ ପରିପାର୍ଶ୍ୱଦ୍ୱାରା ପ୍ରଭାବିତ ହୁଏ । ବର୍ତ୍ତମାନର ରାଜନୀତିକ ଓ ଆର୍ଥନୀତିକ ପରିସ୍ଥିତି କବିତା ସୃଷ୍ଟିପାଇଁ ଅନୁକୂଳ କି ? ଏପରି ପ୍ରଶ୍ନ ଉଠିପାରେ । ଏକଦା ଦ୍ୱିତୀୟ ବିଶ୍ୱଯୁଦ୍ଧର ବିଭୀଷିକା ପରେ ଅନେକ ଚିନ୍ତାନାୟକ କହିଲେ ଯେ, Poetry is dead. ନାନା ନିଷ୍ଠୁରତା, ଗଣହତ୍ୟା, ଗ୍ୟାସ୍ ଚାମ୍ବର ଇତ୍ୟାଦିକୁ ଅଙ୍ଗେ ନିଭାଇଲା ପରେ, କବିତା ପରି ଏକ ମନନଶୀଳ କଳାସୃଷ୍ଟି ଆଉ ମଣିଷ ପକ୍ଷରେ ସମ୍ଭବ ହେବ କି ? କବିତା ହୁଏତ ଆଉ ଲେଖାଯାଇପାରିବ ନାହିଁ । କିନ୍ତୁ ବାସ୍ତବ କ୍ଷେତ୍ରରେ କବିତା ଲେଖା ଜାରି ରହିଲା । ଏହାର ଅର୍ଥ, ବିଷମ ପ୍ରତିକୂଳତା ମଧ୍ୟରେ ବି କବିତା ବଞ୍ଚି ରହିପାରେ । ସେହି ଦୃଷ୍ଟିରୁ କବିତାର ସ୍ୱର ନିଶ୍ଚୟ ଜୀବନ ପ୍ରତି ଅସ୍ତିବାଚକତାର ବା ବିଶ୍ୱାସବଦ୍ଧତାର । ପୁନଶ୍ଚ ଏହି ସ୍ୱର ପ୍ରତିବାଦର ବା କେବେ କେବେ ଆଶ୍ୱାସନା ସମ୍ବଳିତ ହେବାର ଲକ୍ଷ୍ୟ କରାଯାଇପାରେ । ଭୟଙ୍କର ତାଣ୍ଡବ ମଧ୍ୟରେ ବି କେଉଁଠି ଆଶାର ସ୍ଫୁଲିଙ୍ଗଟିଏ କବି ଚେତନାର ଭୂମିରେ ଜ୍ୱଳ ଜ୍ୱଳ ହେଉଥାଏ । ମଣିଷର ସୃଜନଶୀଳତା ଓ କଲ୍ୟାଣ

କାମନାରୁ କବିତାର ସୃଷ୍ଟି । ତେଣୁ ଗଠନମୂଳକ ଚେତନା ପ୍ରତି ଆସ୍ଥା ପ୍ରକଟନ ଭାରତୀୟତାର ପ୍ରମୁଖ ସ୍ୱର । ପ୍ରଚୁର ଆଶାବାଦର ଉଚ୍ଚାରଣ, ସତ୍ୟ ସହ ସମ୍ଭାବନାର ସମ୍ପର୍କ ନିର୍ଣ୍ଣୟ, ପ୍ରେମରେ ତ୍ୟାଗପୂତ ଆତ୍ମୋତ୍ସର୍ଗ, ପାରିବାରିକ ସମ୍ପର୍କର ମହାନତା, ପରସ୍ପର ମଧ୍ୟରେ ଆତ୍ମୀୟତାର ମାର୍ମିକ ଚିତ୍ର ଅଙ୍କନଦ୍ୱାରା ଭାରତୀୟ ପ୍ରାଣପ୍ରବାହ ବେଗଗାମୀ ହୋଇଥାଏ । ବଙ୍ଗ କବି ରବୀନ୍ଦ୍ରନାଥଙ୍କ କାବ୍ୟ ସୃଷ୍ଟିରେ, ବିଷାଦ ମଧ୍ୟରେ ଆନନ୍ଦ – ଭାରତୀୟ ଅସ୍ତିବାଚକ ମାନସିକତାର ପରିଚୟ ପ୍ରଦାନ କରିଥାଏ –

''ଯେ ଫୁଲ ନା ଫୁଟିତେ, ଝରେଛେ ଧରନୀତେ
ଯେ ନଦୀ ମରୁ ପଥେ ହାରାଲୋ ଧାରା –
ଜାନିଗୋ ଜାନି ତାୟ ହୟନୀ ହାରା ।''

କିମ୍ବା ଓଡ଼ିଆ କବି ବୈକୁଣ୍ଠନାଥଙ୍କ କଣ୍ଠରେ – ଜୀବନର ସକଳ ଯାତନା ଓ ନିଷ୍ଠୁରତାରେ ଜର୍ଜର କବିସତ୍ତାର ତଥାପି ସର୍ତ୍ତହୀନ ବିହ୍ୱଳତାର ପରିପ୍ରକାଶ ଜୀବନ ପ୍ରତି ପ୍ରତିବଦ୍ଧତାର ସ୍ୱର ପ୍ରକଟିତ କରେ –

''ଜୀବନ ପାତ୍ର ମୋ ଭରିଛ କେତେ ମତେ
ନ ଦେଲ ବୋଲି କିଛି କହିବି କି ହେ ଆଉ–''

ତୃତୀୟତଃ, ମାନବ-ସମ୍ପର୍କ ଓ ପରିବେଶ ପ୍ରତି ସମ୍ବେଦନା । ଏହି ପର୍ଯ୍ୟାୟରେ ରାଜନୀତିକ ଜୀବନର କପଟାଚାର, ଅନ୍ତଃସାରଶୂନ୍ୟତା, ଅବକ୍ଷୟୀ ସାମନ୍ତବାଦ, ଦାରିଦ୍ର୍ୟ, ନକ୍ସଲ ଆନ୍ଦୋଳନ, ଧାର୍ମିକ ଉଦାରତା ଏସବୁର ଚିତ୍ର ମାଧ୍ୟମରେ ଏକ ସମକାଳୀନ ସମାଜର ଆତ୍ମିକ ମୂଲ୍ୟାୟନ କବିତା ମାଧ୍ୟମରେ ସମ୍ଭବ ହୋଇପାରିଛି । ଏସବୁର ଆଲେଖ୍ୟ ମଧ୍ୟରେ ସ୍ଲୋଗାନ ଅପେକ୍ଷା କବି ଚେତନାର ଆନ୍ତରିକ ସମ୍ପୃକ୍ତି, ଅନୁଭବ ଓ ଯନ୍ତ୍ରଣା ମୁଖ୍ୟ ରୂପେ ଉଚ୍ଚାରିତ ହୋଇଛି । ଉପନିବେଶବାଦୀ ଶିକ୍ଷା ସଭ୍ୟତାରୁ ଦୂରରେ ଥିବା ଋଷିପ୍ରତିମ ଓଡ଼ିଆ କବିଙ୍କ କଣ୍ଠରେ ସମ୍ବେଦନା ଓ ଆତ୍ମନିଗ୍ରହର ବ୍ୟାକୁଳ ଉଚ୍ଚାରଣ –

''ପ୍ରାଣୀଙ୍କ ଆରତ/ ଦୁଃଖ ଅପ୍ରମିତ/
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ/ ନର୍କେ ପଡ଼ିଥାଉ/
ଜଗତ ଉଦ୍ଧାର ହେଉ ।''

କିମ୍ବା,

''ଏକ ଖଡ଼ଗରେ/ ପାଞ୍ଚ ସାତ ମୁଣ୍ଡ/
ଛିଡ଼ଇ ଭାରତ ଯୁଦ୍ଧେ,
ଆରେକ ଅଙ୍ଗକୁ/ ପାଦେ ପ୍ରହାରିଲେ
ଏ ଅଙ୍ଗକୁ ମୋର ବାଧେ ।''

ଚତୁର୍ଥତଃ, ନାରୀର ସ୍ଥିତି ପ୍ରତି ଆନ୍ତରିକ ଦରଦର ଚିତ୍ରଣ – ବେଦ ପୁରାଣ ଯୁଗର ନାରୀ ବେଦ ରଚୟିତ୍ରୀ ଗାର୍ଗୀ, ପୁରାଣ ଚରିତ୍ର ଅହଲ୍ୟା, ଦ୍ରୌପଦୀ, ଶବରୀ ଅଶେଷ ଶକ୍ତିମତୀ ମହିଳା ଥିଲେ । ମାତ୍ର ପରବର୍ତ୍ତୀ କାଳରେ ସଭ୍ୟତାର ସଙ୍କଟ ଓ ରାଜନୀତିକ ପରାଧୀନତା ହେତୁ ନାରୀ ନିର୍ଯାତିତା ଓ ଅଧିକାରହୀନା ହୋଇପଡ଼ିଲା । ଫଳରେ ଏଥିପ୍ରତି ଏକ ସକ୍ରିୟ ପ୍ରତିବାଦର ସ୍ୱର କବିତା ମାଧ୍ୟମରେ ପ୍ରକଟିତ ହେଲା । ନାରୀର ଆତ୍ମିକ ମୂଲ୍ୟକୁ ପ୍ରତିଷ୍ଠା ଦେବାକୁ କେଉଁଠି କବିର ମାନସିକତା ସହାନୁଭୂତିର, କେଉଁଠି ପ୍ରତିବାଦର କେବେ ବା ବିଦ୍ରୂପର ଶାଣିତ ସ୍ୱର ଉତ୍ତୋଳନ କଲା ।

## ନିଜସ୍ୱ ମୂଳ ଚେତନା ପ୍ରତି ସଚେତନତା

କବି 'କଣ୍ଠାଭରଣ' ପୁସ୍ତକରେ କାବ୍ୟତତ୍ତ୍ୱବିତ୍ କ୍ଷେମେନ୍ଦ୍ର କହନ୍ତି – ''କବିର ପରିସୀମା ସୁବିସ୍ତୃତ । ସେ ପ୍ରାଚୀନ, ନୂତନ, ଅଭିଜାତ କବି, ଲୋକକବି ସମସ୍ତଙ୍କୁ ଅନୁଶୀଳନ କରିବ ଓ ସବୁଠୁଁ ଶୁଣି, ଶିଖି ନିଜର ସୃଜନ ମାନସିକତାକୁ ସମୃଦ୍ଧ କରିପାରିବ । କବି ସାଂସ୍କୃତିକ ଅସ୍ମିତାର ପରିଚୟ ଓ ଆତ୍ମବୋଧ ରକ୍ଷା ନିମିତ୍ତ ପ୍ରୟାସ ଜାରିରଖିବ ।''

ଏହି ପରିପ୍ରେକ୍ଷୀରେ ମିଥ୍ ଏଭଳି ଏକ ସଚେତନତା, ଯାହା ଅତୀତକୁ ବର୍ତ୍ତମାନ ସହ ସଂଯୁକ୍ତ କରୁଥିବାର ଉପଲବ୍ଧି କରିହେବ । ମିଥ୍ ବ୍ୟବହାରଦ୍ୱାରା ଏକ ନିର୍ଦ୍ଦିଷ୍ଟ କାବ୍ୟବୋଧ ତୀବ୍ର ଭାବେ ସଂପ୍ରେଷିତ ହୋଇଥାଏ । ଏଥିମଧ୍ୟରେ ପୁରାଣ, ଜ୍ୟୋତିଷବିଦ୍ୟା, ଆଧିଭୌତିକତା, ପାପପୁଣ୍ୟ ସବୁ କିଛି ସଂଶ୍ଳେଷିତ ହୋଇ ରହିଥାଏ ।

କବିର ଚେତନା ମଧ୍ୟରେ ଉପନିଷଦ, ପୁରାଣ, ଇତିହାସର ଏକ ଅବିଚ୍ଛିନ୍ନ ସ୍ରୋତ ଫଲ୍‌ଗୁ ଆକାରରେ ପ୍ରବାହିତ ହେଉଥାଏ । ଐତିହ୍ୟର ଅଙ୍ଗୀକାର ଓ ଇତିହାସବୋଧ ପ୍ରତି କବିର ସୃଜନଶୀଳତା ସଜାଗ ରହିଥାଏ । ରହିଥାଏ ମଧ୍ୟ

ବର୍ତ୍ତମାନ ଓ ଭବିଷ୍ୟତକୁ ନୂତନ ରୂପେ ଗଢ଼ିଦେବାର ସାମର୍ଥ୍ୟ ପ୍ରତି ସଚେତନ । ଐତିହାସିକ ଘଟଣା ଓ ଚରିତ୍ର ଉପସ୍ଥାପନାରେ ଏବଂ ଭାଷା ଓ ଶବ୍ଦମାନଙ୍କ ତାତ୍ପର୍ଯ୍ୟରେ ଇତିହାସ ସ୍ୱୀକୃତ ହୁଏ । ମିଥ୍‌ଧର୍ମୀ ସୃଷ୍ଟିରେ ଗଭୀର ପରମ୍ପରାବୋଧ ଜାଗ୍ରତ ହୋଇ ପୁରାଣ, ଇତିହାସ ଓ ଲୋକସଂସ୍କୃତିର ପୁନରୁଜ୍ଜୀବନ ଘଟାଏ ।

ପୁରାଣ ଓ ଇତିହାସ ଗୋଟାଏ ଅନ୍ତଃସ୍ରୋତ, ଯାହା କେଉଁ ଯୁଗରୁ ଏଯାବତ୍ ବହିଚାଲିଛି । ମିଥ୍ ଏକ ବହମାନ ଅବବୋଧ (phenomenon) ଯାହା ସର୍ବଦା ଆମ ସହିତ ରହିଆସିଛି । ସାହିତ୍ୟ ସୃଷ୍ଟିର ପ୍ରାରମ୍ଭକାଳରୁ ମିଥ୍ ଥିଲା ଏବଂ ଶେଷ ପର୍ଯ୍ୟନ୍ତ ମଧ୍ୟ ଏହା ରହିବ । କାରଣ ମଣିଷ ହିଁ କେବଳ ନିଜ ଅନୁଭବର ପୁନଃସୃଜନ ଓ ପୁନର୍ବିନ୍ୟାସ କରିପାରେ । ଏହାର ଅନ୍ତରାଳରେ ମଣିଷର ଏହି ଆଗ୍ରହ ନିହିତ ଯେ, ଏ ପୃଥିବୀ ଯେଉଁପରି ଅଛି, ତା'ଠାରୁ କିଛିଟା ସୁନ୍ଦର ଓ ଉନ୍ନତ ହେଉ ।

ପାରମ୍ପରିକ ଉପାଦାନକୁ ଆଉ ଥରେ ସଜାଡ଼ି ଉପସ୍ଥିତ ସମୟ ସମ୍ମୁଖରେ ରଖିବା – ପରମ୍ପରାର ଆଲୋକରେ ନୂଆକୁ ଚିହ୍ନିବା ଦିଗରେ ମିଥ୍ ପ୍ରଯୋଜିତ ହୋଇଥାଏ । ଏହାର ବ୍ୟବହାର କାବ୍ୟଚେତନାକୁ ଦେଶକାଳର ନିଗଡ଼ରୁ ମୁକ୍ତି ଦିଏ । ମିଥ୍ ସହ ଇତିହାସ ସମ୍ପର୍କିତ । ମିଥ୍ ଓ ଇତିହାସ ସତ୍ୟ ବା ଅସତ୍ୟ ହୋଇପାରେ । ରାମାୟଣ, ମହାଭାରତ ଅବଶ୍ୟ ମିଥ୍ – କିନ୍ତୁ ଏଥିରେ ଇତିହାସ ନ ଥିବ ବୋଲି କିଏ ପ୍ରମାଣ କରିପାରିବ ? ଅଭିନବଗୁପ୍ତ କହନ୍ତି – ''ପ୍ରେକ୍ଷାଗୃହରେ ପ୍ରସ୍ତୁତ ଦୃଶ୍ୟ ଏକାନ୍ତ ସତ୍ୟ ନୁହେଁ, ଅସତ୍ୟ ମଧ୍ୟ ନୁହେଁ – ଦର୍ଶକ ସେଥିରୁ ସତ୍ୟାସତ୍ୟ ଅନୁଭୂତି ଲାଭ କରିଥାଏ ।'' କଳା ଓ ମିଥ୍ ଅଭିନ୍ନ – ସତ୍ୟ ବା ଅସତ୍ୟ ହୋଇପାରେ । କିନ୍ତୁ ମିଥ୍-ଅଭିବ୍ୟକ୍ତି, ପରିବର୍ତ୍ତନର ସମ୍ଭାବନାଯୁକ୍ତ । ଏହି ଅଭିବ୍ୟକ୍ତିର ନୂତନ ପ୍ରୟୋଗ ଓ ନିର୍ମାଣ ଘଟିପାରେ । କବିମାନେ ନୂତନ ପ୍ରୟୋଗଦ୍ୱାରା ପ୍ରବାହ ବିରୋଧରେ ମିଥ୍‌ର ନବୀକରଣ କରିଥା'ନ୍ତି । ଆତ୍ମ-ଆବିଷ୍କାର ଦିଗରେ ମଧ୍ୟ ମିଥ୍‌ର ଉପଯୋଗ ଏକ ପ୍ରୟାସ । ମାନବ ଅସ୍ତିତ୍ୱର ମୂଳସତ୍ୟକୁ ଉଦ୍‌ଘାଟନ କରିବା ମିଥ୍‌ର ଧର୍ମ । ମଣିଷର ମୂଳ ଜୀବନଚର୍ଯ୍ୟା, ତା'ର ଜଟିଳତା, ତୃପ୍ତି ଓ ଯନ୍ତ୍ରଣା ଚିରକାଳର । ମିଥ୍ ମାଧ୍ୟମରେ କବିଗଣ ଏହି ଜୀବନଚର୍ଯ୍ୟାକୁ ଅଧିକ ସଂପ୍ରେଷଣକ୍ଷମ କରିଥା'ନ୍ତି ।

କବିର ମାନସିକତା ମିଥ୍‌ଟିକୁ ପୁନର୍ଲିଖନ କରିପାରେ, ମୁଖ୍ୟତଃ ସାମ୍ପ୍ରତିକ କାଳର ପ୍ରାସଙ୍ଗିକତାକୁ ନେଇ ତାହାକୁ ଭବ୍ୟରୂପ ପ୍ରଦାନ କରିପାରେ ।

ଏହାଫଳରେ କାବ୍ୟାନୁଭୂତି ବ୍ୟାପକ ଓ ସମ୍ପ୍ରସାରିତ ହୁଏ । କାବ୍ୟ ଅଭିଜ୍ଞତା ହୁଏ ସୁସଂହତ । ଜୀବନ ଅଭିଜ୍ଞତାର ବୈଚିତ୍ର୍ୟମୟ ସଙ୍କଟ ସମ୍ମୁଖରେ ସ୍ଥାନ ଓ କାଳର ପାର୍ଥକ୍ୟ ନଗଣ୍ୟ । ତେଣୁ ଏ ଯୁଗର ନାୟକ ନାୟିକାଙ୍କ ଜୀବନାନୁଭୂତି ମଧ୍ୟ ପୁରାଣ ଚରିତ୍ରମାନଙ୍କର ଅନୁରୂପ ହୋଇପାରେ ।

ଏକବିଂଶ ଶତକର ପ୍ରାରମ୍ଭ କାଳକୁ ମିଥ୍, ଇତିହାସଚେତନା, ଲୋକଚେତନା ଏତେ ଶକ୍ତିଶାଳୀ ହୋଇପଡ଼ିଛି – କବିତାର ପଙ୍‌କ୍ତି ମଧ୍ୟକୁ ଏଥିରୁ କେତୋଟି ଧାଡ଼ି ବିଜୁଳିର ଝଲକ ପରି ପଶିଆସି କାବ୍ୟବକ୍ତବ୍ୟକୁ ଶାଣିତ, ଉଜ୍ଜ୍ୱଳ କରି ପକାଉଛନ୍ତି । ଏହା ସହିତ ମଧ୍ୟ ମିଥ୍ ଚେତନାକୁ ନେଇ ସମଗ୍ର କାବ୍ୟ ରଚିତ ହେବାର ପରମ୍ପରା ବଜାୟ ରହିଛି ।

ପ୍ରଖ୍ୟାତ ହିନ୍ଦୀ କବି ଧର୍ମବୀର ଭାରତୀଙ୍କ 'ଅନ୍ଧାଯୁଗ' ମହାଭାରତ ପରିବେଶକୁ ନେଇ ରଚିତ ଓ ସେହି ପରିବେଶ ଏ ଯୁଗର ଯୁଦ୍ଧଧ୍ୱାନ୍ତ ପୃଥିବୀର ପରିବେଶଠାରୁ ଭିନ୍ନ ନୁହେଁ, ଏ କାବ୍ୟର ଏହାହିଁ ପ୍ରତିପାଦ୍ୟ ବିଷୟ । କବି ରାମଧାରୀ ସିଂ ଦିନ୍‌କରଙ୍କର କାବ୍ୟ 'ଉର୍ବଶୀ' ଓ 'ରଶ୍ମିରଥୀ' ସଫଳ ପୁରାଣକଳ୍ପର ଏବଂ କବି ମନୋଭୂମିରେ ଭାରତୀୟତାର ଉଦ୍‌ବର୍ତ୍ତନର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଭାରତୀୟ କବିଙ୍କ ମଧ୍ୟରେ ଧର୍ମବୀର ଭାରତୀଙ୍କ 'ଅନ୍ଧାଯୁଗ', ଅଜ୍ଞେୟଙ୍କ 'କିତ୍‌ନି ନାଓ ମେଁ', 'କିତ୍‌ନିବାର୍', ବଙ୍ଗଳାର କବି ନୀରେନ୍ଦ୍ର ଚକ୍ରବର୍ତ୍ତୀଙ୍କ 'ଉଲ୍ଲଙ୍ଗରାଜା' ଶଙ୍ଖ ଘୋଷଙ୍କ ରଚନା ସମ୍ଭାର ଏ ବିଚାରରୁ ଉଲ୍ଲେଖଯୋଗ୍ୟ । ମାଲୟାଲମ୍‌ର ଓ.ଏନ୍.ଭି. କୁରୁପଙ୍କର 'ସ୍ୱୟଂବର', ହିନ୍ଦୀରେ ଡଃ ଦେବରାଜଙ୍କର 'କିରଣ ବ୍ୟୂହ ବହୁରଙ୍ଗେ' ଆଦି କାବ୍ୟକବିତା ମିଥ୍‌ର ପ୍ରାସଙ୍ଗିକତାକୁ ନେଇ ବହୁମୁଖୀ ସମ୍ଭାବନାକୁ ଆବିଷ୍କାର କରିପାରିଛି । ଓଡ଼ିଆ କବିମାନଙ୍କ ମଧ୍ୟରେ ବେଣୁଧରଙ୍କ 'ପିଙ୍ଗଳାର ସୂର୍ଯ୍ୟ', ରମାକାନ୍ତଙ୍କ କ୍ରାନ୍ତିକାରୀ କାବ୍ୟ 'ଶ୍ରୀରାଧା' ଓ 'ଶ୍ରୀପଳାତକ', ସୀତାକାନ୍ତଙ୍କ 'ଅଷ୍ଟପଦୀ', ସୌରୀନ୍ଦ୍ରଙ୍କ 'ଉପଭାରତ', 'ଅନୁଭାରତ', ଶରତଚନ୍ଦ୍ରଙ୍କ 'ଯଯାତି', ପ୍ରତିଭାଙ୍କ 'ଶବରୀ', ହରପ୍ରସାଦଙ୍କ 'ବଂଶ'ଠାରୁ ହୃଷୀକେଶଙ୍କ 'ଧର୍ମପତ୍ନୀ', ଶତ୍ରୁଘ୍ନଙ୍କ 'ଶ୍ରାବସ୍ତୀରୁ ଶ୍ରାବସ୍ତୀ', ପ୍ରଦ୍ୟୁମ୍ନଙ୍କ 'ପୂତନା' ପର୍ଯ୍ୟନ୍ତ ସୃଜନରେ ମିଥ୍‌ର ସଫଳ ପ୍ରୟୋଗ ଭାରତୀୟ ଚେତନାର ପୁନରୁଜ୍ଜୀବନ ଘଟାଇଛି । ଏହା ବ୍ୟତୀତ ସୌଭାଗ୍ୟଙ୍କ 'ଦ୍ୱାସୁପର୍ଣ୍ଣା', ରାଜେନ୍ଦ୍ରଙ୍କ 'ବୋଧିନଭ', ଦୀପକଙ୍କ 'ରକ', ହରିହରଙ୍କ 'ସନ୍ଧ୍ୟାଦର୍ଶନ', ଫନୀଙ୍କ 'ବିଷାଦଯୋଗ'ଠାରୁ ପ୍ରସନ୍ନଙ୍କ

'ପ୍ରିୟସଖା' ପର୍ଯ୍ୟନ୍ତ କାବ୍ୟକବିତାରେ ଉପନିଷଦ-ଗର୍ଭିତ ଚେତନା ଓ ଅନୁଭବ ପ୍ରମୂର୍ତ୍ତ ଏବଂ ପ୍ରତିଷ୍ଠିତ ହୋଇପାରିଛି ।

## ମାନବ ସମ୍ପର୍କ ଓ ପରିବେଶ ପ୍ରତି ସମ୍ବେଦନା

ଏ ଯୁଗର ସ୍ଥିତିବାଦୀ ମଣିଷ ଏକକ ଓ ଅସହାୟ ହୋଇପଡ଼ିଛି । ଭାରତୀୟ ଦୃଷ୍ଟିରୁ 'ସଂଗଚ୍ଛ ଧ୍ୱଂ' ପ୍ରତି କ୍ଷେତ୍ରରେ ବ୍ୟାହତ ହେଉଛି । ସ୍ନେହ, ପ୍ରେମ, ପଣ୍ୟ ରୂପେ ପରିଗଣିତ ହେଉଛି । ମିଥ୍ୟାଚାରର ଜାଲରେ ସତ୍ୟ ଓ ସ୍ୱାଭିମାନ ଛଟପଟ ହେଉଛି । ଏଭଳି ଏକ ସମାଜରେ କବି ବ୍ୟାକୁଳଭାବେ ସାହାରା ଖୋଜୁଛି । ଅବକ୍ଷୟୀ ସମ୍ପର୍କର ଓ ସମାଜର ଚିତ୍ର ଆଙ୍କି ସେ ଏକ ମୂଲ୍ୟଭିତ୍ତିକ ଜୀବନ ବଞ୍ଚିବାର ଦିଗକୁ ନିର୍ଦ୍ଦେଶ କରୁଅଛି । ପ୍ରକୃତି ଓ ପରିବେଶ ମଣିଷର ସର୍ବଗ୍ରାସୀ ଲୋଭ ନିକଟରେ ତୁଚ୍ଛ ମନେହେଉଛି । ଏହିଭଳି ଏକ ଅବକ୍ଷୟ ବିରୋଧରେ ସଜାଗ ପ୍ରହରୀରୂପେ ସ୍ୱର ଉତ୍ତୋଳନ କରି ଏକ ଗଠନମୂଳକ ଦୃଷ୍ଟିର ଉପସ୍ଥାପନା କରିଛି କବି ।

ରାଜନୀତିକ ଓ ସାମାଜିକ ସ୍ୱାର୍ଥସର୍ବସ୍ୱତା, ପ୍ରତାରଣା, ଭଣ୍ଡତା, ମିଥ୍ୟାଚାର ମଣିଷର ଅସ୍ତିତ୍ୱକୁ ବିଶ୍ୱାସହୀନ କରିପକାଉଛି । ଏହି ବିଶ୍ୱାସଘାତର ଚିତ୍ର ବ୍ରଜନାଥ ରଥଙ୍କ କଣ୍ଠରେ –

> ''ସ୍ୱାର୍ଥର ପଶାଖେଳରେ
> ବାଜିମାତ୍ କରିସାରିବା ପରେ
> ସେମାନେ ଖୋଲି ଦେଲେ
> ସେମାନଙ୍କ କରୁଣାର ଅକ୍ଷୟ ଭଣ୍ଡାର
> ଆଉ ଏକାନ୍ତ ଦରଦୀ ହୃଦୟର
> ଘୁମନ୍ତ ଓ ନିବୁଜ ଦରଜା ।''

ମଣିଷର ସମ୍ପର୍କ କ୍ରମଶଃ ଅନ୍ତଃସାରଶୂନ୍ୟ ହୋଇଚାଲିଛି । ତା'ର ବାହ୍ୟ ଚାକଚକ୍ୟ ଓ ଆଭ୍ୟନ୍ତରୀଣ କୁତ୍ସିତତା ମାନବିକତାକୁ ଶ୍ୱାସରୁଦ୍ଧ କରୁଛି । ବ୍ୟକ୍ତି ଚରିତ୍ରର ଅବକ୍ଷୟକୁ ସୂଚାଇ ହରପ୍ରସାଦ ପରିଚ୍ଛା ପଟ୍ଟନାୟକ ସ୍ୱର ଉତ୍ତୋଳନ କରନ୍ତି –

> ''ପିତାପଲ୍ଲୀ ଛକରେ ଓଲଟି ପଡ଼ିଥିବା
> ଆନ୍ଧ୍ର ଟ୍ରକ୍‌ରୁ ମାଛ ଲୁଟି ନେବନି
> ପୁଲିସ ବାଲା,

ବିଷ ପେଇ ମାରିଦେବନି
ମାତୃତ୍ୱରେ ଫୁଟି ଉଠୁଥିବା ନାରୀକୁ
ମୁଁ ଜାଣେ ଅନ୍ଧାରର ପୃଥିବୀ
ଆଉ ଏକ ମାୟା ।''

ପ୍ରକୃତି ଓ ପରିବେଶ ଭାରତୀୟ ସହାବସ୍ଥାନର ଏକ ମୁଖ୍ୟ ଅଂଶ । ପ୍ରକୃତି ପୂଜା ଏହି ଅର୍ଥରେ ବହୁ ପୂର୍ବରୁ ପ୍ରଚଳିତ । ବର୍ତ୍ତମାନର ଯାନ୍ତ୍ରିକ ଓ ବୈଷୟିକ ମନୋବୃତ୍ତିସମ୍ପନ୍ନ ମଣିଷ ନିଜର ଐତିହ୍ୟ ସଂସ୍କୃତି ତଥା ପ୍ରକୃତି ଓ ପରିବେଶ ପ୍ରତି ସ୍ପୃହାହୀନ ହୋଇପଡ଼ିଛି । ଏହାର ସୂକ୍ଷ୍ମ ନିରୀକ୍ଷଣ ଅରୂପାନନ୍ଦ ପାଣିଗ୍ରାହୀଙ୍କ ଚେତନାରେ ପ୍ରମୂର୍ତ୍ତ ।

''ମାଟି ଖୋଳୁ ଖୋଳୁ ବିଲରେ ହଜିଥିବା ଦା' ପାଇବ
ନାସ କରାଟ, କଣ୍ଟାଳପାତି, ଶିଙ୍ଘ ପାନିଆ,
ରବର କଣ୍ଢେଇର ରାଧା ପାଇବ... ନା ମାଟି ଖୋଳିବ
କୋଉ ତଳ ବିତଳରେ ପାଣିର ଫରୁଆ
ଚିକ୍ ଚିକ୍ ପାଣି ପୋକ ଖେଳୁଛନ୍ତି
ଭଉଁରୀ ଖେଳ ।''

ପରିବେଶର ଭୟଙ୍କର ଧ୍ୱଂସ, ବୋମା, ବନ୍ଧୁକ, କ୍ଷେପଣାସ୍ତ୍ର ଏମିତି କି ଶିଳ୍ପାୟନ – ଏସବୁ ପ୍ରକୃତି ବିପକ୍ଷରେ ମଣିଷ ଜାତିର ସମ୍ବେଦନହୀନ ଅତ୍ୟାଚାର । ଏହାର ଭବିଷ୍ୟତ ଯେ ତୀବ୍ର, କଠୋର, ଏହା ଆଜି କ୍ଷମତାପନ୍ନ, ଅର୍ଥଲୋଭୀଗଣ ହୃଦୟଙ୍ଗମ କରିବାକୁ ଅସମର୍ଥ । ଅଥଚ, ଏହାର ପରିଣତି –

''ତା' ପରେ ହୁଏତ ସେ ତରଳିଯିବ, ଭାଙ୍ଗିପଡ଼ିବ
ଖସି ପଡ଼ିବେ ତା'ର ଅଙ୍ଗପ୍ରତ୍ୟଙ୍ଗ
ଉଭେଇ ଯିବେ ସବୁ ଗଛପତ୍ର ଡାଳ ।
ସେ ପଡ଼ିରହିବ ବିକଳାଙ୍ଗ ଶିଶୁଟିଏ ପରି,
ତାକୁ ଗଢ଼ିଦେବାକୁ ହେବ ଆଉ ଥରେ
ନା ଥିବ ତୁମେ ନା ଥିବ ଏ ପୃଥିବୀ ।''

– ମନୁଷ୍ୟରୂପ : ଆଶୁତୋଷ ପରିଡ଼ା

ଅନୁରୂପ ପ୍ରତ୍ୟାଗତ ଅସହାୟତାର ଚିତ୍ର ଅନେକ କବିଙ୍କ ରଚନାରେ ପ୍ରମୂର୍ତ୍ତ-ବର୍ତ୍ତମାନ ପ୍ରକୃତି ଓ ପରିବେଶର ଅପଚୟ ଓ କ୍ଷୟ ଫଳରେ,

ସାରା ବିଶ୍ୱରେ ଏକ ଉତ୍କଟ ଅଭାବ ଦେଖାଦେଇଛି । ତାହା ପାଣିର ଅଭାବ । ଯାହା ଇଙ୍ଗିତ କରୁଛି ଅଚିରେ ଜୀବସକଳର ବିପର୍ଯ୍ୟୟ ଦିଗକୁ – କବି ଶତ୍ରୁଘ୍ନ ଏ ସମ୍ପର୍କରେ ଚେତାବନୀ ଦିଅନ୍ତି –

> ''ଏତେ ଏତେ ଯୁଦ୍ଧ ପରେ
> ଆଉ କେଉଁ ଯୁଦ୍ଧ ନିଭାଇବ ବସୁନ୍ଧରା ?
> ଯୁଗାବଧି ଲଢ଼ିଲେ ତ ଲୋକେ
> ଭୂମିପାଇଁ
> ଏବେ ଲଢ଼ନ୍ତି ସେମାନେ ତା' ତଳର ସଞ୍ଚିତ
> ଐଶ୍ୱର୍ଯ୍ୟପାଇଁ
> ଲଢ଼ିବେ ଏଣିକି ନିଶ୍ଚେ
> ବିଶୁଦ୍ଧ ପାଣିପାଇଁ–
> ଏଇ ଜାଣ ଶେଷ ଯୁଦ୍ଧ ।''

– *ପାଣି : ଶତ୍ରୁଘ୍ନ ପାଣ୍ଡବ*

## ଅସ୍ତିବାଚକ ଦୃଷ୍ଟିଭଙ୍ଗୀ

ମଣିଷ ଅମୃତତତ୍ତ୍ୱର ଅଧିକାରୀ, ସେ ଉତ୍ତରଣ ପ୍ରୟାସୀ । ଦୁଃଖ, ଜଟିଳତା, ମୃତ୍ୟୁ, ଶୋକ ମଣିଷପାଇଁ ସର୍ବଶେଷ ସତ୍ୟ ନୁହେଁ । ତା'ର ସୁଖ ଓ ଶାନ୍ତିପାଇଁ ପରିଜନ, ପରିବେଶ, ପ୍ରକୃତି ସବୁକିଛି ସହଯୋଗୀ ହେବାପାଇଁ ପ୍ରସ୍ତୁତ । ଏହି ବିଶ୍ୱାସ ଭାରତୀୟ କବି ଚେତନାକୁ ଉଦ୍‌ବୁଦ୍ଧ କରିଥାଏ ।

ନିଜ ଚଳଣି, ଆଚାର-ବ୍ୟବହାର, ରୀତିନୀତି, ଧର୍ମଦର୍ଶନ ସବୁକିଛି ନିରୀକ୍ଷଣ କରି ସେଥିରୁ ସାରସତ୍ତା ନିଃସାରିତ କରି ସ୍ୱରଚନା ମାଧମରେ ସେସବୁକୁ ଉଜ୍ଜୀବିତ କରିବା ଓ ମର୍ଯ୍ୟାଦା ପ୍ରଦାନ କରିବା ନିମିତ୍ତ କବିର ମାନସିକତା ପ୍ରୟାସଶୀଳ ହୋଇଥାଏ ।

ମଧୁକ୍ଷରା ପୃଥିବୀର ଅଧିବାସୀ ସୁଖପ୍ରତି ଅଶାୟୀ ହେଲେହେଁ ଦୁଃଖ, ଦୁର୍ଦ୍ଦଶା, ଜଟିଳତା, ଦୁର୍ବିପାକ, ରୋଗ, ଶୋକ, ହିଂସ୍ରତା ତାକୁ ନିୟତ ବିବ୍ରତ କରୁଥାଏ । ମାତ୍ର ଭାରତୀୟ ଦର୍ଶନ ଆଶାବାଦ ଉପରେ ବିଶ୍ୱାସ ସ୍ଥାପନ କରେ । ଏହି ପରିପ୍ରେକ୍ଷୀରେ ରାଜେନ୍ଦ୍ର ପଣ୍ଡାଙ୍କର ଉଚ୍ଚାରଣ ଲକ୍ଷ୍ୟଣୀୟ –

''ମୁଁ ଅଙ୍ଗୀକାର କରୁଛି ଜୀବନ, ମୁଁ ତୋତେ ଭଲପାଏ
ମୋତେ ଏଇ ବର ଦେ'ରେ ଜୀବନ
ଥରକୁ ଥର ମୁଁ ଯେମିତି ତୋର ଅଥଳ ଅଥୟ ତଅଁର ଭିତରେ
ଅଛି ଛୋଟ ଏକ ହୁଲି ଡଙ୍ଗା ପରି
ଏମ୍‌ତି ଉଲ୍ଲାସରେ ବେଦନାରେ ନାଚୁଥିବି
ଡେଉଁଥିବି, ଘୂରୁଥିବି, ଛିଟ୍‌କୁ ଥିବି
ମୋକ୍ଷ ଫୋକ୍ଷ ମୋର ଲୋଡ଼ା ନାହିଁ ।''

କିମ୍ବା, ସୌଭାଗ୍ୟ ମିଶ୍ରଙ୍କର ବିହ୍ୱଳତା –

''ଅନ୍ଧ ମହୁମାଛି
ଉଡୁଥା, ବୁଲୁଥା, ବୁଲୁଥା
କିଛି ଦେଖ୍‌ନା, ଦେଖ୍‌ନା, ଦେଖ୍‌ନା
ଯାହା ପାରୁଛୁ ଶୁଣ୍ଢ ପୂରାଇ ଚୋଷିନେ, ଚୋଷିନେ
ହିସାବ ହେବ ପରେ ।''

ଜୀବନର ଉଜ୍ଜ୍ୱଳ ଦିଗର ଅନ୍ୟ ଏକ ପରିଭାଷା ପ୍ରତିଭା ଶତପଥୀଙ୍କ ରଚନାରେ –

''ଗୋଧୂଳିର ନକ୍ଷତ୍ର ପରି
କଅଁଳି ଆସୁଥିବା ଆଶା ଆଡ଼କୁ ଅନାଅ
ଅନ୍ଧାର ସବୁ କିଛି ନୁହଁ ।''

## ନାରୀ ସ୍ଥିତି ପ୍ରତି ଆନ୍ତରିକତା

ନାରୀକୁ ଉପଯୁକ୍ତ ସମ୍ମାନ ଦେଇ, ମାତା, ପ୍ରିୟା, ଭଗିନୀ ଓ କନ୍ୟା ଆସନରେ ପ୍ରତିଷ୍ଠା କରି ତା' ପ୍ରତି ହେୟଭାବ ଓ ହତାଦରକୁ ମନରୁ ଯଥାସମ୍ଭବ ଆଡ଼େଇଦେଇ କବିଗଣ ତା'ର ମହତ୍ତ୍ୱ, ନିଜତ୍ୱ ଓ ବ୍ୟକ୍ତିତ୍ୱ ପ୍ରତିଷ୍ଠା ଦିଗରେ ତତ୍ପର ହୋଇଛନ୍ତି । ଏଇ ବିଂଶ ଶତକରେ ଭାରତୀୟ ଜନଜୀବନରେ ଯଦି କୌଣସି ଦୃଶ୍ୟମାନ ପରିବର୍ତ୍ତନ ଖୁବ୍ ଉଜ୍ଜ୍ୱଳଭାବେ ପ୍ରେକ୍ଷ୍ୟ, ତାହା ନାରୀର ବାସ୍ତବତାର ରୂପାୟନ । କବିର ମାନସିକତା ନାରୀ ବ୍ୟକ୍ତିତ୍ୱର ଶକ୍ତି ଓ ଗୁରୁତ୍ୱକୁ ସ୍ୱୀକାର କରିଛି ଓ କ୍ରମଶଃ ବେଦ ପୁରାଣଯୁଗୀୟ ନାରୀର ମର୍ଯ୍ୟାଦାପନ୍ନ ସ୍ଥିତି ପୁନର୍ବାର ଏ ଯୁଗରେ ପ୍ରତିଷ୍ଠା ପାଇବାର ସମ୍ଭାବନାକୁ ଦୂରବର୍ତ୍ତୀ କରି ରଖି ନାହିଁ ।

ବିଗତ ଶତାବ୍ଦୀର ପ୍ରସିଦ୍ଧ ହିନ୍ଦୀ କବି ଦିନ୍‌କର ନାରୀ ସତ୍ତାର ମହତ୍ତମ ଦିଗକୁ ରୂପ ଦେଇଛନ୍ତି – ମାତୃତ୍ୱର ବିପୁଳତା ଓ ବ୍ୟାପକତାକୁ ସୂଚାଇ ସେ ଉଚ୍ଚାରଣ କରିଛନ୍ତି –

"ଗଲ୍‌ତି ହୈ ହିମ୍‌ଶୀଲା
ଗଠନ୍ ଦେହ୍‌କୀ ଖୋ କର୍
ପର୍ ହୋ ଯାତୀ ଅସୀମ୍
କିତ୍‌ନି ପୟସ୍ୱିନୀ ହୋକର ।"

ନାରୀର ରୂପ ଈଶ୍ୱରଙ୍କ ମହାକଳ୍ପନାର ଏକ ଅଂଶ, ଏହା ମଧ୍ୟ କବିମାନେ ବିନା ଦ୍ୱିଧାରେ ସ୍ୱୀକାର କରିଛନ୍ତି ।

ଅନେକ ଓଡ଼ିଆ କବିଙ୍କ ମାନସିକତା ନାରୀର ବ୍ୟକ୍ତିତ୍ୱ ଓ ସ୍ୱାଧିକାର ପ୍ରସଙ୍ଗର ଅନୁଶୀଳନ ନିମିତ୍ତ ପ୍ରୟାସଶୀଳ ।

ଗଭୀର ସଚେତନତା ଓ ଆନ୍ତରିକତା ସହ ଏ ଯୁଗରେ ନାରୀର ସାମ୍ପ୍ରତିକ ସ୍ଥିତି ଓ ତା'ର ଜଟିଳତା ଏବଂ ଯନ୍ତ୍ରଣାକୁ ଚିତ୍ରଣ କରାଯାଉଛି । । ସମାଜ ଓ ପରିବାରର ବାଛବିଚାର ସମ୍ମୁଖରେ ସେ ଅସହାୟା ହୋଇପଡ଼ୁଛି । ବେଳେ ବେଳେ ଅନୁଚ୍ଚ ବିପ୍ଳବର ସ୍ୱର ସହ ନାରୀ ଅସ୍ତିତ୍ୱ ପ୍ରତି ବ୍ୟଙ୍ଗ ଅନେକ ରଚନାରେ ଲକ୍ଷ୍ୟଣୀୟ । ତଥାପି ଭାରତୀୟ ନାରୀ ଆବହମାନ କାଳରୁ ଦାମ୍ପତ୍ୟ ସମ୍ପର୍କକୁ ସମ୍ମାନ ଦେଇଛି । ସମୟକ୍ରମେ ସେ ଶୋଷଣର ଶିକାର ହୋଇଛି । ଏହି ପୁରୁଷ-ପ୍ରଧାନ ସମାଜରେ ନାରୀ ଲାଞ୍ଛିତା ଓ ଅଧିକାରହୀନା । ମୁକ୍ତଭାବେ କଥା କହିବାର ସ୍ୱାଧୀନତା ତା'ର ନାହିଁ । ନିଜ ବ୍ୟକ୍ତିତ୍ୱର ମର୍ଯ୍ୟାଦା ଦାବି କରି ବସିବା ତା' ପକ୍ଷରେ ନିନ୍ଦନୀୟ ବୋଲି ବିବେଚିତ ହୁଏ । ନାରୀ ଅମକର ମା', ଅମକର ସ୍ତ୍ରୀ ହେବ – କବି ଗିରିବାଳା ମହାନ୍ତି 'ନାରୀର ନାମଲୋପ'ର ଷଡ଼୍‌ଯନ୍ତ୍ର ପ୍ରକ୍ରିୟାଟି ଉପରେ ଟିପ୍ପଣୀ ଦିଅନ୍ତି –

"ବାପଘର ଗାଁରେ ଆଉ ଥରେ ତା'ର କାତ୍ୟାୟନୀ ନାଁ
ଉଚ୍ଚାରିତ ହୋଇଥିଲା
ଯେଉଁଦିନ ସେ ବାହାହେଲା
ବାସ୍, ତା'ପରେ ସେ ନାଆଁଟା
ପାଟଲୁଗା ସହ ପେଡ଼ିରଖା ହୋଇଗଲା ।"

– *କାତ୍ୟାୟନୀ*

ନାରୀର ଏତାଦୃଶ ସ୍ଥିତି ପ୍ରତି ସମ୍ବେଦନା ଓ ଶ୍ଳେଷ, ସୁଚେତା ମିଶ୍ରଙ୍କ କଣ୍ଠରେ –

"ଗୋଟେ ଧର୍ଷିତା ଲଜ୍ଜା
ଗୋଟେ ଜଖମ ନିଆଁ
ଏତେ ଶୀଘ୍ର ଶାନ୍ତ ହେବାର ନୁହଁ
ମୁଁ ଶବ୍ଦ ଖୋଜୁଛି
ହେଲେ ଏହାଠାରୁ ଅଧିକ କହିବାର ସ୍ୱାଧୀନତା
କେବେ କ'ଣ ପୁରୁଷ ଦେଇଛି ?"

ନାରୀଟିଏ ତା' ବିପନ୍ନ ମର୍ଯ୍ୟାଦାକୁ ଲୁଚାଇବାକୁ ଚାହିଁଲେ ବି ଲୁଚାଇ ପାରେନା –

"ସାଢ଼େ ପାଞ୍ଚ ମିଟର ମର୍ଯ୍ୟାଦାରେ
ମୁଁ ନିଜକୁ ଗୁଡ଼େଇ ଦେଇଛି
ଓ ନିଜ ମହିମାରେ
ନିଜେ ଘାରି ହେଉଛି ।
× × ×
ମୋ ପେଟ ଛାତି ଓ ପିଠି
ତଥାପି ଦିଶିଯାଉଛି କିଛି ଅଂଶ
ଏତେ ଲମ୍ବା ଶାଢ଼ିଟେ ବି ଯାହାକୁ
ଲୁଚାଇବାକୁ ନିଅଣ୍ଟ ।"

– *ଶାଢ଼ି : ପାରମିତା ଶତପଥୀ*

ଇତିହାସରେ ଲିପିବଦ୍ଧ ନାରୀ ଅସ୍ତିତ୍ୱକୁ ନେଇ ଅନେକ ଲଜ୍ଜାର ଆଜି ମଧ୍ୟ ପୁନରାବୃତ୍ତି ହେଉଛି । ତଥାପି ନାରୀଟି ମରିପାରୁନି । ସମୟ ଓ ସଂସାରର ସକଳ ଅବହେଳା ସତ୍ତ୍ୱେ ବି ଜାରିରହିଛି ତା'ର ବଞ୍ଚିରହିବା ।

"ଇତିହାସରେ ଲିପିବଦ୍ଧ ହୁଏ
ପ୍ରତିଟି ନୂଆ ଲଜ୍ଜା
ଅଶ୍ଳୀଳ ରୋଚକ ଦୃଶ୍ୟ
× × ×

ତଥାପି ମରିପାରୁ ନ ଥିବା ସେ ସ୍ତ୍ରୀଲୋକ
ଥରକୁ ଥର ଯୋନିରୁ ଆଡ଼ଉଥାଏ ଲୁଗା
ଇତିହାସରୁ ଛେଲୁଥାଏ ବକଳା
ଦୁନିଆକୁ ଏଇଆ ଦେଖେଇବାକୁ ଯେ
କେହି କେବେ କରିପାରିନି
ତା' କ୍ଷତର ଆକଳନ
ନା ସମୟ ନା ସଂସାର ।''

*- ମରିପାରି ନ ଥିବା ଗୋଟେ ସ୍ତ୍ରୀଲୋକ : ଗାୟତ୍ରୀବାଳା ପଣ୍ଡା*

ତେବେ, ଏକବିଂଶ ଶତାବ୍ଦୀର କବି ଭାରତୀୟତାର ମହାନ୍ ପରମ୍ପରା ଓ ସୃଜନ କର୍ମରୁ ଶକ୍ତି ସଂଗ୍ରହ କରି କବିତାକୁ ସମୟୋପଯୋଗୀ କରିବାରେ ଓ ଆତ୍ମଅନ୍ୱେଷା ତଥା ଆତ୍ମବୋଧର ମୂଲ୍ୟକୁ ପ୍ରତିଷ୍ଠା କରିବାରେ ପ୍ରୟାସୀ ହୋଇଅଛି । ଭାରତୀୟତାର ବହୁବିଧ ସ୍ୱରୂପ ଓ ଦିଗ୍‌ବିଦିଗ ପ୍ରସାରର କେତୋଟି ମୁଖ୍ୟ ଦୃଷ୍ଟାନ୍ତ ଏଠାରେ ଉପସ୍ଥାପନ କରାଗଲା । ଭାରତୀୟ କବିତାରେ ଭାରତୀୟତାର ସ୍ୱରୂପ ବିଂଶ ଶତକର ଉତ୍ତରାର୍ଦ୍ଧରୁ ଏଯାବତ୍ କ୍ରମଶଃ ଅର୍ଦ୍ଧସ୍ଫୁଟ ପଦ୍ମ ପରି ପାଖୁଡ଼ା ପରେ ପାଖୁଡ଼ା ମେଲି ବିକଶିତ ହେବାରେ ଲାଗିଛି ।

(ଭାରତୀୟ ଭାଷା ପରିଷଦ, କଲିକତାଠାରେ ଏକ ସର୍ବଭାରତୀୟ ସେମିନାର୍‌ରେ ପଠିତ ଇଂରାଜୀ ପ୍ରବନ୍ଧର ଓଡ଼ିଆ ପ୍ରରୂପ, ୨୦୦୯, ମାର୍ଚ୍ଚ ପ୍ରଥମ ସପ୍ତାହ ।)

❑❑❑

# ଭଲ କବିତାର ମାନଦଣ୍ଡ

କବିତାର ଉଜ୍ଜ୍ୱଳତା ଓ ସଦ୍‌ଗୁଣ ବିଚାର କରିବାପାଇଁ ଆମେ କେଉଁ ମାନକ ନେଇପାରିବା ? ମୂଳକଥା, କବିତା କଅଣ ଓ କାହାକୁ କହିପାରିବା ଯେ, ଯେ ଏକ ଭଲ କବିତା । କବିତା କିଛି ନିରପେକ୍ଷ ବା ସାଧାରଣ ବର୍ଣ୍ଣନାତ୍ମକ ପଦ୍ଧତି ନୁହେଁ; ବରଂ ଏହା ମୂଲ୍ୟବୋଧଭିତ୍ତିକ ଅଭିବ୍ୟକ୍ତି । ଗୋଟିଏ ପଦ୍ୟାକାର ବା ଗଦ୍ୟାକାର ଲେଖାର କେଉଁ ଗୁଣ ଏହାକୁ କବିତା ସ୍ତରକୁ ନେଇଯାଏ ? ଯେତେବେଳେ ଆମେ ଗୋଟିଏ ଦି'ଟି ଲେଖାକୁ ବିଚାର କରୁ, ଆମର ନିର୍ଣ୍ଣୟାତ୍ମକ ମାନଦଣ୍ଡ ବିଷୟରେ କ୍ୱଚିତ୍ ଆଲୋଚନା କରିଥାଉ ।

ଏହା ଖୁବ୍ ସତ ଯେ, କବିତାଟି କେଉଁଥିପାଇଁ ଭଲ କବିତା, ତାହାର କାରଣ ନିର୍ଦ୍ଦେଶ କରିବାଠାରୁ, ଗୋଟିଏ ବିଶୁଦ୍ଧ କବିତାକୁ ଚିହ୍ନିନେବା ଅଧିକତର ସହଜ ହୋଇଥାଏ । କେତେକ ଆଲୋଚକ କହନ୍ତି, ''କବିତାକୁ ବୁଝିବା କଠିନ ହୋଇପାରେ; କିନ୍ତୁ ତାକୁ ଭଲପାଇଯିବା ଖୁବ୍ ସହଜ ।'' ଯଥାର୍ଥ ଶବ୍ଦଗୁଡ଼ିକୁ ସର୍ବୋତ୍ତମ ବାଗରେ ସଜାଇବା ହେଉଛି କବିତା । ସର୍ବୋତ୍ତମ ଅର୍ଥବହ ଓ ସ୍ମରଣୀୟ ବକ୍ତବ୍ୟକୁ ଆମେ କବିତାଭାବେ ଗ୍ରହଣ କରିଥାଉ । ଅବଶ୍ୟ, ଏଠାରେ ୱାର୍ଡ୍‌ସ୍‌ୱର୍ଥ ଓ ଇଲିୟଟ୍‌ଙ୍କ ସଂଜ୍ଞାକୁ ବିଚାରକୁ ନେଇପାରୁ । ଏମାନଙ୍କ ମତାମତ ପରସ୍ପରର ବିପରୀତ । କାରଣ, ଜଣେ କବି ରୋମାଣ୍ଟିକ୍ ତ ଆଉ ଜଣେ ଆଧୁନିକ କାବ୍ୟାନ୍ଦୋଳନର ପ୍ରବକ୍ତା । ଅର୍ଥାତ୍, ରୋମାଣ୍ଟିକ୍ ଚିନ୍ତାଧାରା ପ୍ରତି ପ୍ରତିକ୍ରିୟାଶୀଳ । ହେଲେ ବି, ଦୁଇ ଜଣଙ୍କୁ ଯୁକ୍ତିଯୁକ୍ତ ମନେ ହୁଏ, ନିଜ ନିଜ ବାଟରେ । କବିତାର ସମ୍ପୂର୍ଣ୍ଣ ସଂଜ୍ଞା ତେବେ କ'ଣ ହେବ ? କବିତାକୁ ଚିହ୍ନିବା, ନିଶ୍ଚୟ ଚିହ୍ନି ନ ଚିହ୍ନିବା, ନ ଚିହ୍ନି ଚିହ୍ନିବା ଭଳି ଏକ ବ୍ୟାପାର । ପ୍ରେମ ପରି ଏକ ବିପୁଳ ଭାବାନୁଭୂତିର ସମପର୍ଯ୍ୟାୟବାଚୀ ଏକ ଅବବୋଧ । ଭଲ କବିତାକୁ ଚିହ୍ନି ପାରିବାରେ ସମସ୍ୟା ତେଣୁ ରହିବ ହିଁ ରହିବ । କବିତା ପରିତ୍ରାଣର ଏକ ଉପାୟ । ଏହା ପାଠକ ସହ ଯୋଗାଯୋଗ ପ୍ରତିଷ୍ଠା କରିଥାଏ । ପାଠକ ତାହାକୁ ବୁଝିପାରିବା ଆଗରୁ ଯଦି ପଢ଼ିବସେ, ସେପରି ପଢ଼ିବା ହେଉଚି କୌଣସି ନିହିତାର୍ଥ ନ ଥିବା ଅର୍ଥକୁ କବିତାରୁ ଖୋଜିଲାଗିବା ।

ଛନ୍ଦ, ପଦ, ଧ୍ୱନି, ସଂହତି, ପରିଚ୍ଛନ୍ନତା ଓ ନିର୍ଦ୍ଦିଷ୍ଟ ଗ୍ରହଣଯୋଗ୍ୟତା ତଥା କାଳ୍ପନିକ ପରିମଣ୍ଡଳର ଏକ କଳାତ୍ମକତା କବିତାଦ୍ୱାରା ଫଳପ୍ରଦ ଭାବେ ନିୟୋଜିତ ହୋଇଥାଏ । ଏସବୁ ସତ୍ତ୍ୱେ ଯଦି ଆମେ କବିତାକୁ ଚିହ୍ନିବା ନିମିତ୍ତ ବସ୍ତୁବାଦୀ ମାନଦଣ୍ଡ ରଖିବା, ତେବେ ଆମ ଉଦ୍ୟମ ବିଫଳ ହେବ । କବିତା ପଢ଼ିବା ଏକ ବ୍ୟକ୍ତିକ ଅଭିଜ୍ଞତା, ତା'ର ତାତ୍କାଳିକ ଲକ୍ଷ୍ୟ ହେଉଛି – ଆନନ୍ଦାନୁଭବ । ଶେଷକୁ ତୁମେ ପଢ଼ିସାରି ନିଜର ଜନ୍ମଗତ ସଂସ୍କାରଦ୍ୱାରା ହିଁ ତାହାର ମୂଲ୍ୟ ବିଚାର କରିବ । ତୁମ ପ୍ରତିକ୍ରିୟାର ଗଠନମୂଳକ ଭାବ ବିଷୟରେ ସଚେତନ ହେବ । ହେତୁ ନିର୍ଦ୍ଧାରଣ କରିବା ପୂର୍ବରୁ, କବିତାଟି ଭଲ କି ମନ୍ଦ, ତୁମେ ଜାଣିପାରିବ । ଏସବୁ ପୂରାପୂରି ବ୍ୟକ୍ତିକ ବିଚାର । କବିତାକୁ ଚିହ୍ନିବାପାଇଁ, କବିତା ପଠନର ଅଭିଜ୍ଞତାଠାରୁ ପ୍ରକୃତରେ ଅନ୍ୟ କିଛି ନିର୍ଭରଯୋଗ୍ୟ ବିକଳ୍ପ ନାହିଁ । ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ, କବିତା ପଠନଦ୍ୱାରା ପାଠକ ନିଜ ସୂକ୍ଷ୍ମାନୁଭବକୁ ଦୀକ୍ଷିତ କରିବ ଓ ଅଭିଜ୍ଞତାର ମୁକ୍ତ ପ୍ରବାହକୁ ବେଗଗାମୀ କରିପାରିବ । ଜଣେ ପାଶ୍ଚାତ୍ୟ ଆଲୋଚକ ଓ କବି ଥରେ ନିଜକୁ ପଚାରିଲେ, ''ମୋ ଉପରେ ଯେ କବିତାଟି କି ପ୍ରଭାବ ପକାଇଲା ? ମୋତେ ଆନନ୍ଦ ଦେଲା ? ଯଦି ଦେଲା, କେତେ ବେଶି ଆନନ୍ଦ ଦେଇପାରିଲା ? ଯାକୁ ପଢ଼ି, ଯା ଦ୍ୱାରା ପ୍ରଭାବିତ ହୋଇ ମୋର ସ୍ୱଭାବରେ କେଉଁ ପ୍ରକାର ପରିବର୍ତ୍ତନ ଆସିପାରିଲା ?'' ଏସବୁ ପ୍ରଶ୍ନର ଉତ୍ତର ନିଶ୍ଚୟ ବ୍ୟକ୍ତି-ନିର୍ଭର, ତେଣୁ ଅନୁଭବପ୍ରବଣତାକୁ ନେଇ ସ୍ଥିରୀକୃତ ହୋଇପାରିବ । ଭାରତରେ ବିଭିନ୍ନ ଆଞ୍ଚଳିକ ଭାଷାରେ କବିତା ବହୁ ସଂଖ୍ୟାରେ ଲେଖାଯାଉଛି । ଏ କବିତାମାନଙ୍କର ଅନେକତ୍ୱ ମଧ୍ୟ ରହିଛି । ବେଳେ ବେଳେ ଉନ୍ନତ କବିତାରେ କଳାତ୍ମକ ମାନର ଅସଂହତି ମଧ୍ୟ ପ୍ରତିଫଳିତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ଯଦି କବିତାର ଆକାଡେମିକ୍ (ପାଠ୍ୟକ୍ରମ ଉଚିତ) ଆଲୋଚନା କରାଯାଏ, ତେବେ ଏଥିରେ ବିଭିନ୍ନ ଆନ୍ଦୋଳନ, ଚିନ୍ତାଧାରା, ବାଦ (ism) ଆସିଯାଏ । ଯେପରି ଦଳିତ କବିତା, ନାରୀବାଦୀ କବିତା, ସମାଜ ସଚେତନମୂଳକ କବିତା ଇତ୍ୟାଦି । ଜଣେ ପାଠକ କେବଳ ତା'ର ନିଜସ୍ୱ ଅଭିଜ୍ଞତାକୁ ଛାଡ଼ିଦେଲେ, ଏସବୁ ପ୍ରତି ଆଦୌ ଭ୍ରୂକ୍ଷେପ କରେ ନାହିଁ । ଭଲ କବିତା ପଠନର ଧର୍ମ ବା ଦାନ ହେଲା ଆନନ୍ଦ । ଆଗ୍ରହକୁ ଧରି ରଖିବା ଓ ପୁନର୍ବାର ପଢ଼ିବାକୁ ବାଧ୍ୟ କରିବା ହେଉଛି ଭଲ କବିତାର ଗୁଣ ।

ଅତି ଉନ୍ନତମାନର କବିତାଠାରୁ ଆମେ କ'ଣ ଆଶା କରୁ ? କୌଣସି ଭଲ କବିତା ପାଠକମାନଙ୍କର ସକଳ ଆଶାକୁ ପୂରଣ କରିପାରିବା ସମ୍ଭବ ନୁହେଁ । କବିତାର ମୂଳ ଦାନ ହେଲା ଜୀବନକୁ ସହିନେବା ଏବଂ ଉପଭୋଗ କରିବା ନିମିତ୍ତ ପାଠକକୁ ପ୍ରେରିତ କରିବା । କବିତାରେ ଯଥାଯଥ ସାନ୍ଦ୍ରତା ଥିବା ଆବଶ୍ୟକ । କେତେକ ମତ ଦିଅନ୍ତି – କଳା ସୃଷ୍ଟିରେ ଦୁଃସାହସିକତା ଦରକାର । ବହୁ କବିତା ବିଶ୍ୱକୁ ପରିବର୍ତ୍ତନ କରିବା ଚେଷ୍ଟାରେ ଅସଫଳ କବିତା ପଦବାଚ୍ୟ ହୋଇଯାଆନ୍ତି । କିନ୍ତୁ ଏକଥା ସତ ଯେ, କବିତା ନିଶ୍ଚୟ କିଛି ଘଟାଏ । ଚିରନ୍ତନ ବାର୍ତ୍ତା ଥିବା କବିତାଠାରୁ ସମୟର ଦାବିରେ ଲେଖାଯାଉଥିବା ଅନେକ କବିତା କଳାତ୍ମକତା ହରାଇବା ଅବଶ୍ୟମ୍ଭାବୀ । ମୋଟାମୋଟି ଆମେ ଭାବଗଭୀରତାର ସଞ୍ଚରଣ ଓ ପରମ୍ପରାର ଗୁଣକୁ କାବ୍ୟିକ ଯୋଗ୍ୟତା ବୋଲି ଗ୍ରହଣ କରୁ । କବିତାର ଏପରି କିଛି ଗୁଣ ମଧ୍ୟ ଥିବା ଉଚିତ, ଯାହା ସଂରଚନାରେ ଥିବା ତ୍ରୁଟିକୁ ବାଷ୍ପୀଭୂତ କରିଦେଇପାରିବ । ଭଲ କବିତାର ଚିତ୍ରପ୍ରକଟନ-କ୍ଷମତା ପ୍ରଚୁର । ଏହି ଚିତ୍ର ଜୀବନ୍ତ ଓ କ୍ରିୟାଶୀଳ, ଶବ୍ଦଗତ ସତ, ମାତ୍ର ଶବ୍ଦ ବାହାରେ ମଧ୍ୟ ତିଷ୍ଠି ରହିପାରେ । ମନନଶୀଳ ବିମ୍ବର ପ୍ରଭାବ ମୁଖ୍ୟତଃ ଇନ୍ଦ୍ରିୟଗ୍ରାହୀ । ଏହା ଦର୍ଶନେନ୍ଦ୍ରିୟ, ସ୍ପର୍ଶେନ୍ଦ୍ରିୟ, ଶ୍ରବଣେନ୍ଦ୍ରିୟ ଓ ଘ୍ରାଣେନ୍ଦ୍ରିୟ ତଥା ସ୍ୱାଦେନ୍ଦ୍ରିୟକୁ ପ୍ରଭାବିତ କରିଥାଏ । ଆଖି ସାମ୍ନାରେ ଦୃଶ୍ୟଟିଏ ହୋଇ ଫିଟିପଡ଼େ, ମଧୁର ସ୍ପର୍ଶ ହୋଇ ରୋମାଞ୍ଚ ସୃଷ୍ଟି କରେ, କାନରେ ମୂର୍ଚ୍ଛନା ତୋଳେ, ନାସାରେ ମଧୁର ସୁବାସ ଚହଟାଏ ଓ ଜିହ୍ୱାରେ ସ୍ୱାଦ ଭରିଦିଏ । ଶବ୍ଦମାନଙ୍କ ମାଧ୍ୟମରେ, ଭାଷାର ସଂହତି ମଧ୍ୟରେ ଏହା ଇନ୍ଦ୍ରିୟଗ୍ରାହୀ ହୁଏ ପୁଣି ଇନ୍ଦ୍ରିୟର ଗ୍ରହଣଯୋଗ୍ୟତା ଓ ଅଭିବ୍ୟକ୍ତ ବିମ୍ବର ସାମର୍ଥ୍ୟ ହେତୁ, ଶବ୍ଦ ଓ ଭାଷା ଅନ୍ତର୍ହିତ ହୋଇଯାଆନ୍ତି – ରହେ ଚିତ୍ରର ନିର୍ଯ୍ୟାସ । ଉନ୍ନତ କବିତାର ଗୁଣ ହେଉଛି, ଆଶ୍ଚର୍ଯ୍ୟଭାବ ତଥା ଅସାଧାରଣତ୍ୱର ପ୍ରକଟନ । ନିଜର ସାର୍ଥକ ରଚନା ସମ୍ଭାର ରହିଥିବା ସତ୍ତ୍ୱେ ପ୍ରତ୍ୟେକ ସତ୍‌କବି ଶବ୍ଦଶକ୍ତିର ଶେଷସୀମାରେ ପହଞ୍ଚିଯିବାକୁ ଅଭିଳାଷ ପୋଷଣ କରିଥା'ନ୍ତି । ଆମ କବି ଉପେନ୍ଦ୍ରଭଞ୍ଜ ତ ଗର୍ବ କରି ଉଚ୍ଚାରିଥିଲେ –

‘କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି
ଶବଦ ସାଗର ପାର ।’

ସେ ଅବଶ୍ୟ ଏଠାରେ ଶବ୍ଦସଂଖ୍ୟାକୁ ଓ ଅର୍ଥ-ବୈଭିନ୍ନକୁ ବିଚାରକୁ ନେଇଥିବେ । ମାତ୍ର ଏହା ଯଥେଷ୍ଟ ନୁହେଁ । ଶବ୍ଦର ସାମର୍ଥ୍ୟକୁ ଅଧିକ ଜୀବନ୍ତ ଓ

ଗତିଶୀଳ କରାଇବା ସତ୍‌କବିର ଲକ୍ଷ୍ୟ । ଶବ୍ଦଶକ୍ତିକୁ ଶେଷପର୍ଯ୍ୟନ୍ତ ଆବିଷ୍କାର କରିବା ଓ ସୁନିୟୋଜିତ କରିବା ଦିଗରେ କବି ଚେଷ୍ଟାରତ ହୋଇଥାଏ ।

କବିତା ଅଚିନ୍ତନୀୟ । କବିତା ଲେଖିବାର ଇଚ୍ଛା ଖୁବ୍ ମୂଲ୍ୟବାନ୍ । ଏହି ଇଚ୍ଛା ଯେତିକି ଆବଶ୍ୟକ, ସେତିକି ଅଭ୍ୟାସଗତ । ଏହି ଇଚ୍ଛା ସଂଜୀବିତ ରହିଲେ ହିଁ କବିତା ସଂରଚିତ ହେବାର ସମ୍ଭାବନା ଥାଏ । ବଞ୍ଚି ରହିବାର କାରଣଗୁଡ଼ିକୁ ଆମେ ଯଦି କେବେ ପରୀକ୍ଷା କରିବାର ଆବଶ୍ୟକତା ଅନୁଭବ କରୁ, ତା'ହେଲେ ଏହି ତାଲିକାରେ କବିତା ବଡ଼ ସମ୍ମାନାସ୍ପଦ ସ୍ଥାନ ପାଇବ ନିଶ୍ଚୟ । ଆଜିର ସମୟ ବଡ଼ ଚତୁର । କାବ୍ୟାତ୍ମକ ସୃଜନ ଓ ସମାଜର ଦାବି ମଝିରେ ଯେଉଁ ଆର୍ଥିକଭୌତିକ ଦୂରତ୍ୱ (ଖାଇ) ରହିଛି, ତାହା ବରାବର ପ୍ରଶସ୍ତ ହୋଇଚାଲିଛି । ଏହି ବାର୍ତ୍ତାପ୍ରଧାନ ଯୁଗରେ, ଶବ୍ଦର ଆବେଗିକ ମୂଲ୍ୟ ଭାଙ୍ଗି ଭାଙ୍ଗି ପଡୁଥିବାବେଳେ, ଆମେ ଯେ କବିତା ପଢ଼ିବାକୁ ଆଗ୍ରହ ପୋଷଣ କରିପାରୁଛେ, କବିତା ବାଛିପାରୁଛେ, ଚିହ୍ନିପାରୁଛେ, ପଢ଼ିପାରୁଛେ ଓ ତାହାଦ୍ୱାରା ପ୍ରଭାବିତ ହୋଇପାରୁଛେ, ଏହା ଖୁବ୍ ଆଶାପ୍ରଦ ଅବସ୍ଥା । ସବୁ ସ୍ତରରେ, ଧନୀଦରିଦ୍ର ନିର୍ବିଶେଷରେ କବିତାର ପାଠକ ମହଜୁଦ୍ ରହିଛନ୍ତି ।

ଶବ୍ଦର ଦାନ ବଡ଼ କଷ୍ଟ ଦିଏ, ଜଞ୍ଜାଳରେ ପକାଏ । ଠିକ୍ ପ୍ରେମର ବିହ୍ୱଳ ଦାନ ପରି । ନା ତାକୁ ତ୍ୟାଗ କରିହୁଏ, ନା ତାକୁ ଆଲିଙ୍ଗନ କରି ସହଜରେ ବଞ୍ଚିହୁଏ । ସତ୍‌କବି ଚାହେଁ ନିର୍ଜନତା, ଏକାକୀତ୍ୱ, ସେ ଚାହେଁ କେହି ନ ଦେଖୁ ତାକୁ । ଶୀତସନ୍ଧ୍ୟାରେ ଗହଳ ତୋଟାତଳେ ସେ ଏକାକୀ ଘୂରୁଥାଉ ବୋଲି ଇଚ୍ଛା କରେ । ଚେତନାର ବନ୍ଧନ ସେ ପସନ୍ଦ କରେ ନାହିଁ । ସେଥିରୁ ମୁକୁଳିଯିବାକୁ ସେ ପ୍ରତିବାଦର ସ୍ୱର ଉଠାଏ ବା ଭାଗ୍ୟକୁ ନିନ୍ଦେ । ନ ହେଲେ ଏଇ ଅସହ୍ୟ ଦୃଶ୍ୟଜଗତ ବାହାରେ ଏକ କାମ୍ୟ ଅଦୃଶ୍ୟ ଜଗତ ଗଢ଼େ । ଯେ ଜଗତ ଚକ୍ଷୁକୁ ଦିଶେ ନାହିଁ, ମାତ୍ର ଚେତନା ସ୍ତରରେ ସ୍ପଷ୍ଟ ହୋଇଉଠିଥାଏ । ଭଲ କବିତାଟିରେ ସ୍ୱର, ଶୈଳୀ, ଭାବବସ୍ତୁ, ମିତବାକ୍‌ତ୍ୱ ଓ ସଫଳ ହେବାର ଅଭିଳାଷ ଭିତରେ ଏକକତ୍ୱ ପ୍ରତିଷ୍ଠିତ ହୋଇଥାଏ । ବିଶ୍ୱ ସମସ୍ୟା, ନାରୀ ସମସ୍ୟା, ପ୍ରେମ, ସର୍ବତ ଗ୍ଲାସ୍, ମଲ୍ଲୀଫୁଲ – ଯେ ସକଳ ଉପାଦାନ ବା ଭାବରାଜି କବିତାର ଚମତ୍କାର ଓ ଶକ୍ତିଶାଳୀ ଉପଜୀବ୍ୟ ହୋଇପାରନ୍ତି । ସର୍ବଶେଷରେ କୁହାଯାଇପାରେ ଯେ, କବିତାର ମୂଲ୍ୟ ନିର୍ଦ୍ଧାରଣର ନାନାବିଧ ମାନଦଣ୍ଡ ରହିବ ଓ ଏହି ନିର୍ଦ୍ଧାରଣ ଆଦୌ ସହଜ ନୁହେଁ । ହୁଏତ ଠିକ୍ ଭାବରେ ନିର୍ଦ୍ଧାରଣ କରାଯାଇ ନ ପାରେ । କାରଣ, ମୂଲ୍ୟର ନିର୍ଦ୍ଦିଷ୍ଟତା ସବୁବେଳେ ନାନାବିଧ ପରିବର୍ତ୍ତନ ଦେଇ ଗତି କରିଥାଏ ।

❑❑❑

# କବି-ଆଲୋଚକ ଓ ପରମ୍ପରାବୋଧ

## କବି-ଆଲୋଚକ

କେହି କେହି କହିପାରନ୍ତି, କବିତା ବାହାରେ କବି ଆଉ କିଛି କହିବା ନିଷ୍ପ୍ରୟୋଜନ । କବିତାଟିଏ ସମ୍ପର୍କରେ କିଛି ପ୍ରଶ୍ନର ଉତ୍ତର ଯଦି କବିତା ନିଜେ ନ ଦେଇପାରେ, ତା'ହେଲେ ବୁଝିବାକୁ ହେବ ଯେ, ପ୍ରକୃତପକ୍ଷେ ତା'ର କୌଣସି ଉତ୍ତର ହିଁ ନାହିଁ । ଏହା ସତ୍ତ୍ୱେ ସାହିତ୍ୟ କ୍ଷେତ୍ରରେ ସମୃଦ୍ଧି ନିମନ୍ତେ କାବ୍ୟମୂଲ୍ୟକୁ ଓ କାବ୍ୟମାନଙ୍କୁ ବିଚାର କରିବାର ଏକ ସ୍ୱତନ୍ତ୍ର ଆବଶ୍ୟକତା ରହିଛି । ସୃଜନ ଓ ଆଲୋଚନା ପରସ୍ପରର ପରିପୂରକ । କବି ଯଦି ନିଜେ ବି ଜଣେ ଆଲୋଚକ ହୋଇଥା'ନ୍ତି, ଆଲୋଚନା ଯଥେଷ୍ଟ ସ୍ୱୟଂସମ୍ପୂର୍ଣ୍ଣ ହୋଇଥାଏ । ଅଧିକାଂଶ ସମୟରେ ବି ନିଜ ସୃଷ୍ଟିକୁ ବିଶ୍ଳେଷଣ କରିବାକୁ ଯାଇ କବିକୁ କିଛି କିଛି ଆଲୋଚନା କରିବାକୁ ପଡ଼ିଥାଏ । ଏହା ବ୍ୟତୀତ ରଚନା ଓ ଆଲୋଚନାର ଅନ୍ତଃ ସମ୍ବନ୍ଧ ରହିବା ବାଞ୍ଛନୀୟ ।

## ପରମ୍ପରାବୋଧ

କୌଣସି ଦେଶର ଅତୀତକୁ ବୁଝିବାକୁ ହେଲେ, ସେହି ଦେଶର ପୁରାଣ ସାହିତ୍ୟର ଜ୍ଞାନ ନିତାନ୍ତ ଆବଶ୍ୟକ । କୃଷକ ଯେପରି କୃଷିପାଇଁ ଭୂମିକର୍ଷଣ କରେ, କବି ସେହିପରି ସଂରଚନା ନିମିତ୍ତ ପରମ୍ପରାକୁ କର୍ଷଣ କରିଥାଏ । ମିଥ୍ ବା ପୁରାଣକଳ୍ପ ପରମ୍ପରାବୋଧର ଏକ ଅଂଶବିଶେଷ, ଏକ ପ୍ରସ୍ଫୁଟନ । ଆବହମାନ କାଳରୁ ଯାହା ଚଳିଆସିଛି, ତାହା ଯୁକ୍ତିସଙ୍ଗତ ଅନୁକ୍ରମରେ ଅବିଚ୍ଛିନ୍ନ ଭାବେ ଲମ୍ବି ଚାଲିଥିବ । କାଳଖଣ୍ଡରେ ହୁଏତ ସଂରଚନାର ଗଠନ ଅଲଗା ହୋଇପାରେ: କିନ୍ତୁ ଅନ୍ତଃସ୍ରୋତ ରହିବ । ତାହା କବିର ମାନସିକତାକୁ ପ୍ରଭାବିତ କରିବ । ପୂର୍ବବର୍ତ୍ତୀ କବିଙ୍କର କିଛିଟା ପ୍ରଭାବ ନିଶ୍ଚୟ ରହିବ । ତେବେ, ଆଧୁନିକତା ହିଁ ପରମ୍ପରା ଉପରେ ପ୍ରତିଷ୍ଠିତ ହୋଇ ପରମ୍ପରାକୁ ଅତିକ୍ରମ କରିଯାଏ । ସଚେତନ ବା ଅସଚେତନ ଭାବେ କବି ମନରେ ପରମ୍ପରାବୋଧ ଜୀବିତ ଥାଏ । ଗ୍ରହଣ ରୂପରେ ହେଉ ବା ବିରୋଧ ରୂପରେ ହେଉ, ପରମ୍ପରା କବି ଚେତନାକୁ ଗଠନ କରିବା ଦିଗରେ ସାହାଯ୍ୟ କରେ ।

ପରମ୍ପରା ମନକୁ ପ୍ରଭାବିତ କରେ: କିନ୍ତୁ ନୂତନତ୍ୱର ପ୍ରବର୍ତ୍ତନ ଆମ ଆତ୍ମାକୁ ମନ୍ତ୍ରମୁଗ୍ଧ କରେ । ପରମ୍ପରା ଓ ନୂତନତ୍ୱର ପ୍ରବର୍ତ୍ତନ, ଯେ ଉଭୟ ଆମପାଇଁ ଜରୁରୀ । ବାରମ୍ବାର ପରମ୍ପରାକୁ ନେଇ କେହି ଲେଖେ ନାହିଁ । କବି ପରମ୍ପରାକୁ ଜାବୁଡ଼ି ଧରି ନିଜ ସୃଜନଶୀଳତାକୁ ଆବିଷ୍କାର କରେ । ଆବଶ୍ୟକ ମୁତାବକ ପରମ୍ପରାରୁ କିଛି କିଛି ଗ୍ରହଣ କରେ ଓ ତାହାକୁ କ୍ରୀତଦାସ କରିବା ଚେଷ୍ଟାରେ ଲାଗିଥାଏ । ପରମ୍ପରା ଏକ ଅସୁର କିନ୍ତୁ 'ନୂତନତ୍ୱର ପ୍ରବର୍ତ୍ତନ' ହେଉଛି ଜଣେ ମାଆ । ସେ କବିକୁ ବର୍ଦ୍ଧିଷ୍ଣୁ କରେ । ମନେ କରାଯାଉ, କବି ଗୋଟେ ଗାଡ଼ିଚାଳକ । ତା'ର ପଛ ସିଟ୍‌ରେ ବସିଥା'ନ୍ତି ମାଆ ଓ କ୍ରୀତଦାସ । ସେ କାହାକୁ କୋଉଠି ସମ୍ପାଦିବ, ନିଜେ ନିର୍ଣ୍ଣୟ କରିଥାଏ । ମିଥ୍ ଭାଷା ଦ୍ୱାରା ସମୃଦ୍ଧ ହୁଏ ଓ ଭାଷାକୁ ମଧ୍ୟ ସମୃଦ୍ଧ କରାଏ । ମିଥ୍ ବା ପୁରାଣକଳ୍ପ ଏକ ଜର୍ଜରିତ ଅବସ୍ଥାରେ ସାମୂହିକ ସ୍ୱପ୍ନର ରୂପକଳ୍ପ । ଅନ୍ତର୍ଜଗତର ଭାବ ଉପାଦାନକୁ ବହିର୍ଜଗତର ଭାଷାରେ ଅଭିବ୍ୟକ୍ତ କରିବା ନିମିତ୍ତ ମିଥ୍ ଏକ ପ୍ରକୃଷ୍ଟ ଉପାୟ । ମିଥ୍‌ର ବ୍ୟବହାରଦ୍ୱାରା କବିତା ମଧ୍ୟରେ ଏକ ରହସ୍ୟମୟ ଅନ୍ତଃସ୍ରୋତ ପ୍ରବାହିତ ହୋଇଥାଏ । ଯେତେବେଳେ ଆମର ଅସ୍ମିତାର ପରିଚୟ ଧୂଆଁଳିଆ ହୋଇଯାଏ, ସେତିକିବେଳେ ମିଥ୍ ହିଁ ଅସ୍ମିତାର ଅବବୋଧକୁ ପ୍ରାଞ୍ଜଳ କରେ, ଅର୍ଥକୁ ବିସ୍ତାରିତ କରେ । ଭାଷାକୁ ଦୀପ୍ତ କରେ । କବିପଦର ଦାୟିତ୍ୱ ହେଉଛି ପରମ୍ପରାବୋଧ, କାଳଚେତନା, ମିଥିକ୍ ଦୃଷ୍ଟି ଓ ଐତିହାସିକ ଚେତନାକୁ ସମୁଦାୟ ଆତ୍ମସ୍ଥ କରିବା । ତେଣୁ ପରମ୍ପରାବୋଧ କବିପଦର ଏକ ଦାୟିତ୍ୱ ।

ବର୍ତ୍ତମାନ ଯୁଗରେ, ସମ୍ପୂର୍ଣ୍ଣ ରଚନାଟି ବା ପୁସ୍ତକଟି ମିଥ୍ ଉପରେ ରଚିତ ହେବା ଅପେକ୍ଷା ମିଥ୍‌ର ଖଣ୍ଡାଂଶ କବିତାରେ ବହୁଳଭାବେ ବ୍ୟବହୃତ ହେଉଛି । ପ୍ରାସଙ୍ଗିକ ଭାବରେ ମିଥ୍‌ର କିଛି ଅଂଶ ପ୍ରତ୍ୟକ୍ଷଭାବେ ବା ପରୋକ୍ଷଭାବେ କବିତା ଭିତରକୁ ପଶିଆସି ବିଜୁଳିର ଚମକ ଭଳି ଝଟକି ଉଠୁଛି । ଏହାଦ୍ୱାରା କବିତା ଶକ୍ତିଶାଳୀ ଓ ଅଧିକ ସମ୍ପ୍ରେଷଣକ୍ଷମ ହୋଇପାରୁଛି । ପ୍ରତ୍ୟେକ ସଫଳ କବି ତା'ର ପୂର୍ବଜମାନଙ୍କ ରଚନାର ବୈଶିଷ୍ଟ୍ୟ ଉତ୍ତମରୂପେ ଉପଲବ୍ଧି କରିଥାଏ । ଏହା ସହିତ ଅନ୍ୟାନ୍ୟ ବିଦେଶୀ ଭାଷାର କାବ୍ୟ ସାହିତ୍ୟ ଓ ଆଲୋଚନା ପ୍ରତି ମଧ୍ୟ ଉନ୍ମୁଖ ହୋଇଥାଏ । ହଠାତ୍ 'ଚମତ୍କାର' ପରି ବିଶ୍ୱ ସାହିତ୍ୟରେ କିଛି ସଂଘଟିତ ହୋଇ ନ ପାରେ । ପ୍ରତିଟି ଯୁଗର, ପ୍ରତିଟି ଭାଷାର କବିଙ୍କ ଅନ୍ତଃଚେତନାରେ ସମସ୍ତରର ଭାବ ମଧ୍ୟ ଉଦିତ

ହୋଇପାରେ । ଗୋଟିଏ ଭାଷାର କାବ୍ୟ ସାହିତ୍ୟର ପ୍ରଭାବକୁ ଅନ୍ୟ ଭାଷାର ଜଣେ ବିଚକ୍ଷଣ କବି ଗ୍ରହଣ କରି ତାହାକୁ ଆତ୍ମୀକରଣ ମାଧ୍ୟମରେ ପରିପୁଷ୍ଟ ମଧ୍ୟ କରିପାରେ । ଆମର ବିଶିଷ୍ଟ କବି ଗୁରୁପ୍ରସାଦ ଓ ମୂର୍ଦ୍ଧନ୍ୟକବି ରମାକାନ୍ତ, ଏଲିୟଟ୍‌ଙ୍କର 'Waste Land' ଓ 'Four Quartets'ର କିଛି ଚେତନାକୁ ଆତ୍ମୀକରଣ ମାଧ୍ୟମରେ ଅର୍ଥମୟ କରିପାରିଛନ୍ତି ।

ଉପଯୁକ୍ତ ଶବ୍ଦ ସଂଯୋଜନା କରି, ଭାଷାରେ ଅର୍ଥର ପ୍ରତିପତ୍ତିକୁ ଚିହ୍ନି, କବି ନିଜ ରଚନାରେ ବ୍ୟବହାର କରିଥାଏ । ବ୍ୟକ୍ତି-ସତ୍ୟକୁ ସାମୂହିକ-ସତ୍ୟରେ ଆରୋପିତ କରିବା କବିର ଉତ୍ତରଦାୟିତ୍ୱ । ତେବେ, କାବ୍ୟକବିତା ନିମିତ୍ତ ପାଠକୀୟ ଗ୍ରହଣଶୀଳତା ମଧ୍ୟ ଅନିବାର୍ଯ୍ୟ, କାବ୍ୟ ଅବବୋଧ ଦିଗରେ ପାଠକର କଳାଚେତନା ଓ ଇତିହାସ ଜ୍ଞାନ ସଂଯୋଜିତ ହୁଏ । ପ୍ରତ୍ୟେକ କବିର ନିଜସ୍ୱତା ଅଛି ଓ ତା'ର ରଚନାର ପରିସର ମଧ୍ୟ ଭିନ୍ନ । ତେଣୁ ସବୁ କବିଙ୍କୁ ଗୋଟିଏ ଛାଞ୍ଚରେ ବିଚାର କଲେ ଚଳିବ ନାହିଁ । ଆମେ ଅଧିକାଂଶ ଆଲୋଚନାକୁ ପାଶ୍ଚାତ୍ୟ ଦେଶର ସାହିତ୍ୟାଲୋଚନାର ଦିଗ ସହ ସମ୍ପୃକ୍ତ କରିଦେଉଛୁ । ତାହା ଯୁକ୍ତିଯୁକ୍ତ ହୋଇ ନ ପାରେ । ପାଶ୍ଚାତ୍ୟ ଜୀବନଶୈଳୀ, ବିଚାରଧାରା ଓ ସଂସ୍କୃତି ଆମଠାରୁ ଭିନ୍ନ । ଆମ ଭାରତୀୟ ଅସ୍ମିତାରେ ରହିଚି ପୁରାଣ ସାହିତ୍ୟ, ତାହାକୁ ପୁଣି ଆଧୁନିକ ପ୍ରାସଙ୍ଗିକତା କ୍ରମରେ ଉପଯୋଗ କରିବାର ଲକ୍ଷ୍ୟ, ଜୀବନର ଚିରନ୍ତନ ମୂଲ୍ୟରେ ବିଶ୍ୱାସ – ଏସବୁଦ୍ୱାରା ଆମ ସଂସ୍କୃତି ସମସ୍ତ ବାହ୍ୟ ପ୍ରଭାବରୁ ସୁରକ୍ଷିତ ରହିଥାଏ । ତେଣୁ ଆମ ଭାରତୀୟ କାବ୍ୟକବିତାର ଆଲୋଚନା ଆମ ସାଂସ୍କୃତିକ ଚେତନା ଉପରେ ଆଧାରିତ ହେବା ସ୍ପୃହଣୀୟ । ପ୍ରତ୍ୟେକ ସୃଜନଟିର ମଧ୍ୟ ନିଜର ବ୍ୟକ୍ତିତ୍ୱ ଥାଏ । ପ୍ରତି ଯୁଗରେ ଏହି ବ୍ୟକ୍ତିତ୍ୱ ବଦଳୁଥାଏ ଓ ସ୍ୱଚ୍ଛତର ହେଉଥାଏ । କାବ୍ୟାଲୋଚନାର ପ୍ରକ୍ରିୟା ମଧ୍ୟ ନିର୍ଦ୍ଦିଷ୍ଟ । କବି-ଆଲୋଚକ ଏହି ପ୍ରକ୍ରିୟାଯୁକ୍ତ ହୋଇ ଚେତନାର ମୁକ୍ତିକୁ ଅନୁଭବ କରେ । ଆଲୋଚନାର ବଡ଼ ଗୁଣ ହେଉଛି ଆଲୋଚ୍ୟ ରଚନାଟି ପ୍ରତି ସମ୍ବେଦନଶୀଳ ରହିବା । ପ୍ରତି ଯୁଗରେ କଳା-ମୂଲ୍ୟାଙ୍କନର ଆଦର୍ଶ ଭିନ୍ନ ଭିନ୍ନ, ସାର୍ଥକ ଆଲୋଚନାଟିଏ ସୃଷ୍ଟିର ପରିସରକୁ ପରିବ୍ୟାପ୍ତ କରିଥାଏ । ସଚେତନ ମାନସ conscious ଓ ଅବଚେତନ sub-conscious ଭିତରେ କବିତା embedded ଶାୟିତ ରହିଯାଏ । କବିତା ଆସେ ନାହିଁ । କବି ପ୍ରସ୍ତୋତା – ନିଜକୁ ପ୍ରସ୍ତୁତ କରେ – କେବେ ସେ ଅନଭିବ୍ୟକ୍ତ

କବିତାର ଝଲକ ଖସିଆସିବ । ଭଲ କବିତାଟିଏ ହେଉଛି ଗୋଟିଏ ବଳିଷ୍ଠ କାନ୍ଧ, ଯାହା ଉପରେ ମୁଣ୍ଡ ଥୋଇ ପାଠକ ଗୋପନରେ କାନ୍ଦିପାରିବ ।

ଗୋଟିଏ ଗୋଟିଏ ଶବ୍ଦ ଭିତରେ ଶତାବ୍ଦୀ ଶତାବ୍ଦୀର ସଂସ୍କାର ଭରି ରହିଥାଏ । ଶବ୍ଦ ପ୍ରତି ଗଭୀର ଅଭିନିବେଶ କାବ୍ୟରଚନାର ମୁଖ୍ୟ ବିଭାବ । ପତଞ୍ଜଳି କହିଥିଲେ, 'ଏକଃ ଶବ୍ଦଃ ସମ୍ୟକ୍ ଜ୍ଞାତଃ ସମ୍ୟକ୍ ସଂପ୍ରଯୁକ୍ତଃ, ସ୍ୱର୍ଗେଲୋକେ ଚ କାମଧୁଗ୍ ଭବତି' । ଗୋଟିଏ ଶବ୍ଦକୁ କବି ଗଭୀରଭାବେ ବୁଝି ଉପଯୁକ୍ତ ଭାବେ କବିତାରେ ବ୍ୟବହାର କଲେ, ସେହି କବିତା କେବଳ ପୃଥିବୀରେ ନୁହେଁ, ସ୍ୱର୍ଗରେ ମଧ୍ୟ କବିର ଯଶ ଉଦ୍‌ଘୋଷଣା କରିବ ବା କବିର ମନୋବାଞ୍ଛା ପୂର୍ଣ୍ଣ କରିବ । ଆନନ୍ଦର ଗଭୀରତାକୁ ଖୋଜିବା ଓ ତାହାକୁ ସମ୍ବେଦ୍ୟ ରୂପ ପ୍ରଦାନ କରିବା କବି କର୍ମର ସଫଳତା । ରଚନାର ଆନନ୍ଦ ସଂପ୍ରେଷଣର ଆନନ୍ଦ । ପାଠକର ଅନ୍ତରକୁ ସ୍ପର୍ଶ କରି ତା'ର ଜିଜ୍ଞାସାକୁ ପରିତୃପ୍ତ କରିବାର ଆନନ୍ଦ । ଏହି ଆନନ୍ଦ ହିଁ କବିର ସୁକୃତ ।

❑❑❑

# କବିର ସଂସ୍କାର ଓ ସାର୍ବଜନୀନତା

ଗୋଟିଏ ଭାଷାର କବିତା ହେଉଛି, ସେ ଭାଷାର ବିଭବ ଓ ତାହାଦ୍ୱାରା ଭାଷା ବିସ୍ତାର ଲାଭ କରିଥାଏ । ଗୋଟିଏ ଗୋଟିଏ ଶବ୍ଦର ଏକାଧିକ ଅର୍ଥ ପ୍ରତୀତି କବିର ବକ୍ତବ୍ୟକୁ ବିସ୍ତୃତ କରିବା ସହିତ ଭାଷାର ନୂଆ ନୂଆ ବାତାୟନ ଉନ୍ମୋଚନ କରେ । ସର୍ବପ୍ରଥମ କବିତାର ଜନ୍ମ ପ୍ରତିବାଦ ମାଧ୍ୟମରେ ସମ୍ଭବ ହୋଇଥିଲା । ହିଂସା ପ୍ରତିପକ୍ଷରେ ପ୍ରତିବାଦ, ଏହି ପ୍ରତିବାଦ କବିତାରେ ଉଚ୍ଚାରିତ ହୋଇଥିଲା । କାରଣ, କବିତା ହିଁ ହିଂସାର ବିକଳ୍ପ । ବ୍ୟାଧର ଅହେତୁକ ହିଂସାଚରଣରେ ବ୍ୟଥିତ ଆଦିକବି ବାଲ୍ମୀକି କହିଥିଲେ – 'ମା ନିଷାଦ ପ୍ରତିଷ୍ଠା ତ୍ୱମଗମ ଶାଶ୍ୱତୀ ସମା...', 'ହେ ବ୍ୟାଧ' ଏହି କ୍ରୌଞ୍ଚ ମିଥୁନକୁ ତୁ ଶରାଘାତ କଲୁ, ଏହାଦ୍ୱାରା ଚିରକାଳକୁ ତୋର ଅପଯଶ ରହିଗଲା ବା ଅନ୍ୟ ଅର୍ଥରେ ଏହି କର୍ମ ତୋତେ କୌଣସି ଯଶ ଦେବ ନାହିଁ ।'

କବିତା ଜଣେ ମାତ୍ର ବ୍ୟକ୍ତିର ରଚନା ହୋଇପାରେ, ହୋଇପାରେ ତା'ର ଅନ୍ତର୍ନିହିତ ଏକାନ୍ତତାରୁ ଉଦ୍ଭୂତ: କିନ୍ତୁ ଏହା ସମୁଦାୟ ଜନମାନସର ସାଂସ୍କୃତିକ ଅଭିବ୍ୟକ୍ତି ରୂପେ ସ୍ୱୀକୃତ ହୋଇଥାଏ । ସବୁକାଳରେ ଶାସ୍ତ୍ର, ସତ୍ତା ଓ ବଜାରର ମାୟାବୀ ପ୍ରଲୋଭନ ପ୍ରଭାବ ବିସ୍ତାର କରିଚାଲିଥାଏ । ପ୍ରତିଟି ଯୁଗରେ ମଧ୍ୟ ଏସବୁର ବର୍ଜନ ଘଟି ଚାଲିଥାଏ । ଯେହେତୁ, କବିତା ସର୍ବଦା ଏହି ଶାସ୍ତ୍ର, ସତ୍ତା ଓ ବଜାର କାରବାରର ଊର୍ଦ୍ଧ୍ୱରେ ତିଷ୍ଠି ରହିଥାଏ, ତେଣୁ ଏସବୁକୁ ବର୍ଜନ କରିବା ତା'ର ମୂଳଯୋଗ୍ୟତା ରୂପେ ସ୍ଥିରୀକୃତ ହୋଇଥାଏ । କବିତା ମାଧ୍ୟମରେ ବ୍ୟକ୍ତି ନିଜ ସହ, ଅପର ସହ ଓ ପ୍ରକୃତି ସହ ବୁଝାମଣା କରିବାରେ ବ୍ୟାପୃତ ରହେ । କବିତାରେ ଅନୁଭବର ପ୍ରାଧାନ୍ୟ ଥାଏ, ଥାଏ ଅନ୍ତରଙ୍ଗତାର ବୈଶିଷ୍ଟ୍ୟ । ତେଣୁ ଯନ୍ତ୍ରଣା-ଜର୍ଜର ସତ୍ତାଟିଏ, କବି ନିକଟରୁ ହିଁ ଶ୍ରଦ୍ଧା ଓ ସମ୍ବେଦନା ଲାଭ କରିଥାଏ । ଆମ ପୁରାଣ ସଂସ୍କୃତିରେ ଏହାର ମହାନ୍ ଚିତ୍ର ପ୍ରକଟିତ । ନିର୍ଦ୍ଦୋଷ ରାଜରାଣୀ ସୀତା, ସନ୍ତାନସମ୍ଭବା, ଏଣେ ପତିଙ୍କଦ୍ୱାରା ପରିତ୍ୟକ୍ତା । ପୁଣି ଶ୍ୱାପଦସଙ୍କୁଳ ଅରଣ୍ୟ ମଧ୍ୟରେ ବିସର୍ଜିତା ହୋଇଛନ୍ତି । ଏକାକୀତ୍ୱ, ଅବମାନନା ଓ ଗର୍ଭାବସ୍ଥା ତାଙ୍କୁ ନିଃସହାୟ କରିପକାଇଛି । ଏତିକିବେଳେ

ଆବିର୍ଭୂତ ହୋଇଛନ୍ତି କବି ଓ ଋଷି ବାଲ୍ମୀକି । ଶ୍ରଦ୍ଧା ଓ ସମ୍ମାନ ଦେଇ ସେ ସୀତାଙ୍କୁ ଆଶ୍ରମରେ ସ୍ଥାନ ଦେଇଛନ୍ତି । ତାଙ୍କର ସକଳ ପରିଚର୍ଯ୍ୟା କରି, ନବଜାତକମାନଙ୍କୁ ଉପଯୁକ୍ତ ଲାଳନ କରିଛନ୍ତି । ସୀତା ଓ ଲବକୁଶଙ୍କୁ ଅଯାଚିତ ସୁରକ୍ଷା ପ୍ରଦାନ କରିପାରିଛନ୍ତି ।

ପ୍ରତ୍ୟେକ ସଂସ୍କୃତିର ନିଜସ୍ୱ ବିଶିଷ୍ଟତା ରହିଛି ଏବଂ ତା' ସହିତ ରହିଛି ସାର୍ବଭୌମ ଦୃଷ୍ଟିକୋଣ, ତତ୍ ସଙ୍ଗେ ସଙ୍ଗେ ନିଜର ଭିନ୍ନ ପରିଚୟ । କୌଣସି ଗୋଟିଏ ବିନ୍ଦୁରେ ଅଖଣ୍ଡତାର ଅବବୋଧ ମଧ୍ୟ ତା' ସହ ସଂଶ୍ଳିଷ୍ଟ ରହିଛି । ବିଶ୍ୱାସ ହଜିଗଲାବେଳେ ବା ବିଶ୍ୱାସ ଅନ୍ଧବିଶ୍ୱାସରେ ରୂପାନ୍ତରିତ ହୋଇଗଲାବେଳେ, କବିତାର ଭୂମିକା ଜରୁରୀ ହୋଇପଡ଼େ । କବିତାର ଉପସ୍ଥିତି ଲୋଡ଼ାଯାଏ । ସବୁକାଳେ କବିତା ମଣିଷର ଦୁଃଖସୁଖ ସହ ଜଡ଼ିତ ହୋଇରହିଥାଏ । ଆଜି, ଯେଉଁ ସ୍ମୃତି ମଣିଷପାଇଁ ବଞ୍ଚି ରହିଛି, କାବ୍ୟକବିତାଦ୍ୱାରା ହିଁ ବଞ୍ଚି ରହିଛି । ସ୍ମୃତି ଆଉ କଳ୍ପନାର ଶିଡ଼ିରେ ଚଢ଼ି, ଭାଷାର ଲୀଳା ବିସ୍ତାର କରି ଆଜିର କବିତା ସୃଷ୍ଟି ପଥରେ ଆଗୁସାର ହୋଇ ଚାଲିଛି । କବିତା ଯେବେ ବି ସଂରଚିତ ହୋଇଛି, ଅନୁଭବର ପୁନଃ ରଚନା ଭାବରେ ନୂଆ ଅବତାର ନେଇ ଭୂମିଷ୍ଠ ହୋଇଛି । ତେବେ, ଭାଷା ସର୍ବପ୍ରଥମେ ସଂସ୍କୃତି ରୂପରେ ରହିଥାଏ । ଭାଷା ନ ଥିଲେ, ସ୍ମୃତି ନ ଥିଲେ, କବିତା ନାହିଁ କି ସଂସ୍କୃତି ନାହିଁ । କବିତା ଯେଉଁ ସମାନାନ୍ତର ବିଶ୍ୱ ତିଆରି କରେ, ତାହା କେବଳ କବିସତ୍ତାର ବିଶ୍ୱ ନୁହେଁ, ତାହା ମଧ୍ୟ ସାଧାରଣ ଲୋକର ବିଶ୍ୱ ଅଟେ ।

ପ୍ରତି ଯୁଗରେ ବିଶିଷ୍ଟ କବିମାନେ ନିଜର ସ୍ୱତନ୍ତ୍ର ରାସ୍ତା ଖୋଜି ନେଇଥାଆନ୍ତି । ସେମାନେ ଅନ୍ଧାନୁକରଣ କରନ୍ତି ନାହିଁ । ଅବଶ୍ୟ, କବିତାର ପରମ୍ପରାରେ ସାଂସ୍କୃତିକ ଆଦାନପ୍ରଦାନ ମଧ୍ୟ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା । କବି କବି ଭିତରେ, ଯୁଗ ଯୁଗ ଭିତରେ, ସଂଘର୍ଷ ରହିଥିଲେ ମଧ୍ୟ ଅନ୍ତଃସ୍ରୋତ ବି ରହିଥାଏ । ସାରଳା ଦାସଙ୍କ ଭିତରେ କେଉଁଠି ବା ବ୍ୟାସଦେବ ନାହାନ୍ତି ? ରମାକାନ୍ତଙ୍କ ସ୍ୱରରୁ ପୂର୍ବସୂରୀଙ୍କ ସ୍ୱର ଶୁଭିଯାଏ ନାହିଁ କି ? ସୌଭାଗ୍ୟଙ୍କ ଭିତରେ ନାହାନ୍ତି ଗୁରୁପ୍ରସାଦ ? କବି ବୈକୁଣ୍ଠନାଥଙ୍କ ରଚନା ମଧ୍ୟରେ କବି ରବୀନ୍ଦ୍ରନାଥଙ୍କ ଝଲକ୍ ଦିଶିଯାଏ ନାହିଁ କି ?

ପ୍ରତି ଯୁଗର ଶ୍ରେଷ୍ଠ କବିତାମାନ ଜୀବନର ଦୁଃସ୍ଥିତି ଓ ଅନ୍ତର୍ବିରୋଧ ମଧ୍ୟରେ ସଂରଚିତ ହୋଇଅଛି । ସେଥିପାଇଁ ରୁଷୀୟ କବି ଆନ୍ନା ଆଖ୍‌ମାତୋଭା କହନ୍ତି,

"without hangman and scaffold a poet cannot live in the world." କବିକୁ ନିଶ୍ଚୟ ଫାର୍ସୀକୁ ସାମ୍ନା କରିବାକୁ ପଡ଼ିବ । (ବକ୍ତବ୍ୟର ଓଡ଼ିଆ ପ୍ରରୂପ) । ମଣିଷ ଅତୀତଦ୍ୱାରା ବନ୍ଦୀ ନୁହେଁ କି ବର୍ତ୍ତମାନର ଦାସ ନୁହେଁ । ତା'ର ଭବିଷ୍ୟତ କଳ୍ପନା ରହିଛି । ସେଥିପାଇଁ ସେ ବଞ୍ଚିରହିଛି ଓ ଜନସମୂହକୁ ବଞ୍ଚିବାର ଆଗ୍ରହରେ ଦୀକ୍ଷିତ କରିପାରୁଛି । ମନୁଷ୍ୟତ୍ୱକୁ ମୁକାବିଲା କରିବା ନିମିତ୍ତ କବିତା ନୂତନ ମନୁଷ୍ୟତ୍ୱ ଗଢ଼ିବାରେ ଲାଗିଛି । କବି ପ୍ରତି ଯୁଗରେ କୌଣସି ନା କୌଣସି ଦାସତ୍ୱ ବିରୋଧରେ ଯୁଦ୍ଧ କରେ । ତାହା ହୋଇପାରେ ସମାଜର ଶ୍ରେଣୀସଂଘର୍ଷ, ଅନ୍ଧବିଶ୍ୱାସ ବା ନିୟତି ବିରୋଧରେ ଯୁଦ୍ଧ । ସମାଜର ଶ୍ରେଣୀସଂଘର୍ଷରେ ଛନ୍ଦି ହୋଇ, ନିୟତିର ଦାସତ୍ୱରେ ପେଷି ହୋଇ, ଅନ୍ଧବିଶ୍ୱାସର ନିର୍ଯାତନାରେ ଅସ୍ଥିର ହୋଇ କବି ଆର୍ତ୍ତନାଦ କରିବାର ଦୃଷ୍ଟାନ୍ତ ପ୍ରଚୁର ରହିଛି । ଏସବୁର ପ୍ରତିପକ୍ଷରେ ସଂଗ୍ରାମର ସ୍ୱର ଉତ୍ତୋଳନ କରିବାର ଦୃଷ୍ଟାନ୍ତ ମଧ୍ୟ ତଦନୁରୂପ ରହିଅଛି ।

କବିତା କବିକୁ ଏକପ୍ରକାର ସ୍ୱାଧୀନତା ଦିଏ, ଶୈଳୀ ବିଷୟରେ ସଚେତନ କରାଏ ଏବଂ ଏହି ସଚେତନତା ଅନ୍ୟ କିଛିଦ୍ୱାରା ସମ୍ଭବ ହୋଇପାରେ ନାହିଁ । ଏହି ସ୍ୱାଧୀନତା, ସମାଲୋଚନାମୂଳକ ମନ୍ତବ୍ୟ, ଉତ୍ତମ ବୁଝାମଣା ଓ ନିଜ ମାର୍ଗ ଧରି ଚାଲିବାର ସନ୍ତୋଷ ଦେଇଥାଏ । ଅବଶ୍ୟ କେହି ହେଲେ ଅର୍ଥ ପାଇଁ କବିତା ଲେଖେ ନାହିଁ ଏବଂ ଅର୍ଥରୁ ମଧ୍ୟ କବିତା ମିଳେ ନାହିଁ, ଅନ୍ୟ ଅର୍ଥରେ ଅର୍ଥଠାରେ କବିତା ବି ନ ଥାଏ । ଯେତେପ୍ରକାର ଆର୍ଥନୀତିକ ଦୁର୍ବଳତା ଆସିଛି, ସେସବୁ କବିତାକୁ ନଷ୍ଟଭ୍ରଷ୍ଟ କରିଦେଇପାରି ନାହିଁ । ବରଂ କବିତା, ପାଲଟି ଯାଇଛି ଆମର ଦୀର୍ଘକାଳସ୍ଥାୟୀ କଳାରୂପ, ଯାହା ଆର୍ଥନୀତିକ ଦୁର୍ବଳତା ସହ ଯୁଝିପାରିଛି । କେହି କେହି କହିପାରନ୍ତି, କବିତା କଳ୍ପନା-ଗଢ଼ା, ତେଣୁ ମାଟିର ବାସ୍ତବତା ସହ ତା'ର ଯାଏ ଆସେ ନାହିଁ । ମାତ୍ର ଏହା ଏକ ଭ୍ରାନ୍ତ ଧାରଣା । କେବଳ ଇଥର୍‌ରେ କବିତା ନ ଥାଏ, ଯଦିବା ଇଥର୍‌ରେ ଏହାର ସ୍ଥାନ ଥାଇପାରେ, ତଥାପି ଆବର୍ଜନା ଓ ପଙ୍କ କାଦୁଅରେ ମଧ୍ୟ ଏହାର ମୂଳ ରହିଥାଏ । ତେଣୁ କାବ୍ୟିକ କଳ୍ପନା ମାଟି ସହ ସଂଲଗ୍ନ ହୋଇ ବାସ୍ତବତାର ନିକଟତର ହୋଇଥାଏ । ବାସ୍ତବତାକୁ ଧରିବାପାଇଁ କଳ୍ପନା ଏକ ମାର୍ଗ । ପ୍ରକୃତରେ, କବିତା ଭିତରେ ଜୀବନ ସ୍ପନ୍ଦିତ ହେଉଥାଏ । ସଂସ୍କୃତିର କେନ୍ଦ୍ରବିନ୍ଦୁରେ, ଯେଉଁଠି ସାଙ୍ଗୀତିକତା ଓ ସାରବତ୍ତା ପରସ୍ପରକୁ ସାକ୍ଷାତ୍ କରୁଥାଆନ୍ତି ଓ ଦ୍ରୁତଗତିରେ ଆଗେଇ ଚାଲିଥାଆନ୍ତି, ସେଇଠି ଜୀବନର ସ୍ପନ୍ଦନ ସ୍ପଷ୍ଟ ଓ ତୀବ୍ର ହୋଇଉଠେ । ଜୀବନ ତେଣୁ କବିତାପାଇଁ ଏକପ୍ରକାର ପ୍ରକଳ୍ପ ହୋଇପାରେ ।

କବିତାରେ ଯେଉଁ ଦୁଃଖର ସ୍ୱର ଅନୁରଣିତ ହୁଏ, ଅଶ୍ରୁ ଗଦ୍‌ଗଦ ହୁଏ, ତାହା ହୋଇପାରେ ମଣିଷର ବ୍ୟକ୍ତିଗତ ଦୁଃଖ, ସାମାଜିକ ପରିବେଶର ଦୁଃଖ, ଦୁଃଖ ମୃତ୍ୟୁର, ସମ୍ପର୍କଭଙ୍ଗର ହତାଶା, ପ୍ରତାରଣା, ଗ୍ଲାନି, ହିଂସା ଓ ଯୁଦ୍ଧର ଦୁଃଖ । କିନ୍ତୁ କବିତା କେବେବି ବ୍ୟକ୍ତିମାତ୍ରର ଦୁଃଖ କଥା କହେ ନାହିଁ । ବ୍ୟକ୍ତିଗତ ଦୁଃଖ ମାଧ୍ୟମରେ ବିଶ୍ୱଜନର ଯନ୍ତ୍ରଣାର କଥା କହେ । ଅନୁଭବର ତୀବ୍ରତା ଓ ଅଭିବ୍ୟକ୍ତିର ଶକ୍ତି ହିଁ କବିର ବ୍ୟକ୍ତିଗତ ପୀଡ଼ାର ଉଚ୍ଚାରଣକୁ ବିସ୍ତାର ଦିଏ, ବ୍ୟକ୍ତି ସକଳର ଜ୍ଞାତବ୍ୟ ତଥା ଅନୁଭବ୍ୟ ପୀଡ଼ାରେ ରୂପାନ୍ତରିତ କରିପାରେ । ପ୍ରତ୍ୟେକ ପ୍ରତୀକ, ଚିତ୍ର ଓ ସାଙ୍ଗୀତିକତା ବ୍ୟକ୍ତିଗତ ପୀଡ଼ାକୁ ଅନ୍ତରାଳକୁ ନେଇଯାଇ ସାର୍ବଜନୀନ ରୂପେ ପ୍ରକଟ କରିଦିଏ ।

❑❑❑

# କବିତ୍ୱର ରହସ୍ୟ

କବି କିଏ ? ଲୁଚିଛପି ଅନ୍ଧାରରେ ବସି ଗୀତ ଗାଉଥାଏ ଓ ସେହି ଗୀତଦ୍ୱାରା ନିଜର ଏକାକୀତ୍ୱକୁ ମୁଖର ଓ ମଧୁର କରୁଥାଏ ? ଯନ୍ତ୍ରଣାରେ ସିଝି କବି ଯେଉଁ 'ଉଃ, ଆଃ' ଉଚ୍ଚାରେ, ସେଇଥିରୁ ମିଠାସ୍ୱର ବାହାରେ । ନିଷ୍ଠୁରମାନଙ୍କ କାନକୁ ଛୁଇଁପକାଏ । ଯେଉଁ କବି ଯେତେ ଅଧିକ ଯନ୍ତ୍ରଣାରେ ସନ୍ତୁଳି ହୋଇଛି, ସେ ସେତେ ବେଶି କୃତିତ୍ୱ ହାସଲ କରିଛି । ହୃଦୟ କ୍ଷତାକ୍ତ ହେଲେ ସକଳ ଦୀର୍ଘଶ୍ୱାସ, କଷ୍ଟ ଓ ଛଟପଟ ସୁନ୍ଦର କବିତାରେ ରୂପାନ୍ତରିତ ହୋଇଯାଏ । ପାଠକ କବିଠାରୁ ଆହୁରି ଚାହେଁ । କବିର ସମୁଦାୟ ଯନ୍ତ୍ରଣାର ସ୍ୱରୂପକୁ ପାଠକଟି କ'ଣ ଘେନିପାରିବା ସମ୍ଭବ ? କବିତାଟି ଯଦି କଳାତ୍ମକ ଗୁଣକୁ ଉପଯୁକ୍ତ ଭାବେ ବହନ କରିଥାଏ, ତେବେ ତାହା ପାଠକର ପ୍ରାଣକୁ ସ୍ପର୍ଶ କରେ । ଏହି କଳାତ୍ମକତା ପାଇଁ କବିକୁ ବହୁତ ମୂଲ୍ୟ ଦେବାକୁ ପଡ଼େ । ଦୁଃଖକୁ ମଧୁରରେ ପରିଣତ କରିପାରିବାର ଶକ୍ତି ନ ଥିଲେ କବି ହୁଏତ ଅଚିହ୍ନା ରହିଯାଇପାରେ ।

କବିତାର ଦାନ ଅବିମିଶ୍ର ଆଶିଷ ଭଳି ଆସେ ନାହିଁ: ବରଂ ଆସେ କ୍ଷତିର କ୍ଷତିପୂରଣ ଭାବେ । ଏକ ଆଘାତ, ଏକ ଅସୁସ୍ଥତା, ଏକ ଊଣାପଣ ଭାବେ ଆସିଥାଏ । ଅଥଚ ବାସ୍ତବତାର କ୍ଷତକୁ ଭରଣା କରିଥାଏ କବିତା । ଅବଶ୍ୟ ପ୍ରତ୍ୟେକ ମଣିଷ ପରି କବିର ଜୀବନରେ ମଧ୍ୟ ଯନ୍ତ୍ରଣା ଓ ଆନନ୍ଦ ମିଶିକି ରହିଥାଏ । କିନ୍ତୁ କବିପାଇଁ ସୁଖସମ୍ମାନ ଭିତରେ କେଉଁଠି ଗୋଟେ ଦୁଃଖ ଓ ଆଘାତ ବି ଥାଏ । କାବ୍ୟପ୍ରତିଭା ଏବଂ କବିର ମାନସିକ-ବିଷାଦ ଅବସ୍ଥା ଭିତରେ ଗୋଟେ ଅନ୍ତରଙ୍ଗ ଭାବ ରହିଥିବାର ବିପଦ ମଧ୍ୟ ଥାଏ । ତେଣୁ ବିଚକ୍ଷଣତା ଓ ପାଗଳାମି ଏକାଧାରରେ କବିଠାରେ ସମ୍ଭବ ହୋଇପାରେ । ପାଠକମାନଙ୍କଠାରୁ ପ୍ରଶଂସା ଏବଂ ଜୀବନର ଯନ୍ତ୍ରଣାବୋଧ– ଏ ଉଭୟରୁ କବିତା ନିଃସରି ଆସିଥାଏ । ୟେ ଦୁଇଟି ନିହାତି ଶକ୍ତିଶାଳୀ ତତ୍କାଳ-ପ୍ରେରଣା । ତେବେ, ଆଘାତ ଅତିକ୍ରମ କରିଯିବା ହିଁ କବିର ଯୋଗ୍ୟତା ।

ତେଣୁ କବିତା ଠିକ୍ ପାଗଳାମି ନୁହେଁ, ବରଂ ଅଲଗା କିଛି । କବିତାର କଞ୍ଚାମାଲ୍‌କୁ କଳେବଳେକୌଶଳେ କବି ନିଜ ଆୟତ୍ତକୁ ଆଣେ ଓ ନିଜସ୍ୱ ରଚନାକୁ ସଜାଡ଼େ, ରୂପ ଦିଏ । ଆମେ ସମସ୍ତେ ଭୋଗୁଥିବା କଷ୍ଟକୁ ସେ ନିଜ ଶକ୍ତି ବଳରେ ଆକାର ଦିଏ । ସମସ୍ତଙ୍କର କରିନିଏ, ସାର୍ବଜନୀନତା ପ୍ରଦାନ କରେ ।

ବର୍ତ୍ତମାନ କବିତାରୁ ଛନ୍ଦ ଅପସରି ଯାଉଛି । ନୂଆକିଛି ଶୈଳୀ ପ୍ରବର୍ତ୍ତନ ହେଲେ କବିମାନେ ଆଗ୍ରହରେ ଗ୍ରହଣ କରିନିଅନ୍ତି । ପୂର୍ବେ ସଙ୍କଳନଟିଏ ପ୍ରକାଶ ନ ପାଇବା ଯାଏଁ କବିଟି କବି ତାଲିକାଭୁକ୍ତ ହୋଇପାରୁ ନ ଥିଲା: କିନ୍ତୁ ଆଜିକାଲି ଆଉ ସେପରି ଅବସ୍ଥା ନାହିଁ । ତେବେ, ବହୁତଗୁଡ଼ାଏ ଲେଖି ବିଭିନ୍ନ ପତ୍ରପତ୍ରିକା, ସାପ୍ତାହିକୀ ବା ଅନେକ ସଂଖ୍ୟକ ସଂକଳନ ତିଆରି କଲେ ବି, ଏହାଦ୍ୱାରା କବିର ଗୌରବ ବଢ଼େ ନାହିଁ । ଲୋକେ କବିତା କାହିଁକି ଲେଖନ୍ତି ? କୌଣସି ଗୋଟିଏ ଉତ୍ତର ଏହି ପ୍ରଶ୍ନପାଇଁ ଯଥେଷ୍ଟ ହେବ ନାହିଁ । ଏ ପ୍ରଶ୍ନର ଶତାଧିକ ଉତ୍ତର ହୋଇପାରିବ । କେତେକ କବି ଭାବନ୍ତି, ସେମାନେ ମାନବ ସମାଜକୁ ଅନେକ କିଛି ବାର୍ତ୍ତା ଦେବେ । କେତେକ ଶବ୍ଦ ସହ ଖେଳିବାରେ ମାତିଥା'ନ୍ତି ତ ଅନ୍ୟ କେତେକ ଶବ୍ଦ ସହିତ ଖୁବ୍ ଗୋପନ ସମ୍ପର୍କରେ ମଜ୍ଜିଯାଆନ୍ତି । ସେହି ମଜ୍ଜିଯିବାଟା ତାଙ୍କର ବ୍ୟକ୍ତିଗତ ଦିନଲିପି ଭଳି । କେତେକ କବି କବିତାକୁ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଉଚ୍ଚାରିତ ବକ୍ତବ୍ୟ ବୋଲି ଭାବନ୍ତି ଓ ସାମାଜିକ କ୍ଲବ୍‌ରେ, ମାଇକ୍ ସାମ୍ନାରେ ଅଚିହ୍ନା ଲୋକଙ୍କ ଆଗରେ ବି ଆବୃତ୍ତି କରିଥା'ନ୍ତି । ଜଣେ ଜଣେ କବି ନିଜ ଅସ୍ତିତ୍ୱକୁ ବୁଝିବାକୁ ତନ୍ଦ୍ରା ଭିତରେ ଶୁଭୁଥିବା ସ୍ୱରକୁ ବି ଟିପି ରଖନ୍ତି । ପ୍ରେମ ଓ ଈଶ୍ୱରଙ୍କୁ ନେଇ ଜଟିଳ ଓ ସମ୍ମାନଜନକ ଅଭିବ୍ୟକ୍ତି ପ୍ରକାଶ କରିଥା'ନ୍ତି ।

ଅଧିକାଂଶ କାଳ୍ପନିକ କବିତା ପରୀକ୍ଷାମୂଳକ ଭାବେ ଲିଖିତ ହୋଇଥାଏ । ପାଠକମାନଙ୍କ ଉପରେ କବି ଏହାର ମୂଲ୍ୟାୟନ ନ୍ୟସ୍ତ କରିଥାଏ । କିନ୍ତୁ, ଆମକୁ ଆକର୍ଷଣ କରିପାରୁଥିବା ଅଧିକାଂଶ କବିତାରେ କବିର ନିଷ୍ଠାପର ପ୍ରଚେଷ୍ଟା ଓ ପାରମ୍ପରିକ କର୍ତ୍ତବ୍ୟବୋଧ ଉପସ୍ଥିତ ଥାଏ । ଜଣେ କବି-ନିର୍ମାତାର କଳାକୌଶଳରେ ଉନ୍ନତ କାରିଗରୀ ରହିଥାଏ । କବି ଏମିତି ଗୋଟିଏ ବ୍ୟକ୍ତି ଯିଏ ଜୀବନର ଦୈନନ୍ଦିନତା ବାହାରେ ଏକାଧିକବାର ଆଘାତ ସହେ । ଅନେକ କବି ଏକଥା ବି ଭାବନ୍ତି ଯେ, ତାଙ୍କ ଦେହାବସାନ ପରେ ତାଙ୍କ ଆଜୀବନ ସାଧନା ଫଳରେ ଲିଖିତ ରଚନାମାନଙ୍କ ମଧ୍ୟରୁ ଦୁଇ ତିନୋଟି ହୁଏତ ସାର୍ଥକ

ଓ ପ୍ରଶଂସିତ ହୋଇପାରିବ ଓ ତାଙ୍କ ମସ୍ତକରେ ମୁକୁଟ ସ୍ଥାପିପାରିବ । କେତେକ କବିତା ଅନ୍ୟ କେତେକ କବିତାଠାରୁ ଉନ୍ନତ ବୋଲି ଆମେ କାହିଁକି ଅନୁଭବ କରିଥାଉ ? ସରଳ ପ୍ରଶ୍ନଟିଏ ପରି ପ୍ରତୀତ ହେଉଥିଲେ ହେଁ, ଏହାର ଉତ୍ତର ବହୁ ଦିଗନ୍ତବ୍ୟାପୀ । କବିତା କ'ଣ ? ଏହାର ସରଳ ଉତ୍ତର ହୋଇପାରେ ସ୍ମରଣୀୟ ବକ୍ତବ୍ୟ । ଅନ୍ୟ ଉତ୍ତର ହେବ, ସାର୍ଥକ ଭାବଟିଏକୁ ଅବିକଳ୍ପ ଭାବେ ଅଭିବ୍ୟକ୍ତ କରିବା । ଅନ୍ୟ କେତେ କହିଥା'ନ୍ତି, କବିତା ସବୁଠାରୁ ଅର୍ଥମୟ ଅନନ୍ୟ ଭାବେ ଉଚ୍ଚାରିତ ଉପଲବ୍‌ଧି – ଏପରି ଶବ୍ଦରେ ଗଢ଼ା, ଯେଉଁ ଶବ୍ଦକୁ ବଦଳାଇ ଦିଆଯାଇ ସ୍ଥାନଚ୍ୟୁତ କରାଯାଇପାରିବ ନାହିଁ । ଜଣେ ବିଶିଷ୍ଟ ସାହିତ୍ୟିକ କହନ୍ତି, ଜଣେ ପାଠକ କବିଠାରୁ କବିତା ସଂପର୍କରେ ଦୁଇଟି କଥା ଦାବି କରିଥାଏ ।

ପ୍ରଥମଟି ହେଲା, କବିତାଟି ଉତ୍ତମ ଭାବେ ସଂରଚିତ ହୋଇଥିବ, ଆବୃତ୍ତିଯୋଗ୍ୟ ହୋଇଥିବ, ଭାଷାକୁ ଉନ୍ନତ କରୁଥିବ । ଦ୍ୱିତୀୟଟି ହେଲା, ଏହା ଆମ ସମସ୍ତଙ୍କ ବାସ୍ତବତାକୁ ଗୁରୁତ୍ୱ ଦେଉଥିଲେହେଁ ଗୋଟିଏ ବିଶାଳ ଦିଗନ୍ତକୁ ଅବବୋଧରେ ଆଣୁଥିବ । ଭଲ କବିତାର ସଂଜ୍ଞାଗୁଡ଼ିକ ଏହିଭଳିଭାବେ ପରସ୍ପରଠାରୁ ଅଲଗା ହୋଇଥାଏ । ଗୋଟିଏ ପିଢ଼ିପାଇଁ ଉଲ୍ଲେଖଯୋଗ୍ୟ କବିତା ବେଳେ ବେଳେ ଅନ୍ୟ ପିଢ଼ିପାଇଁ ଏତେ ଗୁରୁତ୍ୱପୂର୍ଣ୍ଣ ହୋଇ ନ ପାରେ । ଏପରି କିଛି ଅସାଧାରଣ ବାସ୍ତବତା ନାହିଁ, ଯାହାକୁ ନେଇ କବିତା ଲେଖିବାକୁ ତଥାପି ବାକି ଅଛି । ତେବେ, ଭଲ କବିତା ସବୁ ଯୁଗରେ ବଞ୍ଚିରହିବ ଏବଂ ପ୍ରଥମ ତିନି ଚାରି ଧାଡ଼ିରୁ କବିତାଟିର ଭଲ ଗୁଣ ଚିହ୍ନି ହୋଇଯିବ । ଯେତେବେଳେ ଶୈଳୀ ଓ ଭାବ ଏବଂ ଉପଲବ୍‌ଧି ଏକାତ୍ମ ହୋଇ ପରସ୍ପରର ସ୍ୱତନ୍ତ୍ର ଅସ୍ତିତ୍ୱକୁ ବିସର୍ଜି ଦିଅନ୍ତି, ସେତେବେଳେ ହିଁ କବିତାଠାରେ ଆତ୍ମା ପ୍ରତିଷ୍ଠିତ ହୁଏ । ସେହି କବିତା ପାଠକକୁ ଆକୃଷ୍ଟ କରେ । ସାଧାରଣ ପାଠକଙ୍କୁ ପଚାରିଲେ ସେ ହୁଏତ କବିତା ଉଖାରି ନିଖାରି ଚିତ୍ରରଚନା, ନାଟକୀୟତା, ମୌଳିକତା, ବିସ୍ମୟ, ଗଭୀର ଭାବାବେଗ ଆଦି କେତେ ଶକ୍ତିଶାଳୀ ହୋଇଛି, ତାହା ବାଛି ବସିବେ । କିନ୍ତୁ କବିତା ଯେ ବଛାବଛିର ଊର୍ଦ୍ଧ୍ୱରେ ଭଲପଣ ଜାହିର କରେ ।

ଏକଥା ସତ୍ୟ ଯେ, ତତ୍ତ୍ୱକୁ ନେଇ କବିତାର ଯୋଗ୍ୟତା ବିଚାର କରାଯାଇପାରିବ ନାହିଁ । ବିଭିନ୍ନ ତତ୍ତ୍ୱକୁ ସନ୍ତୁଷ୍ଟ କରୁଥିବା କବିତାଟି ହୁଏତ ଯୋଗ୍ୟତା ନ ଥିଲେ ମନକୁ ମନ ହଜିଯିବ । କୌଣସି ପଣ୍ଡିତଙ୍କ ତତ୍ତ୍ୱ ବ୍ୟାଖ୍ୟାନ ବା ତର୍ଜମା ତାକୁ ଦୀର୍ଘଜୀବୀ କରିପାରିବ ନାହିଁ । ଆଜି ଲେଖିଥିବା କବିତା

କବିକୁ ଭଲ ଲାଗିପାରେ: ହୁଏତ ଦୁଇ ଦିନ ପରେ ସେହି କବିତା କବିକୁ ଆଉ ଭଲ ଲାଗିବ ନାହିଁ । ଏହା କାହିଁକି ଘଟେ, କହିବା କଷ୍ଟକର । ଅଧିକାଂଶ କବି, ନିଜ କବିତାକୁ ବିଚାର କରିବା ନିମିତ୍ତ ଅସହାୟତା ପ୍ରକଟ କରିଥା'ନ୍ତି । କେତେଜଣଙ୍କର ସେ ଦକ୍ଷତା ମଧ୍ୟ ନ ଥାଏ ।

ଜଣେ ପ୍ରସିଦ୍ଧ କବି କହିଥିଲେ, ମୋତେ କବିତା ସମ୍ପର୍କରେ ପଚାରିଲେ ମୁଁ ବହୁତ କିଛି ସମୟଯାଏଁ ବକ୍ତବ୍ୟ ରଖିପାରିବି । କିନ୍ତୁ ମୋ ନିଜ କବିତା ସମ୍ପର୍କରେ ପଚାର, ଧାଡ଼ିଏ ବି ମୋ ପାଟିରୁ ବାହାରିବ ନାହିଁ ।

କବିତାର ମୂଳ ଉତ୍ସ କ'ଣ ? କେଉଁଥିରୁ କବିତା ଉଦ୍ଭୂତ ? ଶିକ୍ଷାପ୍ରାପ୍ତି ପୂର୍ବଯୁଗର ଲୋକମାନେ ନିଜ ତତ୍‌କ୍ଷଣାତ୍ ଇଚ୍ଛା (impulse)କୁ ପ୍ରତିରୋଧ କରି ନ ପାରି ଲେଖୁଥିଲେ । ସେ ଲେଖାଗୁଡ଼ିକ ଏକତ୍ର ମିଶି ଗୀତ ନାଚ କରିବାକୁ ଉଦ୍ଦିଷ୍ଟ ଥିଲା, ନ ହେଲେ ବା ଶୋକ ନିବେଦନ କରି ଶବାଧାରରେ ଗାନ କରାଯାଉଥିଲା । କେବେ ଗର୍ବ ଦେଖାଇବା, କେବେ ବା ଭୟ, କ୍ଷୁଧା ଅବା ଶକ୍ତି ପ୍ରଦର୍ଶନ କରିବା କିମ୍ବା ଶିକାର କରିବାର ଉଲ୍ଲାସରେ ସେଗୁଡ଼ିକୁ ଲୋକେ ଗାଉଥିଲେ । ପୁଣି ପ୍ରେମ ଓ ଯୁଦ୍ଧ ସମୟରେ ପ୍ରାସଙ୍ଗିକତା ଅନୁଯାୟୀ ଏହି ରଚନାଗୁଡ଼ିକ ଗାନ କରାଯାଉଥିଲା । ଯଦିଓ ସେଗୁଡ଼ିକ ଆମ ପତ୍ରପତ୍ରିକା, ପୁସ୍ତକରୁ ଉଭାନ୍ ହୋଇଯାଇଛି । ଗ୍ରନ୍ଥାଗାରରେ ମଧ୍ୟ ଦୁର୍ଲଭ । ସ୍ମୃତିରେ ମଧ୍ୟ ନାହିଁ । ତଥାପି, ଆମେ ଆଶ୍ୱସ୍ତ ଯେ, ଆମ କବିମାନେ ପୁନର୍ବାର କବିତାକୁ ଉଦ୍ଭାବନ କରିବେ, ରୂପ ପ୍ରଦାନ କରିବେ, ଉଚ୍ଚାରଣ କରିବେ, ଲେଖି ଚାଲିବେ । କିଛି ବର୍ଷ ପରେ କବିତା ଆମ ପରମ୍ପରାକୁ, ବକ୍ତବ୍ୟ ଓ ଜୀବନକୁ ସମୃଦ୍ଧ କରିବ ହିଁ କରିବ । କବି ଅବଶ୍ୟ ଏକଥା ବି ଭାବୁଥିବ ଯେ, ଶିକ୍ଷିତ ସମାଜ କବିତା ପ୍ରତି ଏତେ ବେଶି ନିସ୍ପୃହ ଥିଲାବେଳେ, ମୁଁ କବିତାପାଇଁ ଏତେ ଶ୍ରମ ଓ ଆନ୍ତରିକତା ଦେଇ ପାଉଛି କ'ଣ ? କେତେକ କବି ଏଇଥିପାଇଁ ନିଜକୁ ଅବହେଳିତ ବୋଲି ଭାବିପାରନ୍ତି । କିନ୍ତୁ ମୋର ମନେହୁଏ, କିଛି ବ୍ୟକ୍ତି ଧ୍ୟାନର ସହ କବିତା ପଢ଼ନ୍ତି । ଏପରି ଧ୍ୟାନ ହୁଏତ ପୂର୍ବରୁ ଆବଶ୍ୟକ ହେଉ ନ ଥିଲା । ପୂର୍ବରୁ କବିତା ଲେଖୁଥିବା ବ୍ୟକ୍ତିଙ୍କ ସଂଖ୍ୟା ମଧ୍ୟ ଊଣା ଥିଲା । ଏତେସଂଖ୍ୟକ ପତ୍ରପତ୍ରିକା ମଧ୍ୟ ଛପା ହେଉ ନ ଥିଲା । ଆଜିକାଲି ଛପାଇବାକୁ ବହୁତ ସୁଯୋଗ ଆସିଛି । ଅନ୍ୟ ଏକ ଦୃଷ୍ଟିରେ ଦେଖିଲେ ବିଂଶ ଶତକର ଶେଷ ଭାଗରେ ଓ ଏକବିଂଶ ଶତକର ପ୍ରାରମ୍ଭ କାଳରେ ବହୁ ନାରୀ କବିତା ରଚନାରେ ବ୍ୟାପୃତ । ଏହାର କାରଣ ନିଶ୍ଚୟ ନାରୀଶିକ୍ଷା,

ବୃତ୍ତିଗତ ସ୍ୱାଧୀନତା, ଆତ୍ମମୁକ୍ତିର ପ୍ରଚେଷ୍ଟା ବୋଲି କହିବାକୁ ହେବ । ନାରୀର ଆତ୍ମନିର୍ଭରଶୀଳତା, ଆତ୍ମପ୍ରକାଶରେ ନିର୍ଭୀକତା ଅନେକ ମାତ୍ରାରେ ବୃଦ୍ଧି ପାଇଛି । ନିଜସ୍ୱ ଚେତନାକୁ ଶବ୍ଦରେ ରୂପାୟିତ କରିବା ନିମନ୍ତେ ସେମାନେ ବଦ୍ଧପରିକର ଏବଂ ସାଧନାରେ ନିମଗ୍ନିତ । ଯାହା ୧୯୫୦/୬୦ ମସିହାବେଳେ ଝିଅଟିପାଇଁ ଲଜ୍ଜାଜନକ ଥିଲା, ସେହି ମନକଥା ପ୍ରକାଶ କରିବା ଆଜି ଝିଅଟିର ଯୋଗ୍ୟତା ଭାବେ ସ୍ୱୀକୃତ ହେଉଛି ।

ଆଶ୍ଚର୍ଯ୍ୟର କଥା, ବର୍ତ୍ତମାନ ସମୟରେ ଯେତେବେଳେ ସତ୍ୟକୁ ବିକୃତ କରାଯାଇ, ଭାଷାକୁ ଆଜ୍ଞାକାରୀ କରାଯାଇ ତା' ବଦଳରେ ନିଜ ଧନ ଓ ପ୍ରତିପତ୍ତି ବଢ଼ାଇବାରେ ବଦ୍ଧପରିକର ଏକ ବିଶାଳ ଗୋଷ୍ଠୀ ସକ୍ରିୟ ଅଛନ୍ତି, ଏବଂ ଏମାନେ ସ୍ଥାନୀୟ, ଜାତୀୟ ଓ ଅନ୍ତର୍ଜାତୀୟ ବିଜ୍ଞାପନକାରୀ, ମିଥ୍ୟାଚାରୀ ଗୋଷ୍ଠୀ ରୂପେ ପରିଚିତ ଓ ସଦା ସ୍ୱାର୍ଥପ୍ରବୃତ୍ତ, ସେତେବେଳେ କବିତା ରଚନା ବିଡ଼ମ୍ବନା ଭଳି ଲାଗେ ନାହିଁ କି ? ସେତିକିବେଳେ କବି ଲେଖକମାନେ ଭାଷାକୁ ଶକ୍ତିଶାଳୀ, ସକ୍ରିୟ, ଜୀବନ୍ତ ଓ ଉଦ୍ଭାବକ ରୂପେ ଗ୍ରହଣ କରି ଭାଷାର ଉତ୍ତରୋତ୍ତର ଉନ୍ନତି ଘଟାଇବା ଓ ମାନବଚେତନାକୁ ଆତ୍ମବିନଷ୍ଟକାରୀ, ରାକ୍ଷସ ଶକ୍ତିଠାରୁ ବଞ୍ଚାଇବା ଚେଷ୍ଟାରେ ପ୍ରାଣପାତ ଉଦ୍ୟମ କରୁଛନ୍ତି । ଏହା ସାବ୍ୟସ୍ତ କରେ ଯେ, କବିତାର ମୃତ୍ୟୁ ନାହିଁ । କବିତ୍ୱର ରହସ୍ୟ ସବୁକାଳେ ଅଭେଦ୍ୟ । ଯେତେ ତର୍କ, ବିତର୍କ, ଆଲୋଚନା, ଯୁକ୍ତି – ଏସବୁ ବାହାରେ କବିତ୍ୱର କିଛି ଅଂଶ ଗୋପ୍ୟ ରହିଯାଏ ।

❑❑❑

# କବିତା ଓ ମୁଁ

ମୋର ପ୍ରତିଟି କବିତାର ପ୍ରାରମ୍ଭ ନୂତନ ଓ ପରିସମାପ୍ତି ଅସାଧାରଣ ଅବଶ୍ୟ ସବୁବେଳେ ଏହା ଘଟିଥାଏ କି ନାହିଁ କହିହେବ ନାହିଁ । ମାତ୍ର ଏହିପରି ଘଟିଥାଏ ବୋଲି ମୋର ବିଶ୍ୱାସ । ମୋ କବିତାକୁ ପାଠକେ କହିପାରନ୍ତି ନଦୀ ପରି ବହମାନ, କାଠଯୋଡ଼ି, ବିରୂପା କି ମହାନଦୀ କି କୁଆଖାଇ, କିମ୍ବା କ୍ଷୀର ଢୋକୁଥିବା ସୁବିସ୍ତୃତ ଧାନକିଆରି, ଅଥବା ଛାତି ଭିତରର ନିସ୍ତବ୍ଧତାକୁ ଆନ୍ଦୋଳିତ କରୁଥିବା ଏକ ଶାଣିତ, ଉଚ୍ଚାଟ ସ୍ୱର । କବିତା ସମ୍ପର୍କରେ ମୁଁ କିଛି ପ୍ରବନ୍ଧ ଓ ଆଲୋଚନା ଲେଖିଛି – ଆଠ ବର୍ଷ ଧରି ଗୋଟିଏ ସମ୍ଭାବନାମୟ କବିତା ପତ୍ରିକା 'ଉଦ୍‌ଭାସ'କୁ ସମ୍ପାଦନା କରିଛି । ତା'ର ସମ୍ପାଦକୀୟ ମରମୀ ପାଠକଙ୍କୁ ମୁଗ୍ଧ କରିଥିବାର ପତ୍ରାଳାପ ପାଇଛି । ଏହାସତ୍ତ୍ୱେ, ନିଜ କବିତା ସମ୍ପର୍କରେ କିଛି କହିବାକୁ ଗଲାବେଳେ, ଶବ୍ଦ ଏବଂ ଭାବାନୁଭୂତି ଉଭାନ୍ ହୋଇଯିବାର ମୁଁ ଅନୁଭବ କରେ । ନିଜେ ହୁଏତ ଅସ୍ପଷ୍ଟ ଭାବେ କିଛିଟା ବୁଝିଛି । କିନ୍ତୁ, କୌଣସି ନିଭୃତ ସମ୍ପର୍କର ରହସ୍ୟକୁ ବୁଝାଇପାରିବା କ'ଣ ସହଜ ? ଆଜିଠାରୁ ଅନେକ ବର୍ଷ ପୂର୍ବରୁ, ଯେବେ ବିନିଦ୍ର ରାତିଅଧରେ ଶେଯରୁ ଉଠିଯାଇଛି ମୁଁ, ଅନ୍ଧାରରେ, ଖାତାକଲମ ଧରି ଡ୍ରଇଂରୁମ୍‌ରେ ଆଲୁଅ ଜାଳିଛି – ଖୁବ୍ ସନ୍ତର୍ପଣରେ । ହୁଏତ ରାତି ପାହା ପାହା ହୋଇଯାଇଛି । ଏହା ଏକପ୍ରକାର ଅଭିସାର । ଏଭଳି ଅଭିସାରର ରାତିରେ ମୁଁ ସୃଜନଧର୍ମ ସହ ଏକାତ୍ମ ହୋଇଛି, ଚୁପ୍‌ଚାପ୍, ଏକୁଟିଆ । କାହିଁକି ଏ ପ୍ରକାର ଦଣ୍ଡକୁ ମୁଁ ବରଣ କରିନେଇଛି କେଜାଣି ? କ'ଣ ପାଇବି ବୋଲି ? ହୁଏତ ମୁଁ ପାଇଛି କିଛି । ଜୀବନର ବିବିଧ ପ୍ରଶ୍ନାବଳୀରୁ, ମୂକ ବ୍ୟାକୁଳତାରୁ ମୁକ୍ତି ପାଇବାପାଇଁ ସ୍ୱ-ଅନୁଭବ ଓ ଉପଲବ୍‌ଧିକୁ ମୁଁ ଶବ୍ଦଗତ କରିଛି ।

ଅନଭିବ୍ୟକ୍ତ, ଶୂନ୍ୟଚାରୀ ସେ କବିତାକୁ ମୁଁ ଆହ୍ୱାନ କରିଛି । ନିଜ ଅନ୍ତଃକରଣରେ କବିଟିଏ, ନାରୀଟିଏ ଶୂନ୍ୟକୁ ହାତ ବଢ଼ାଇ ଯାଚନାର ମୁଦ୍ରାରେ ଠିଆ ହୋଇଥିବାର ମୁଁ ପ୍ରତ୍ୟକ୍ଷ କରିପାରିଛି । କୋଉ ଶତାବ୍ଦୀରୁ କବି କଳାକାର ନିମିତ୍ତ ପ୍ରେରଣା ଆସେ – କିଏ ଡାକିଦେଇ କହେ –

'କିଛି କହିଯାଆ' ଆସେ, ଅନ୍ଧାରରୁ ହୁଏତ, କବିର ଅନ୍ଧକାରାଚ୍ଛନ୍ନ ଅନ୍ୟ ସ୍ଥିତିରୁ, ଯେଉଁ ସ୍ଥିତି ଜହ୍ନର ଆରପାଖ ପରି ଅନ୍ଧାରମୟ ସେହିଠାରୁ ଯେ ତାକ ଉଚ୍ଚାରିତ ହୁଏ । ଅସଂଖ୍ୟ ଅଭିଜ୍ଞତା ଭିତରୁ କେଉଁ ନିର୍ଦ୍ଦିଷ୍ଟ ନକ୍ସାଟିକୁ ବାଛି ନେବାକୁ ହେବ, ସେତିକିବେଳେ ହିଁ ଉତୁରିପଡ଼େ ସେହି ଚୟନ ପ୍ରକ୍ରିୟା । ପ୍ରତ୍ୟେକ କବି ନିର୍ଜ୍ଞାନ ମନରୁ ହିଁ ସୃଷ୍ଟି କରିଥାଏ । ଜଣେ ପ୍ରଖ୍ୟାତ କଳାବିତ୍ କହିଥିଲେ, "All artists, whether they know it or not, create from no mind, from inner stillness." ଏହି ଆଶ୍ଚର୍ଯ୍ୟ ସୁନ୍ଦର ପ୍ରେରଣାରେ ବିସ୍ମିତ ନ ହୋଇ, ସେହି ଅନଭିବ୍ୟକ୍ତକୁ ନୂଆ ଶୈଳୀରେ ବାନ୍ଧି ରଖିବାକୁ ମୁଁ ପ୍ରଯତ୍ନ କରିଥାଏ । କେବେ ତତ୍କାଳରେ କେବେ ବା ଚେତନା ମଧ୍ୟରେ ସଞ୍ଚିତ ସେ ସୁକୁମାର ମୂର୍ତ୍ତି କାଗଜ ଉପରକୁ ଓହ୍ଲାଇ ଆସିଲେ, ମୁଁ ବିହ୍ୱଳ ହୁଏ, ପୁଣି କେବେ ମନ ଭାଙ୍ଗିଯାଏ – "ନା, ଯେ ନୁହେଁ, ନୁହେଁ ।"

ପାଠକେ ! ଆପଣମାନେ ଜାଣନ୍ତି, ଜୀବନର ଗତିପଥ କାହାପାଇଁ ପ୍ରଶସ୍ତ ଓ ସୁଗମ ହୋଇଥାଏ ତ ଅନ୍ୟ କାହାପାଇଁ ଥାଏ ଦୁର୍ଗମ, କଙ୍କଗିଳ । ମୋ ଜୀବନର ଗତିପଥ ଦ୍ୱିତୀୟ ପର୍ଯ୍ୟାୟର । ସାଧାରଣ ଅଧିକାରମାନଙ୍କରୁ ବଞ୍ଚିତ ହୋଇ ମୁଁ ଅତିକ୍ରମ କରିଆସିଛି ଦୀର୍ଘପଥ । ଏ କାଳରେ ସୃଜନଶୀଳତାହିଁ ମୋର ହାତ ଧରିଛି । ଏକା ଏକା ବାଟ ଚାଲିଲାବେଳେ ପୂରା ଏକୁଟିଆ ଲାଗି ନାହିଁ । କବିତା ତ ପାଖେ ପାଖେ ରହିଛି । ମୋ ଅକ୍ତିଆରରେ ନ ଥାଉ ପଛେ, ତା'ର କ୍ଷଣକମାତ୍ରର ସାନ୍ନିଧ ମୋତେ ଆବିଷ୍ଟ କରି ରଖିବାକୁ ଯଥେଷ୍ଟ । କ୍ରମଶଃ ସଂରଚନା ସହ ମୋର ଆତ୍ମିକସତ୍ତା ଘନିଷ୍ଠ ହୋଇଛି । ଶବ୍ଦ ଖୋଜି, ବାଛି, ବସାଇ ଚେତନାକୁ ପ୍ରମୂର୍ତ୍ତ କରିବାର ପ୍ରୟାସ ଜାରି ରଖିବା କି ଯେ କଷ୍ଟକର – ପ୍ରୀତି ପାଳିବା ପରି କଠିନ, ଖଣ୍ଡାଦାଢ଼ରେ ଚାଲିବା ପରି ପ୍ରମାଦପୂର୍ଣ୍ଣ – ତା' ମୋର ଅବବୋଧକୁ ଆବୋରି ବସିଛି । ଆତ୍ମୋପଲବ୍ଧିର ପ୍ରସ୍ତ ପରେ ପ୍ରସ୍ତ ଉନ୍ମୋଚନ କରିଦେବାର ଅନିବାର୍ଯ୍ୟତାକୁ ମୁଁ ବରଣ କରିନେଇଛି । ମୋର ଜୀବନବେଦନା ଭିତରକୁ ପ୍ରବେଶ କରିଆସିଛି, ବହୁକାଳରୁ ସଂଜୀବିତ ନାରୀତ୍ୱର ବିଶେଷ ଆତ୍ମବୋଧ । ଜଣେ ନାରୀ ହୋଇଥିବାରୁ ମୁଁ ନାରୀର ଶରୀରକୁ ଅସ୍ୱୀକାର କରିବି କିପରି ? ଶରୀରକୁ ନେଇ ଯେ ନାରୀର ସ୍ଥୂଳଜଗତରେ ପରିଚୟ, ତଥା ନାନାଦି ଅନିଭୋଗ । ମୋ କବିତାରେ ତା'ର ଉଚ୍ଚାରଣ –

''ନାରୀତ୍ୱ ଏକ ମର୍ଯ୍ୟାଦା
ଏକ ଗୂଢ଼ ସତ୍ତା
ଯାହା ଖାଲି ଶରୀରରେ ନ ଥାଏ
ଥାଏ ନାରୀର ସ୍ୱପ୍ନରେ, କଳ୍ପନାରେ
ରକ୍ତରେ, ମେଦରେ, ସ୍ୱେଦରେ ଥାଏ ଅବଶ୍ୟ
ଥାଏ ମାତୃତ୍ୱରେ, ଦେବୀତ୍ୱରେ !''

– *'ବସ୍ତ୍ରହରଣ ନୁହେଁ' : ସଂକଳନ – 'କହି ନ ହେଲେ'*

'ନାରୀତ୍ୱ' ନାରୀର ଶରୀରଠାରୁ ବିପୁଳତର, ମହତ୍ତର । ମାତ୍ର ସର୍ଜନଶୀଳତାରେ ମୁଁ ଲିଙ୍ଗଭେଦକୁ ସ୍ୱୀକାର କରେନା । ତେଣୁ ଆତ୍ମାରୁ ନିଃସୃତ, ଅଭ୍ୟନ୍ତରରୁ ଉଚ୍ଚାରିତ ସାହିତ୍ୟ-କଳା-କବିତାରେ ଲିଙ୍ଗଭେଦର ସ୍ଥାନ ନାହିଁ । ରଚନାକର୍ମ-ନିପୁଣା ନାରୀଙ୍କୁ 'ନାରୀକବି' ବା ହିନ୍ଦୀ ଭାଷାରେ ପ୍ରଚଳିତ 'କବୟିତ୍ରୀ', 'କବୀ' ଆଦି ଶବ୍ଦ ପ୍ରୟୋଗକୁ ମୁଁ ଗ୍ରହଣ କରେ ନାହିଁ ।

ଯତ୍‌କିଞ୍ଚିତ୍ ଏହି ମୋର ସାଧନା ପଥରେ ସ୍ଥାନେ ସ୍ଥାନେ ହତାଶାର ଅନ୍ଧକାର ମାଡ଼ିଆସିଛି । ସେସବୁକୁ ବାମହାତର ତର୍ଜନୀରେ ପୋଛିଦେଇଛି ମୁଁ । ଭଲ ପାଇଛି ମୋର ଚତୁଃପାର୍ଶ୍ୱର ସବୁକିଛିକୁ – ମଣିଷକୁ, ଉଦ୍ଭିଦକୁ, ପଶୁପକ୍ଷୀଙ୍କୁ, ପତଙ୍ଗକୁ – ନିଃସର୍ତ୍ତ ଯେ ଭଲପାଇବାର ଉଚ୍ଚାରଣ –

''ଜାକି ଧରିଛି ଛାତିରେ
ମଣିଷଙ୍କୁ ଯେତିକି
ଗଛଲଟାଙ୍କୁ ସେତିକି
ପତଙ୍ଗଟିକୁ ବି ସେତିକି ନିବିଡ଼ରେ ।''

ତେବେ, ଏତେଗୁଡ଼ାଏ ବର୍ଷ ଧରି ମୁଁ କ'ଣ ଲେଖୁଛି ? ତା' ପୁଣି ସରିଲା ଭଳି ଲାଗୁ ନାହିଁ । ମୁଁ ଅନୁଭବ କରିଛି ଯେ, ମୋ କବିତାର ପଙ୍‌କ୍ତିମାନଙ୍କ ମଧ୍ୟରେ ଛପି ରହିଛି ଯେଉଁ ନୀରବତା, ଶବ୍ଦମାନଙ୍କ ମଧ୍ୟରେ ଅଟକିରହିଛି ଯେଉଁ ଉତ୍ତାପଣ, ସେମାନଙ୍କୁ ଆବିଷ୍କାର କରିବାପାଇଁ, ସେହି ନୀରବତାକୁ ଲଙ୍ଘିଯିବାପାଇଁ ମୋର ପ୍ରୟାସକୁ ମୁଁ ଜାରି ରଖିଛି । ଘାସ ବଢୁଥିବାର ଖୁବ୍ ଅନୁଚ୍ଚ ଶବ୍ଦଟିକୁ ଶୁଣିବା, କଢ଼ଟିଏ ଫୁଟିବାର ଶବ୍ଦକୁ କାନେଇବା, ଏପରିକି ଗୁଣ୍ଡୁଚିଟିର ହୃତ୍‌ସ୍ପନ୍ଦନ ଶୁଣିବା ନିମିତ୍ତ ଝୁରିହେବା – ମୋର ଉପରୋକ୍ତ ପ୍ରୟାସର ମୁଖ୍ୟ ଅଂଶ । ଅର୍ଦ୍ଧଶତାବ୍ଦୀ ବିତିଗଲାଣି ଯା ଭିତରେ । କିନ୍ତୁ, ମଣିଷ ସାହିତ୍ୟ ପଢ଼େ

କାହିଁକି ? ବିଶ୍ୱକବି ରବୀନ୍ଦ୍ରନାଥ କହିଥିଲେ, ''କବିତାର ଆନନ୍ଦ 'ଅପ୍ରୟୋଜନ ଆନନ୍ଦ' ।'' ସାଂସାରିକ ବିଚାରରେ ସେ ଆନନ୍ଦ ଅପ୍ରୟୋଜନ ହୋଇପାରେ । ମାତ୍ର ମଣିଷର ଚେତନାର ପରିପୁଷ୍ଟି ନିମିତ୍ତ ଏହି ଆନନ୍ଦ ନିତାନ୍ତ ପ୍ରୟୋଜନ । କାବ୍ୟ ପଠନାନନ୍ଦ ବରଫକୁ ହାଣୁଥିବା କୁରାଢ଼ି ଭଳି – ହୃଦୟ ଭିତରେ ବରଫ ପାଲଟିଯାଇଥିବା, ସ୍ଥାଣୁ ହୋଇସାରିଥିବା ଅନୁଭବ-ପ୍ରବଣତାକୁ ଏହା କାଟି ପକାଇବାରେ ଲାଗିଥାଏ । ଫୁଲପାଇଁ ସୂର୍ଯ୍ୟାଲୋକ ଯେଉଁପରି, ହୃଦୟପାଇଁ ଏହି ଦିବ୍ୟାନନ୍ଦ ସେହିପରି ଅପରିହାର୍ଯ୍ୟ । କବିତା ପଠନ ଏକାକୀତ୍ୱରୁ ମୁକ୍ତି ଦିଏ । ପାଠକ ନିଜକୁ କମ୍ ଏକୁଟିଆ ମନେକରେ । ବେଳେ ବେଳେ ଚମକିଉଠେ, ଜୀବନର ବୃହତ୍ତର ସତ୍ୟୋପଲବ୍ଧିର ସାମ୍ନାସାମ୍ନି ହୋଇଯାଏ ।

ଜଣେ ମହାମନୀଷୀ କହିଛନ୍ତି – ''ଯେଉଁଦିନ ସକଳ ସାମାଜିକ ତତ୍ତ୍ୱ ଭୁଶୁଡ଼ି ପଡ଼ିବ, ଯୁଦ୍ଧ ଓ ବିପ୍ଳବ ମନୁଷ୍ୟକୁ ନିହାତି ଧ୍ୱଂସର ଗହ୍ୱର ଆଡ଼କୁ ଘେନିଯିବ, ସେଦିନ କବି, (ଯାହାକୁ ପ୍ଲାଟୋ ତାଙ୍କ ଆଦର୍ଶ ରାଜ୍ୟରୁ ନିର୍ବାସନ ଦେବାପାଇଁ କହିଥିଲେ) ସେ ହିଁ ତ୍ରାଣକର୍ତ୍ତା ରୂପେ ଠିଆହେବ ଓ ମଣିଷକୁ ସହାୟତାର ହାତ ବଢ଼େଇଦବ ।''

ମୋ କବିତାର ଉତ୍ସ ଯନ୍ତ୍ରଣା ଓ ସ୍ୱପ୍ନ, ଏବଂ ସ୍ପର୍ଦ୍ଧା ଓ ବିନୟ ମୋ କବିତାର ଭାବରୂପର ଆଧାର । ମୋ ସଂରଚନା ଯଦି ପାଠକମାନଙ୍କର ଯତ୍କିଞ୍ଚିତ୍ ଶ୍ରଦ୍ଧାଭାଜନ ହୋଇପାରିଛି, ତାହା ମୋର ପରମ ସୌଭାଗ୍ୟ । ପାଠକମାନଙ୍କ ସମ୍ମୁଖରେ ମୁଁ ସ୍ୱୀକାର କରୁଛି ଯେ, ପାର୍ଥିବ ଜୀବନର ଆଡ଼ମ୍ବରକୁ ଆଡ଼େଇ ଦେଇ ଆତ୍ମାଲୋଚନା ମାଧ୍ୟମରେ ମୁଁ ଖୋଜିଆଣିଛି କବିତାରୂପକ ଅପାର୍ଥିବ ରତ୍ନ, ଯାହାର ଉଜ୍ଜ୍ୱଳତା ମୋର ଆତ୍ମବୋଧକୁ ଶାଣିତ କରିବାରେ ସାହାଯ୍ୟ କରିଛି ।

□□□

# ସୃଜନ-ବୀକ୍ଷା

## ଭଲ ପାଇବାର ଦ୍ୱିବିଧ ଚିତ୍ର

### ସଂକଳନ – ସ୍ୱରଚିତ୍ର

### କବି–ବିପିନ ନାୟକ

'ଭଲ ପାଇବା' ପୁଣି 'ଦ୍ୱିବିଧ' ଏହି ଦୁଇଟି ଶବ୍ଦରେ ବିରୋଧାଭାସ ରହିଛି ନିଶ୍ଚୟ । କିନ୍ତୁ ଭଲ ପାଇବାର ବ୍ୟାପକ ଅର୍ଥ ହେଉଛି – ସାରା ପୃଥିବୀକୁ ଭଲ ପାଇବା । କେବଳ ନିଜ ପ୍ରେମାସ୍ପଦା ପ୍ରତି ନୁହେଁ । ସମୁଦାୟ ମଣିଷ, ପରିବେଶ, ପଶୁପକ୍ଷୀ, ଯେ ସକଳ ପ୍ରତି ଉତ୍ସାରିତ ଭଲ ପାଇବାକୁ ଏଠାରେ ବିଚାର କରିବାକୁ ହେବ । କବି ବିପିନ ନାୟକଙ୍କ ପୁସ୍ତକ 'ସ୍ୱରଚିତ୍ର'ର ଭାବ-ସମ୍ପଦକୁ ଉପରୋକ୍ତ ଦୃଷ୍ଟିରେ ବିଶ୍ଳେଷଣ କରାଯାଇପାରିବ । ଏହାର ଆକଳନ ପୂର୍ବରୁ କବିଙ୍କ ଅଗ୍ରଲେଖ 'ମୂର୍ଚ୍ଛନାର ମୁହଁ'କୁ ଗ୍ରହଣ କରାଯାଉ । ଏହା ତାଙ୍କ କାବ୍ୟଚେତନାର ଏକ ଅନ୍ତର୍ଲିପି ।

'ଅଶବ୍ଦର ବି ସ୍ୱର ଅଛି' । ଏହି ଉପଲବ୍ଧି ଅତ୍ୟନ୍ତ ସୂକ୍ଷ୍ମ, ବାୟବୀୟ (ethereal) । ଯେ ସ୍ୱର ପୁଣି ପଞ୍ଚଭୂତ ଏବଂ ଚିରନ୍ତନ । ସତରେ ଚିରନ୍ତନ ବା କଅଣ ? ବ୍ୟାପ୍ତ ଅର୍ଥରେ ଏ ପୃଥିବୀର ଚିରନ୍ତନତା କାହିଁ ? ତେବେ ମଣିଷ ଜୀବନର (ଆୟୁଷ୍କାଳ)ର କ୍ଷୁଦ୍ର ସୀମା ସହ ତୁଳନା କଲେ ପୃଥିବୀର ଚିରନ୍ତନତାକୁ ଅବବୋଧରେ ଆଣିହୁଏ । 'ସ୍ୱରଚିତ୍ର' ସଂକଳନଟି ୩୬ ଗୋଟି କବିତାର ସମାହାର । ଏଥିରେ ଅଭିବ୍ୟକ୍ତ ହୋଇଛି ଶାଣିତ, ତୀବ୍ର ଭଲ ପାଇବା । ଏହି 'ଭଲ ପାଇବା' କେବେ ବ୍ୟକ୍ତିଗତ, ନିର୍ଦ୍ଦିଷ୍ଟ ମଣିଷ ପ୍ରତି ଅଭିପ୍ରେତ ତ କେବେ ସାରା ପୃଥିବୀ ପ୍ରତି ପ୍ରସାରିତ ହୋଇଯାଇଛି । 'ସ୍ୱରଚିତ୍ର'କୁ ଇଂରାଜୀରେ Voice Picture କହିହବ । ଏପରିକି କବିତାକୁ Word Picture ବୋଲି ବହୁ ପୂର୍ବରୁ କୁହାଯାଇଛି । ପ୍ରକୃତରେ ଶବ୍ଦମାନଙ୍କ ଉପଯୁକ୍ତ ସହାବସ୍ଥାନ ଚିତ୍ରଟିଏ ରଚନା କରିଥାଏ । ଆମେ ତାକୁ ସାଧାରଣ ଅର୍ଥରେ ଚିତ୍ରକଳ୍ପ, ରୂପକଳ୍ପ ଭାବେ ଗ୍ରହଣ କରୁ । କିନ୍ତୁ ବିଶ୍ଳେଷଣାତ୍ମକ ଦୃଷ୍ଟିରେ ଦେଖିଲେ, ଶବ୍ଦଗୁଡ଼ିକ ଚିତ୍ର ରଚନା କରନ୍ତି ସତ; ମାତ୍ର ସଫଳ ଚିତ୍ରଟିଏ ସଂରଚିତ କରିସାରିଲାପରେ ଶବ୍ଦଗୁଡ଼ିକ ଅନ୍ତର୍ହିତ ହୋଇଯାଆନ୍ତି । ପାଠକ ସାମ୍ନାରେ ରହେ ନାହିଁ ଶବ୍ଦପୁଞ୍ଜ, ରହେ ତା'ର ଦୃଶ୍ୟ ସମ୍ବେଦ୍ୟ ବା ଇନ୍ଦ୍ରିୟ ସମ୍ବେଦ୍ୟ ଚିତ୍ରଟିଏ । ଏହି ଚିତ୍ର ଚକ୍ଷୁରେ ଦିଶିଯାଏ, ଅନ୍ତଃକରଣରେ ମଧ୍ୟ ପ୍ରତ୍ୟକ୍ଷୀଭୂତ ହୁଏ । ଏହିପରି ଏକ ଶକ୍ତିଶାଳୀ ଚିତ୍ରକୁ ଏଠାରେ ଅନୁଭବ କରାଯାଉ ।

"ସେ (ଦୁଃଖ) ନ ଥିଲେ ମୁଁ ଜାଣନ୍ତି କି ?
ଇନ୍ଦ୍ରଧନୁରେ ବାସ୍ନା ଥାଏ
ଥାଏ ବୋଲି
ଲୁହରେ ଅନଳ
କେମିତି ବା ଜାଣନ୍ତି ମୁଁ
ରାତି ଅଧରେ
ଗୀତ ଗାଏ ବୋଲି
କେବେ କେବେ କୂଳର ପଥର ।"

ଏଠାର ଅଧରାତି ଝାପ୍‌ସା ଅନ୍ଧାର ଭିତରେ, ବହିଯାଉଥିବା ନଦୀକୂଳରେ ପଥରଟିଏ ଗୀତ ଗାଉଥିବାର ଶୁଭିଯାଏ, ଦିଶିଯାଏ ।

କବିଙ୍କ ସ୍ୱରରେ ବିଷାଦବୋଧ ଅନୁରଣିତ । ଯେଉଁ ବ୍ୟକ୍ତି (କବି) ଅପରକୁ ଭଲପାଏ, ସେ ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ପ୍ରେମାସ୍ପଦା ହେଉ, ନତୁବା ହେଉ ସମୁଦାୟ ବିଶ୍ୱ, ତାକୁ କଷ୍ଟ ସହିବାକୁ ପଡ଼ିଥାଏ । କଷ୍ଟ ବିନା ଭଲ ପାଇବା କାହିଁ ? ତେଣୁ ସେ ଛଟପଟ ହୁଏ ଅତି ଗୋପନରେ – ସେ ବେଦନା ଅନ୍ୟ କାହାଠାରେ ପ୍ରକାଶି ହୁଏ ନାହିଁ । କିନ୍ତୁ କବି ଏହି ଅସହଜ ବ୍ୟାପାରରେ ବାଜି ରଖେ – ପ୍ରକାଶ କରିବାର ଦାୟକୁ ମାନିନିଏ । ମାତ୍ର ଏ ପ୍ରକାରର ପ୍ରକାଶ କରିବାକୁ ସେ କେତେ ମାତ୍ରାରେ ସମର୍ଥ ହୁଏ ? ସମସ୍ତ ସତ୍ କବି ବୁଝିଛନ୍ତି ଯେ ଏ ଦିଗରେ ସେମାନଙ୍କର ଅସାମର୍ଥ୍ୟ ରହିଛି । ଅସାମର୍ଥ୍ୟର ବେଦନାବୋଧ ମଧ୍ୟ କବି ଚେତନାକୁ ଆକ୍ରାନ୍ତ କରେ । 'ସ୍ୱରଚିତ୍ର'ରେ ଗୋଟିଏ କଲ୍ୟାଣ ଚେତନା ରହିଛି – ଅଧିକାଂଶ କବିତାରେ ରହିଛି କବିଙ୍କର ସମର୍ପଣଭାବ । 'ହାତର ପତଙ୍ଗ ମୋ'ର' କବିତାଟିକୁ ବିଚାର କଲେ ଦେଖିବା ଏଥିରେ ପ୍ରେମିକା ପ୍ରତି, ତତ୍ ସହିତ ଜନ ସମୁଦାୟ ପ୍ରତି ଯୁଗପତ୍ ଶୁଭକାମନା ପ୍ରକଟିତ ହୋଇଛି । ଉଦାହରଣସ୍ୱରୂପ –

"ହାତ ମୋର ଶଙ୍କିତ ଶଙ୍ଖାରି/
ତା' ହାତରେ ମଣ୍ଡିଦେଉ ଚୁଡ଼ି ଚନ୍ଦ୍ରଲେଖା/
ହାତରେ ରୁମାଲ ମୋର ପୋଛିଦେଉ ତା' ହାତର ଲୁହ..."

(ପୃଷ୍ଠା – ୧୨)

ଏବଂ,

"ଏଇ ମୋର ଫୁଲ ଫୁଟା/
ଫଗୁଣର ହାତ
କେବେ ଥରେ ଛୁଇଁଦେଲେ/
ସବୁ ହାତ ହୋଇଯାଉ
ବର୍ଣ୍ଣମୟ
ବସନ୍ତ ବସନ୍ତ ।"

(ପୃଷ୍ଠା – ୧୨)

କବିତା ସମ୍ପର୍କରେ ଗୋଟିଏ ସତ୍ୟ କହି ରଖେ – ବକ୍ତବ୍ୟ ଯାହା ବି ହେଉ, ପ୍ରକାଶଭଙ୍ଗୀ, ଶବ୍ଦସଜ୍ଜାହିଁ ପାଠକକୁ ଅଧିକତର ଘାରିଥାଏ । ସେହି ଘାରିବାପଣ କବିତାଗୁଡ଼ିକର ବିଶେଷତ୍ୱ । ଯେକୌଣସି କବିର କାବ୍ୟ-କୁଶଳତା, କବିତା ଭିତରେ ନିହିତ ସତ୍ୟ ଥାଏ ଗୋପନୀୟ, ପାଠକ ତାକୁ ଖୋଜେ, ଉଦ୍ଧାର କରେ । କାରଣ କବି ଆତ୍ମାଲୋଚନା କରିଥାଏ । କବି ଭିନ୍ନ ଅନ୍ୟମାନେ, ଯଥା – ରାଜନୀତିକ, ସାମାଜିକ ବକ୍ତାଗଣ ରାଜନୀତି, ସମାଜନୀତି ବିଷୟରେ କହିଥା'ନ୍ତି । ମୂଳରୁ କୁହାଯାଇଛି ଯେ ଏହି ପୁସ୍ତକରେ ଆତ୍ମାଲୋଚନାର ଦୁଇଗୋଟି ଦିଗ ଉନ୍ମୁକ୍ତ ରହିଛି । ବକ୍ତବ୍ୟ ନିଶ୍ଚୟ ଗୋଟିଏ, ତାହା ଭଲ ପାଇବା । ପ୍ରକୃତରେ ଜଣେ କବି, ମଣିଷକୁ ହେଉ, ପ୍ରକୃତିକୁ ହେଉ ବା ଈଶ୍ୱରଙ୍କୁ ହେଉ, ଭଲପାଇ ହିଁ କବିତାକୁ ଅଭିବ୍ୟକ୍ତ କରିଥାଏ । ଆଜିର ଖଣ୍ଡବିଖଣ୍ଡିତ ସମାଜରେ କେଉଁଠି ଅହଂକାର ଓ ସାମ୍ପ୍ରଦାୟିକତା ତ କେଉଁଠି ଅର୍ଥଗତ ସ୍ୱାର୍ଥ, ଜାତି, ଧର୍ମ ମଣିଷକୁ ଭାଗ ଭାଗ କରୁଛି । ମଣିଷର ମଝିରେ କେତେ ଗାର ତାକୁ ବିଭକ୍ତ କରୁଛି । ଏହି ଗାରଗୁଡ଼ିକର ଲଙ୍ଘନପାଇଁ କବିଙ୍କ ନିବେଦନ କଳାତ୍ମକ ଭାବେ ପ୍ରକଟିତ । ଏହି 'ଗାର' କବିତାଟି ଖୁବ୍ ନିବିଡ଼ ଓ ଅନ୍ତରଙ୍ଗ ଭାବେ ମହାମିଳନର ବାର୍ତ୍ତା ଦିଏ –

> ''ସବୁ ଗାଁର ଆଗରେ ତ/
> ଖେଳିବୁଲେ ଗୋଟେ
> ସୁନାର ହରିଣ
> ସବୁ ଗାରକୁ ଲଙ୍ଘୁଥାଏ/
> କେହି ଜଣେ ଗୈରିକ ରାବଣ ।''

କିମ୍ବା,

> ''ଗାର କ'ଣ ଟାଣେ କେବେ
> ମେଘ, ମନ, ପକ୍ଷୀ ଓ ପବନ ?
> ବରଂ ଲିଭେଇ ଦିଅ ଯେତେସବୁ ଜଳୁଥିବା
> ଗାରର ଅଙ୍ଗାର ।''

ସାଧାରଣ ମଣିଷକୁ ନେଇ ତା'ର କ୍ଷୁଧାକୁ, ପ୍ରତାରିତ ଅବସ୍ଥାକୁ, ତା'ର ସାମାନ୍ୟ ସ୍ୱପ୍ନକୁ ବିଚାର କରି କବି ଚିତ୍ତ ସମ୍ବେଦନଶୀଳ ହୋଇପଡ଼ିଛି । ଏହା ସହିତ ଅବକ୍ଷୟୀ ପରିବେଶ କିଛି କମ୍ ଦରଦ ଦାବି କରି ନାହିଁ । ଅନ୍ୟ ଲୋକେ ଯାହା ଦେଖି ଦେଖୁ ନ ଥିବେ, କବିର ସମ୍ବେଦନଶୀଳତା ତାହାକୁ ହିଁ ଦେଖାଇଦେଇଥାଏ । ନ ହେଲେ, ସମାଜକୁ ବଦଳାଇବାର ଶକ୍ତି କବିର ନାହିଁ । ଜନମାନସର ଅନ୍ତର୍ଚେତନାକୁ ଉଦ୍‌ବୁଦ୍ଧ କରିବା ହିଁ କବିର ସମାଜ ସଚେତନତା ।

ସମାଜ ଚେତନାର ସ୍ଲୋଗାନ କୋଉ କାଳୁ କବିତାରେ ପ୍ରଚଳିତ ହୋଇଆସୁଛି । ଅଥଚ ସେଗୁଡ଼ିକରେ ଆନ୍ତରିକ ବେଦନାବୋଧର ଉପସ୍ଥିତି ନଗଣ୍ୟ । କିନ୍ତୁ କବି ବିପିନଙ୍କ କବିତାରେ ନାହିଁ ସ୍ଲୋଗାନ, ଅଛି ଗଭୀର ମର୍ମବେଦନା । ଜନତା ଜନାର୍ଦ୍ଦନଙ୍କ ପ୍ରତୀକ ହେଉଛି 'ସନାତନ' । 'ପତଙ୍ଗ', 'ଗାର', 'ଶବ୍ଦନାରୀ', 'ପକ୍ଷୀ ଲାଗୁଛି' ଇତ୍ୟାଦି ଆଲୋଚ୍ୟ କବିତାଗୁଡ଼ିକରେ ମିଥ୍‌ର ଖଣ୍ଡାଂଶ ମଧ୍ୟେ ମଧ୍ୟେ ବିଜୁଳି ପରି ଝଟକିଉଠି ବକ୍ତବ୍ୟକୁ ଅମିତଶକ୍ତି ପ୍ରଦାନ କରିପାରିଛି । ଏସବୁ କବିତାର ପ୍ରତ୍ୟେକ ପଙ୍‌କ୍ତି ସୁନିର୍ବାଚିତ ଓ ସୁସଂଯୋଜିତ ତଥା ସୂଚନାତ୍ମକ । ଗୋଟିଏ ବି ଶବ୍ଦ ଯଦି କବିର ଗଭୀର ଅବବୋଧ – ସଂଜାତ ହୋଇ କବିତାରେ ଉପଯୁକ୍ତ ଭାବେ ସଂସ୍ଥିତ ହୋଇଥାଏ, ତେବେ କେବଳ ପୃଥ୍ୱୀରେ ନୁହେଁ, ସ୍ୱର୍ଗରେ ମଧ୍ୟ ତାହା କବି ନାମକୁ ଉଦ୍‌ଘୋଷିତ କରିଥାଏ । 'ସ୍ୱରଚିତ୍ର'ରେ କବିଙ୍କ ରଚନା ପାଟବତା ପାଠକେ ସହଜେ ଅନୁଭବ କରିପାରିବେ । ପୃଥ୍ୱୀଠାରେ କବି କ୍ଷମାପ୍ରାର୍ଥୀ । ଯେ ମଣିଷଜାତି, ଏତେ ଭାବେ ପୃଥ୍ୱୀକୁ ଲୁଣ୍ଠନ କରିବାର, ତା'ର ପରିବେଶକୁ ଧ୍ୱଂସ କରିବାର, ହୃଦୟଙ୍ଗମ କରିଥିବା କେଉଁ ସମ୍ବେଦନଶୀଳ ମଣିଷ (ସେ ଯଦି କବି ହୋଇଥାଏ) ନିଜର ଅପାରଗପଣ ପାଇଁ ମାଟି ମାଆ ନିକଟରେ କ୍ଷମାପ୍ରାର୍ଥୀ ନ ହେବ ! ଏହା ବ୍ୟତୀତ ତା'ର ଗତ୍ୟନ୍ତର କାହିଁ ?

କବିର ସୁକୃତ ସମ୍ପର୍କରେ ପ୍ରଖ୍ୟାତ ମାଲୟାଲମ୍ କବି କୁମାରନ୍ ଆସନ କହିଛନ୍ତି ଯେ, ଭିକ୍ଷୁ ଆନନ୍ଦ ତୃଷାତୁର ହୋଇ ଜଳପାନ ନିମିତ୍ତ ଅନ୍ୱେଷଣ କରୁଥିବାବେଳେ 'ଚଣ୍ଡାଳିକା' ନାମ୍ନୀ ନାରୀଟିଏ ଜଳଦାନ କରି ତାଙ୍କର ତୃଷା ନିବାରଣ କରିଥିଲେ । ଏହାର ମର୍ମ ହେଲା – 'ଆନନ୍ଦ' ପିପାସୁ ପାଠକ ଓ 'ଚଣ୍ଡାଳିକା'ଙ୍କ ଜଳ ହେଉଛି କାବ୍ୟକୃତି । ଏହା ପାନକରି ଆନନ୍ଦ ଯେଉଁ 'ତୃପ୍ତି' ପ୍ରାପ୍ତ ହୋଇଛନ୍ତି, ତାହାହିଁ ହେଉଛି କବିର ସୁକୃତ । ଏହି ସୁକୃତ କବି ବିପିନ ନାୟକଙ୍କୁ କେତେକାଂଶରେ ପ୍ରାପ୍ତ ହୋଇଛନ୍ତି । ସେ ଜଣେ ସତ୍‌କବି ଓ 'ସ୍ୱରଚିତ୍ର' ପୁସ୍ତକଟି ତା'ର ଅନ୍ତରଙ୍ଗ ଉଚ୍ଚାରଣ ପାଇଁ ଓଡ଼ିଆ କବିତା ଜଗତରେ ଏକ ସ୍ୱତନ୍ତ୍ର ସ୍ଥାନ ରଖିପାରିବ – ମରମୀ ପାଠକମାନଙ୍କର ପ୍ରିୟ ହୋଇପାରିବ । ଏହା ମୋର ଦୃଢ଼ ବିଶ୍ୱାସ ।

❑❑❑

# ପ୍ରେମ ଓ ନାରୀତ୍ୱର ନୂତନ ପ୍ରସ୍ଥ
## ସଂକଳନ–ଦୋଷୀ
## କବି–ଅମେୟ ବିକ୍ରମାନନ୍ଦନ ଭୂୟାଁ

'ଦୋଷୀ' କାବ୍ୟ ପୁସ୍ତକଟି ପଢ଼ି ଗୌତମଙ୍କ ନୂତନ ଚରିତ୍ରାୟନରେ ଯେକୌଣସି ପାଠକ ଚମକୃତ ହେବ । ପୁରାଣର ସତ୍ୟ, କବିର ସତ୍ୟ ଏକ ନ ହୋଇପାରିବା ସ୍ୱାଭାବିକ । ପୁରାଣ ତ ବହୁଚର୍ଚ୍ଚିତ, ଜ୍ଞାତ, ତା'ହେଲେ, କିଛି ଭିନ୍ନ ନ କହିଲେ, କବି କହିବ କଅଣ ? ଏଠାରେ ଉଲ୍ଲେଖ କରାଯାଇପାରେ, ଆଧୁନିକ ନାଟକ କଂସ (ମୂଳ ହିନ୍ଦୀର ଅନୁବାଦ) ସମ୍ପର୍କରେ – ପୂତନା ଆସିଛି ଗୋପପୁର, କୃଷ୍ଣଙ୍କୁ ସ୍ତନରେ ବିଷ ଦେଇ ହତ୍ୟା କରିବ ବୋଲି, ନାନା ଛଳନାରେ କୃଷ୍ଣଙ୍କୁ କୋଳକୁ ନେଇଛି । ସେତିକିବେଳେ ପୂତନାର ଭାବାନ୍ତର ଜାତ ହୋଇଛି, ନିଷ୍ଠୁର କଂସ ରାଜାର ନିର୍ଦ୍ଦେଶରେ ସେ କେତେ ବାଳୁତଙ୍କୁ ହତ୍ୟା କରିସାରିଲାଣି, ଆଉ ଯେ ମହାପାପ ସେ କରିପାରିବ ନାହିଁ । ନ କଲେ ତାକୁ କଂସ ହୁଏତ ହତ୍ୟା କରିବ ବା ନିର୍ଯାତନା ଦେବ । ସେ ନିଜ ସହିତ ଲୁଚାଇ ଆଣିଥିବା ବିଷପୁଡ଼ିଆଟିକୁ କୃଷ୍ଣଙ୍କୁ ପିଆଉଥିବା ସ୍ତନରେ ନ ବୋଳି ନିଜେ ଢୋକି ଦେଇଛି ଓ ମୃତ୍ୟୁବରଣ କରିଛି । ପୌରାଣିକ ସତ୍ୟରୁ ଭିନ୍ନ ହେଲେହେଁ ଏହା ଅଧିକ ବାସ୍ତବ ଓ ମାନବୀୟ ହୋଇପାରିଛି ।

ଠିକ୍ ଉପରୋକ୍ତମତେ 'ଦୋଷୀ' କାବ୍ୟର ଭାବବସ୍ତୁ ବାଲ୍ମୀକି ରାମାୟଣଠାରୁ ଭିନ୍ନ । କବି ଅମେୟ ବିକ୍ରମାନନ୍ଦନ ଭୂୟାଁ ଗୌତମଙ୍କ ଚରିତ୍ରକୁ ନୂତନ ରୂପ ପ୍ରଦାନ କରିଛନ୍ତି । ରାମାୟଣ କହେ, ବିଧାତାନନ୍ଦିନୀ ଅହଲ୍ୟା ପତି ମହର୍ଷି ଗୌତମଙ୍କଦ୍ୱାରା ଅଭିଶାପଗ୍ରସ୍ତା ହୋଇ ପ୍ରସ୍ତରୀଭୂତା ହୋଇଛନ୍ତି । ତେବେ, ଅହଲ୍ୟା ଛଦ୍ମବେଶୀ ଇନ୍ଦ୍ରଙ୍କୁ ଚିହ୍ନିଥିଲେ ଓ ତାଙ୍କ ସହ ସମ୍ଭୋଗ ରଚିଥିଲେ । ତଥାପି, କ୍ରୁଦ୍ଧ ଗୌତମଙ୍କ ସ୍ୱାମିତ୍ୱକୁ ଏଯାବତ୍ କେହି ଉଦାରତା ସହକାରେ ଗ୍ରହଣ କରିପାରି ନାହାନ୍ତି । ଅହଲ୍ୟାଙ୍କୁ ପ୍ରସ୍ତର କରି ଗୌତମ ଆଶ୍ରମକୁ ଶୂନ୍ୟକରି ଅନ୍ୟତ୍ର ଗମନ କରିଥିଲେ – ଏହା ପୁରାଣ ସମର୍ଥିତ । ସୁବିଦିତ ଯେ, ଅହଲ୍ୟା ଦୋଷ କରି ଦଣ୍ଡପ୍ରାପ୍ତ ହୋଇଛନ୍ତି; କିନ୍ତୁ ଅମେୟ ବିକ୍ରମାନନ୍ଦନଙ୍କ 'ଦୋଷୀ' କାବ୍ୟଟିର ଭାବବସ୍ତୁ ଏହାଠାରୁ ଭିନ୍ନ । ସମଗ୍ର କାବ୍ୟଟିରେ ଅହଲ୍ୟା ଦୋଷକାରିଣୀ ବା ପାପିନୀ ନୁହନ୍ତି –

ଏହା ନିଜେ ମହର୍ଷି ଗୌତମ ସହସ୍ରବାର ଉଚ୍ଚାରିଛନ୍ତି । ଅହଲ୍ୟାଙ୍କୁ ପଥର କଲା ପରେ ଗୌତମ ମନସ୍ତାପରେ ଜଳିବାରେ ଲାଗିଛନ୍ତି । ଅହଲ୍ୟାଙ୍କପାଇଁ ତାଙ୍କ ହୃଦୟରେ ଗଭୀରପ୍ରେମ ଉଜ୍ଜୀବିତ ହୋଇଛି । ସେ ଜାଣିଛନ୍ତି, ତାଙ୍କ କୃତକର୍ମର ପ୍ରାୟଶ୍ଚିତ୍ତ ସମ୍ଭବ ନୁହେଁ । ନିଜ ଆଶ୍ରମରେ, ପ୍ରସ୍ତରୀଭୂତା ଅହଲ୍ୟାଙ୍କ ନିକଟରେ ସେ ସନ୍ତାପିତ ହୋଇ ସ୍ୱ ଭଲ ପାଇବାର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ବିଶିଷ୍ଟ କବି ରମାକାନ୍ତ ରଥ ପୁସ୍ତକର 'ନାନ୍ଦୀ'ରେ ଉଲ୍ଲେଖ କରିଛନ୍ତି ଯେ, ''ମୁହୂର୍ତ୍ତକର ବିଚାରରେ ଯଦି ପ୍ରେମିକ ବା ପ୍ରେମିକା ପରସ୍ପରକୁ ପ୍ରାପ୍ୟରୁ ବଞ୍ଚିତ କରନ୍ତି, ତେବେ ପଶ୍ଚାତ୍ତାପରୁ ସେମାନଙ୍କୁ ତ୍ରାହି ମିଳେ ନାହିଁ ।'' ପୁରାଣ କହିଛି, ଗୌତମଙ୍କ ପ୍ରେମଠାରୁ ତାଙ୍କର ଅହଂକାର ବଡ଼ । ଏହି ଚିରାଚରିତ ଲୋକବିଶ୍ୱାସ ମଧ୍ୟ ରହିଛି ।

ତଥାପି, ପ୍ରଥମ କବିତାରେ ଅହଲ୍ୟାଙ୍କ ମନୋଭାବ ଓ ଆକ୍ଷେପ ସ୍ପଷ୍ଟ ହୋଇଛି, ଗୌତମଙ୍କ ସ୍ମୃତିଚାରଣରେ ବା କବିଙ୍କ ଲେଖନୀରେ –

''ଯୋଗ ଭାଙ୍ଗି ଆସିଲେ ଗୌତମ/
ଆଲିଙ୍ଗିଲେ/
ମୋର ସ୍ରୋତରେ ମୁଁ/
ଉବୁଟୁବୁ କଲି ଗୌତମଙ୍କୁ ।'' *(ପୃଷ୍ଠା - ୨)*

ଏହି ଯୌନତୃପ୍ତି ସେ ଛଳଗୌତମ (ଇନ୍ଦ୍ର)ଙ୍କଠାରୁ ପ୍ରାପ୍ତ ହୋଇଛନ୍ତି, ତପ୍ରରେ ଅଭିଶାପ । ସ୍ୱାମୀଙ୍କ ପ୍ରତି ସ୍ୱତଃ କ୍ଷୋଭ, ଅଭିମାନରେ ଭାଙ୍ଗିପଡ଼ିଛନ୍ତି ଅହଲ୍ୟା –

''ମୁଁ ସିନା ଆତ୍ମା ଦେଲି/
ପ୍ରାଣ ଦେଲି, ମନ ଦେଲି, ଦେହ ଭିନ୍ନ ଆଉ କିଛି/
ବୁଝେ କି ଗୌତମ ?'' *(ପୃଷ୍ଠା - ୩)*

ଏହି ଭୂମିରେ ବିଧାତାପୁତ୍ରୀ, ପତ୍ନୀ, ପ୍ରେମିକା, ସୁନ୍ଦରୀ ଅହଲ୍ୟା ସ୍ପର୍ଦ୍ଧା କରୁଛନ୍ତି –

''ଦେହପାଇଁ ଇନ୍ଦ୍ର ଆସିଥିଲେ/
ଦେହପାଇଁ ଉତ୍କ୍ଷିପ୍ତ ସନ୍ନ୍ୟାସୀ/
ମୁଁ କିନ୍ତୁ ଦେହାତୀତ/
ପାପୀୟସୀ ଏବଂ ଗରୀୟସୀ ।'' *(ପୃଷ୍ଠା - ୪)*

ଅହଲ୍ୟାଙ୍କ ଏହି ଉଚ୍ଚାରଣ ନାରୀତ୍ୱର ମହିମାକୁ ଅର୍ଥାନ୍ୱିତ କରେ । ଇନ୍ଦ୍ରଙ୍କ ସମ୍ଭୋଗ ତାଙ୍କୁ ପାପୀୟସୀ ଆଖ୍ୟା ଦେଇପାରେ । ମାତ୍ର ତାଙ୍କର ପରିଚୟ ସୀମିତ ନୁହେଁ । ପତିଙ୍କ ପ୍ରତି ରହିଛି ତାଙ୍କର ଆନୁଗତ୍ୟ । ସେ ଜଣେ ମୁକ୍ତଚେତା ନାରୀ, ତେଣୁ ଗରୀୟସୀ ।

କବିତାଗୁଡ଼ିକର ଭାବ ପ୍ରେମ, ବିରହ, ଅନ୍ତର୍ଦାହ ଏବଂ ଭାଷା ଓ ଛନ୍ଦ ଲଳିତ । ପତ୍ନୀଙ୍କୁ ଅଭିଶାପ ଦେବାପରେ ଗୌତମ ନିଜ ଅହଂକାରକୁ ଧିକ୍କାରିଛନ୍ତି । ଗରବିଣୀ ପ୍ରେମିକା ପତ୍ନୀ ଅହଲ୍ୟାଙ୍କୁ ସମ୍ମାନ ଦେଇଛନ୍ତି, ପ୍ରକାରାନ୍ତରେ କହିଛନ୍ତି, ''ଇନ୍ଦ୍ରଙ୍କ ସହିତ ସହବାସ ପାପ ନୁହେଁ ।'' (ପୃଷ୍ଠା – ୭) ଅହଂକୁ ପ୍ରେମ ନିକଟରେ ବଳିପକାଇ ଗୌତମ ଅନାଇଛନ୍ତି ଅହଲ୍ୟାଙ୍କୁ ।

''ହଠାତ୍ ଦେଖିଲି/
ତୁମେ ପାଲଟିଛ ଯୋଗମାୟା/
ଜଗନ୍ନାଥ ଆଖି ପରି ଦିଶେ
ତମ ଗୋଲ ଗୋଲ ସ୍ତନ/
ମୁଁ ଗୌତମ ନତଜାନୁ/
× × × କରିବାକୁ ତୁମକୁ ପ୍ରଣାମ ।''

ଅବିଚାର କରିବାପରେ ବର୍ଷ ବର୍ଷ ତାହାର ଉତ୍ତାପକୁ ଦେହ-ମନ-ପ୍ରାଣରେ ଭୋଗିଚାଲିବା ଏବଂ ଫଳତଃ ଅସାଧାରଣତ୍ୱରେ ଉପନୀତ ହେବାର ସୌଭାଗ୍ୟ ଗୌତମଙ୍କଠାରେ ସମ୍ଭବ ହୋଇପାରିଛି । ନିଜ ହୃଦୟର ଅପରାଧବୋଧକୁ ପ୍ରେମସାଧନାରେ ମୁକ୍ତ ଓ ବିପୁଳତର କରିବା ଗୌତମଙ୍କର ଅହରହ ଆକୁଳତାର ଫଳଶ୍ରୁତି । ସତ୍ୟ ସର୍ବଦା ଆପେକ୍ଷିକ । କବିର କଳ୍ପନାହିଁ ଚରିତ୍ରକୁ ଭାଙ୍ଗିଥାଏ, ଗଢ଼ିଥାଏ, ବାସ୍ତବାୟିତ କରିଥାଏ । ଏ କ୍ଷେତ୍ରରେ କବି ଶ୍ରୀ ଭୂୟାଁ ଗୌତମଙ୍କୁ ଏକାଧାରରେ କ୍ରୋଧାନ୍ଧ ଓ ପ୍ରେମମୟ ବ୍ୟକ୍ତିତ୍ୱ ରୂପେ ଚିତ୍ରିତ କରିଛନ୍ତି । ଗୌତମ ଅନୁତପ୍ତ – ଏକଥା ପୁରାଣ କହେ ନାହିଁ । କିନ୍ତୁ 'ଦୋଷୀ'ର ସଂରଚକ ନିଜସ୍ୱ ସୃଷ୍ଟି ଚେତନାର ନୂତନତ୍ୱ ଦେଇ ଗୌତମଙ୍କୁ ପ୍ରକଟିତ କରିଛନ୍ତି । ପ୍ରେୟସୀଙ୍କୁ କ୍ଷମା କରି ନ ପାରିବାର ଦୁଃଖ, ତାଙ୍କୁ କ୍ଷମା କରିଥିଲେ ଗୌତମ ଯେଉଁ ଆନନ୍ଦ ପାଇଥାନ୍ତେ, ତାହା ପାଇପାରି ନାହାନ୍ତି । ସେହି ମର୍ଯ୍ୟାଦାବନ୍ତ ସୁଖ ବିହୁନେ ଗୌତମ ଦୁଃଖାଭିଭୂତ । ଏହି ଅବସରରେ ଗୌତମ ଶରୀର ଓ ଆତ୍ମାର ପ୍ରଭେଦକୁ ହୃଦୟଙ୍ଗମ କରି ଶିଳାରୂପୀ ଅହଲ୍ୟାଙ୍କୁ ନିବେଦନ ଜଣାଉଛନ୍ତି –

''ଆତ୍ମା କି ପଥର
ହୁଏ କେତେବେଳେ ?
ମୁଁ ପଥର କରିଦେଲି ତୁମରି ଦେହକୁ ।'' (ପୃଷ୍ଠା–୨୫)

ଆତ୍ମାନ୍ତରରେ ଅହଲ୍ୟା ତ ଶିଳୀଭୂତା ନୁହନ୍ତି । ତାଙ୍କୁ ହରାଇ ଗୌତମ ସନ୍ନ୍ୟାସର ପ୍ରକୃତ ଅର୍ଥ ସମ୍ପର୍କରେ ଅବହିତ ହୋଇଛନ୍ତି – ପ୍ରସ୍ତରଖଣ୍ଡକୁ ଧୋଇ, ସଜାଇ ସେ କହିଛନ୍ତି –

"ମୁଁ ଜାଣେ ତମେ କେବେ/
ସୁଖୀ ହେବ ନାହିଁ/
ସୁଖୀ ପରି/
ଶବରୀର ହୃଦୟରେ/
ବୁଣୁଥିବ ଅଖଣ୍ଡ ବିଶ୍ୱାସ ।" (ପୃଷ୍ଠା – ୫୩)

ଗୌତମଙ୍କ ଭାବାନ୍ତର ମୁଖ୍ୟତଃ ଓଡ଼ିଆ ଭାଷାର ବିଗତ କବିମାନଙ୍କ ଉପଲବ୍ଧିକୁ ଆଶ୍ରୟ କରିଛି । କବି ଭୀମ ଭୋଇ ଅଲେଖଙ୍କ ମହିମାକୁ ବ୍ୟକ୍ତ କରିଛନ୍ତି –

"ପାଦ ପାଣି ନାହିଁ ହେ ଶୂନ୍ୟଦେହୀ
ଅଛ ଉଭା ହୋଇ... ।"

ଠିକ୍ ଏହିପରି ଗୌତମଙ୍କ ଅବର୍ଣ୍ଣନୀୟ ଅବବୋଧ ଉଦ୍‌ଭାସିତ ହୋଇଛି –

"ପାଣି ନାହିଁ ପାଣି ଲହଡ଼ି ମାରୁଛି/
କୂଳ ନାହିଁ କୂଳ ଲଙ୍ଘିଯାଏ–" (ପୃଷ୍ଠା – ୫୫)

ପୁନଶ୍ଚ, "ଜୀବନ, ପ୍ରକୃତି, ପୁରୁଷ/
ଈଶ୍ୱର, ମୁକ୍ତି, ନିର୍ବାଣ/
ମୁଁ କାହାକୁ ବୁଝିଲି ?/
ବୋଧହୁଏ ଏଯାବତ୍ ଯାହା/
ବୁଝିଥିଲି ସବୁ ଅସମ୍ପୂର୍ଣ୍ଣ ।"/ (ପୃଷ୍ଠା – ୬୪)

ଗୌତମ ଆତ୍ମସଚେତନ ହୋଇଛନ୍ତି, ତାଙ୍କ ଅନ୍ତର୍ଦାହକୁ କେବଳ ଅହଲ୍ୟାଙ୍କ ପ୍ରେମ ହିଁ ନିର୍ବାପିତ କରିପାରିବ । ଅହଲ୍ୟାଙ୍କ ଅବର୍ତ୍ତମାନରେ ତାଙ୍କୁ ଗୌତମ ଯେପରି ପାଇଛନ୍ତି, ସେପରିଭାବେ ପୂର୍ବରୁ କେବେ ସେ ପାଇ ନ ଥିଲେ –

"ତୁମକୁ ପାଇ ନାହିଁ/
ତୁମକୁ ହରେଇବାର/
ଯେତେ ଯେତେ ଯାତନା ଭୋଗିଛି ।" (ପୃଷ୍ଠା–୮୩)

ଅହଲ୍ୟା ଯେତେ ଯେତେ ପ୍ରଶ୍ନ ବା ପ୍ରତିବାଦ କରିଥା'ନ୍ତେ, ଆଜି ସେସବୁକୁ ଗୌତମ ସ୍ମରଣ କରୁଛନ୍ତି – ଅହଲ୍ୟାଙ୍କ ଉକ୍ତି –

"ମୋପାଇଁ ଆକାଶ ଖୋଲା, ଦ୍ୱାର ଖୋଲା/
ଖୋଲା ଯେତେ ରାସ୍ତା ଚରାଚର/
ଚାବି, ତାଲା ହାତେ ମୋର ଦେଇ/
ତୁମେ କେଉଁ ଦ୍ୱାର ବନ୍ଦ କର ?" (ପୃଷ୍ଠା–୮୭)

ଏହି ଉକ୍ତି ଅହଲ୍ୟାଙ୍କ ନାରୀତ୍ୱର ସ୍ୱାଧୀନ-ଚେତନାକୁ ବ୍ୟକ୍ତ କରିଛି, ଯଦିଓ ତାଙ୍କ ଅବର୍ତ୍ତମାନରେ ଗୌତମ ବୁଝୁଛନ୍ତି, ବୁଝୁଛନ୍ତି ତାଙ୍କ ସନ୍ନ୍ୟାସୀ ଜୀବନର ଏହି ମହାର୍ଘ ଉପଲବ୍‌ଧିକୁ । ସନ୍ନ୍ୟାସୀ ଭାବରେ ତାଙ୍କର ପ୍ରଚଣ୍ଡ ଅହଂକାର ଥିଲା; କିନ୍ତୁ ପ୍ରେମିକ ଓ ପତି ଭାବରେ ତାଙ୍କର ଯେଉଁ ଊଣାପଣ ଥିଲା, ତାହା ଏବେ ପୂର୍ଣ୍ଣ ହେବାରେ ନିରତ । ଏହି ପ୍ରେମିକ ଓ ପତିପଣକୁ ସାର୍ଥକତା ପଥରେ ଅଗ୍ରଗାମୀ କରାଇବାକୁ କବି ଶ୍ରୀ ଭୂୟାଁଙ୍କ କଳ୍ପନାଶକ୍ତି ଓ ଭାଷାଚାତୁରୀ ସକ୍ରିୟ ହୋଇଉଠିଛି ।

ଅହଲ୍ୟା ଓ ଇନ୍ଦ୍ରଙ୍କ ସହବାସ ସମ୍ୱନ୍ଧରେ ଏକାଧିକ ମତ ରହିଛି । ଯଦିଓ ବାଲ୍ମୀକି ରାମାୟଣର ମତ ପ୍ରଥମରୁ ଉଦ୍ଧାର କରାଯାଇଛି । ଏକଥା ବି ପ୍ରକ୍ଷିପ୍ତ ଯେ, ଅହଲ୍ୟା ଅଜ୍ଞାତସାରରେ ଛଦ୍ମବେଶୀ ଇନ୍ଦ୍ରଙ୍କୁ ଗୌତମ ମନେକରି ମିଳନରେ ଲିପ୍ତ ରହିଥିଲେ । ତେବେ ଏହି କବିତା ସଙ୍କଳନଟି ଏସବୁ ମତାମତର ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ । ଉପରୋକ୍ତ ମତାମତ ଏଠାରେ ନଗଣ୍ୟ ଓ ଏହା ଆଦୌ ପ୍ରାସଙ୍ଗିକ ହୋଇ ନାହିଁ ଗୌତମଙ୍କ ଦୃଷ୍ଟିରେ । ବା ଅନ୍ୟ ଅର୍ଥରେ, ଏସବୁ ମତାମତ ତୁଚ୍ଛ ଓ ଅସାର । ପ୍ରେମ ଓ ନାରୀତ୍ୱର ଉଜ୍ଜ୍ୱଳତା ଏକ ଉତ୍ତୀର୍ଣ୍ଣ ଅନୁଭବ । ପ୍ରେମୀ ମାତ୍ରେ ଏହା ଉପଲବ୍‌ଧି କରିଥାଏ । ତେଣୁ ନୂତନତ୍ୱରେ ଅଭିଷିକ୍ତ ପ୍ରେମିକ ଗୌତମଙ୍କ କଣ୍ଠରେ କବି ଉଚ୍ଚାରଣ କରନ୍ତି –

> "ଇନ୍ଦ୍ରଙ୍କୁ ତୁମେ ଦେହ ଦେଇନା/
> ଦେଇଛ ମତେ ଗୋ ଆଖି/
> କୋଟି ତପସ୍ୟାର ପୋଡ଼ା ପାଉଁଶରୁ/
> ଖୋଜି ମୁଁ ପାଇଛି ମୁକ୍ତି ।"/ (ପୃଷ୍ଠା – ୯୯)

ତପସ୍ୟାର ପୁଣ୍ୟଠାରୁ ପ୍ରେମର ବିଦଗ୍ଧତା ହିଁ ଶ୍ରେୟସ୍କର । ଏହା ଗୌତମଙ୍କ ଜୀବନରେ ଆଚରିତ ହୋଇଛି । 'ଦୋଷୀ' ପୁସ୍ତକଟିରେ ପ୍ରେମ ଯେ ମଣିଷକୁ, ପୁଣି ସଂସାରବିରାଗୀ ତପସ୍ୱୀକୁ ମାନବିକତାରେ ଋଦ୍ଧିମନ୍ତ କରିପାରେ, ଏହା ଚିରକାଳୀନ ସତ୍ୟରୂପେ ପ୍ରତିଷ୍ଠିତ ହୋଇଛି । ମାତ୍ର ଗୋଟିଏ ଗୋଟିଏ ଅନୁଭବର ପୁନରାବୃତ୍ତି ଘଟିଛି – ତାହା ହୁଏତ ଅଧିକ ହୋଇଯାଇଛି । ପ୍ରେମ-ପାଗଳ ବ୍ୟକ୍ତି ତ ! ଏଠାରେ ପ୍ରେମ ଓ ନାରୀତ୍ୱର ଏକ ମୁକ୍ତ ସ୍ୱାଧୀନ ବିଚାରର ନିରପେକ୍ଷ କାବ୍ୟିକ ବୟାନ ନିଶ୍ଚୟ ଏକ ନୂତନ-ଅବବୋଧର ପରିସ୍ଫୁରଣ ଘଟାଇଛି ।

❑❑❑

## 'ନଈ' ପ୍ରବହମାନ ସଂପର୍କର ପ୍ରତୀକ
## ପ୍ରଥମ ସଂକଳନ – 'ଆଉ କେବେ କୁହନି ସେକଥା'
## ଦ୍ୱିତୀୟ ସଂକଳନ – 'ମୋ ଝର୍କାରୁ ଦିଶେ ନଈ'
## କବି–ବିଜୟଲକ୍ଷ୍ମୀ ପରିଡ଼ା

ଶବ୍ଦର ନିକଟତମ ଅର୍ଥକୁ ଫିଙ୍ଗିଦେବା ଓ ନୂଆ ଭାବରେ ତା'ର ଅର୍ଥନ୍ୟାସ କରିବା – କବି ଚେତନାର ଏକ ଚିରନ୍ତନ ସମସ୍ୟା । ସେଥିନିମିତ୍ତ କବିର ବ୍ୟାକୁଳତା ତଥା ଅନ୍ୱେଷଣର ଅନ୍ତ ନାହିଁ । ଏହାକୁ ଶବ୍ଦ-ପ୍ରେମ କହିହେବ ହୁଏତ । ଏଥିରେ ଜିତାପଟ ନେବା କଷ୍ଟକର । ବସ୍ତୁସର୍ବସ୍ୱ ଏ ଜଗତରେ ଏକ ସାଧନାର ଭୂମି ଗଢ଼ିତୋଳିବା କଦାପି ସହଜ ନୁହେଁ । ତଥାପି, କବିଟିଏ ସେ ଦିଗରେ ଅଗ୍ରସର ହୋଇଥାଏ । ସେଥିରେ କେତେ ଭାଗ ସଫଳତା ଓ ବିଫଳତା, ତାହା କବି ନିଜେ ନିର୍ଣ୍ଣୟ କରିପାରେନା । ଏହି ପରିପ୍ରେକ୍ଷୀରେ କବିର ପ୍ରଥମ ପ୍ରକାଶିତ କବିତା ପୁସ୍ତକକୁ ସ୍ୱୀକୃତି ଦେବା, ତହିଁରେ ସମ୍ଭାବନାର ସ୍ୱାକ୍ଷରକୁ ଆବିଷ୍କାର କରିବା, ଏକ ସହଜ କର୍ମ ନୁହେଁ ।

ଉପରୋକ୍ତ ଦୁଇ ଗୋଟି ସଂକଳନରେ 'କବିତା', 'ଶବ୍ଦ', 'ପ୍ରେମ', 'ନଈ', 'ଦୂରତା' ଓ 'ଶୂନ୍ୟତା' ଆଦି ଶବ୍ଦ ବହୁଭାବରେ ବ୍ୟବହୃତ । ଓଡ଼ିଆ କବିଗଣ, ନାରୀଗଣ, 'ଝର୍କା'କୁ ଆଧାରକରି ସେମାନଙ୍କ ଆବେଗାନୁଭୂତିର କାବ୍ୟିକ ବିଶ୍ଳେଷଣ କରିଥିବାର ପୂର୍ବରୁ ନଜିର୍ ରହିଛି । କବି ବିଜୟଲକ୍ଷ୍ମୀଙ୍କ ପ୍ରଥମ କବିତା ସଂକଳନକୁ ମୁଁ 'ଇସ୍ତାହାର' ପତ୍ରିକାରେ ସମୀକ୍ଷା କରିଥିଲି । ସେତେବେଳେ 'ଇସ୍ତାହାର'ର ସଂପାଦନାରେ ମୁଁ ସଂପୃକ୍ତ ଥିଲି ଓ ନିର୍ଣ୍ଣୟ ନେଇଥିଲି ଯେ, କବିମାନଙ୍କ ପ୍ରଥମ କବିତା ସଂକଳନକୁ ସମୀକ୍ଷା କରାଯିବ ଓ ମୁଁ କରିବି ପତ୍ରିକାର ପ୍ରତି ସଂଖ୍ୟାରେ । ସେଥିପାଇଁ ସେ ସଂଖ୍ୟା ନିମିତ୍ତ ଯେଉଁ ପ୍ରଥମ ସଂକଳନଗୁଡ଼ିକ ପ୍ରାପ୍ତ ହୋଇଥିଲି, ତା' ମଧ୍ୟରୁ ଏଇଟି 'ଆଉ କେବେ କୁହନି ସେକଥା' ମୋତେ ସବୁଠାରୁ ଭଲ ଲାଗିଥିଲା । ତେବେ ଯା' ଭିତରେ ଦୀର୍ଘ ଚଉଦ ବର୍ଷର ବ୍ୟବଧାନ । ସେତେବେଳେ ମୋର ସେ କବିତା ସମୀକ୍ଷାରେ ତତ୍ତ୍ୱପ୍ରକାଶ ବା ପ୍ରମାଣର ଅଭିପ୍ରାୟ ନ ଥିଲା, ଥିଲା କବିତା ପ୍ରତି ପାଠକୀୟ ଶ୍ରଦ୍ଧା, ଆଜି, – ଏଠାରେ ମଧ୍ୟ ମୁଖ୍ୟ ଅଭିପ୍ରାୟ ସେହି ଶ୍ରଦ୍ଧା ହିଁ ।

ଉପରୋକ୍ତ ଦୁଇଟିଯାକ କବିତା ସଂକଳନ ପ୍ରେମକୁ ନିର୍ଣ୍ଣୀତ କରିଛି । ପ୍ରଥମଟିରେ କାବ୍ୟନାୟିକାର ସ୍ୱର ଥିଲା ଦୃଢ଼ତାରେ ଦୃପ୍ତ । ନାରୀତ୍ୱର ଦମ୍ଭୋକ୍ତି ପ୍ରକଟିତ ହୋଇଥିଲା । ଦ୍ୱିତୀୟଟିରେ ଏହି ସ୍ୱର ବର୍ତ୍ତମାନ ବ୍ୟାକୁଳତା ଜର୍ଜର- ସ୍ୱାଭିମାନ ଭିତରକୁ ଧସେଇ ପଶିଛି ଅନ୍ତର୍ବେଦନା । ପ୍ରେମାସ୍ପଦ ଦୂରରେ, ଏବେ ସ୍ମୃତିରେ ସଂଜୀବିତ ମାତ୍ର- ଜୀବନ୍ତ ଚାକ୍ଷୁଷ ସେ ପ୍ରେମିକଙ୍କର ନିବେଦନ । ଏଠାରେ ପ୍ରେମାସ୍ପଦ ସର୍ବଦା ଏକ ପୁରୁଷ ହୋଇ ନ ପାରନ୍ତି, ହୋଇପାରନ୍ତି ବି ଈଶ୍ୱର । ନାରୀର ନିବିଡ଼ ଭାବାବେଗର ସ୍ରୋତପାଇଁ ଯେବେ ପୁରୁଷର ଆଧାର ଯଥେଷ୍ଟ ହୁଏନା, ଏହି ବିପୁଳତା ସେତେବେଳେ ଈଶ୍ୱରଙ୍କ ଦିଗକୁ ପ୍ରଧାବିତ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ବିଜୟଲକ୍ଷ୍ମୀଙ୍କ ନାରୀସତ୍ତା ଓ କବିସତ୍ତାରେ ଅବରୁଦ୍ଧ ଅସ୍ତିତ୍ୱକୁ ବାରମ୍ବାର ଭେଟିବାକୁ ହୁଏ – ଝର୍କା, କବାଟରୁଦ୍ଧ ବଖରା, ତଥାପି ଜହ୍ନ, ତାରା, ଫୁଲଗଛ ଓ ପବନ ତାଙ୍କୁ ଅହରହ ଉଚ୍ଚାଟ କରୁଥାଆନ୍ତି । ଚେତନା ବ୍ୟାକୁଳ ହୁଏ, ପ୍ରତୀକ୍ଷାରତ ରହନ୍ତି ସେ । ଗୋଟି ଗୋଟି ସ୍ମୃତିକୁ ଆଙ୍ଗୁଳିରେ ଉଠାଇ ସାମ୍ନାକୁ ଆଣନ୍ତି, ବିଭୋର ହୁଅନ୍ତି । ତାଙ୍କର ଉଚ୍ଚାରିତ ପ୍ରେମଭାବ ଅନେକତ୍ର ଇନ୍ଦ୍ରିୟକୁ ଅତିକ୍ରମ କରିଯାଏ । ତେବେ କେଉଁଠି କେଉଁଠି ଗଭୀର ଇନ୍ଦ୍ରିୟାସକ୍ତିର ଚିହ୍ନ ସୁପ୍ରେକ୍ଷ୍ୟ ହୁଏ । କିନ୍ତୁ ଏପକ୍ରାର ଇନ୍ଦ୍ରିୟାଶ୍ରୟିତା ଓ ମିଳନର ସ୍ମୃତି ସୂଚନାତ୍ମକ ଭାବେ ଉଚ୍ଚାରିତ ହୁଏ । ମନେହୁଏ ଶରୀର ଗୌଣ, ହୃଦୟର ବନ୍ଧନ, ସ୍ମୃତିର ପୀଡ଼ନ ହିଁ ମୁଖ୍ୟ । ସଂପର୍କର ଗୋପନୀୟତା ରକ୍ଷା କରିବାକୁ ସେ ଆଗ୍ରହୀ । ବାସ୍ତବରେ ଗୋପନୀୟତା ହିଁ ପ୍ରେମକୁ ମଧୁର କରିଥାଏ । ସର୍ବସାଧାରଣରେ ଦୈହିକ ମିଳନର ଉଚ୍ଚାରଣ କାବ୍ୟିକ ହୋଇ ନ ପାରେ, ମାଧୁର୍ଯ୍ୟ ହୁଏତ ନଷ୍ଟ ହୋଇଥାଏ । ଜଣେ ପ୍ରଖ୍ୟାତ କବି କହିଛନ୍ତି – "Love is a pleasure. when it is a secret, it ceases to be a pleasure when it ceases to be a secret."

ଏତାଦୃଶ ପ୍ରେମରେ ଆକଣ୍ଠ ବୁଡ଼ିରହିଥିବା କାବ୍ୟନାୟିକା ନିନ୍ଦାପବାଦ ସହନ୍ତି । ତାଙ୍କର ସ୍ପଷ୍ଟ କାବ୍ୟୋକ୍ତି ଦେଖାଯାଉ – "ପୁରୁଷଙ୍କ ଅଭିଧାନ ଯେବେ ଯୁକ୍ତି ବାଢ଼େ । ଭଲପାଇବାରେ ଚରିତ୍ର ହଜିଯାଏ / ତେବେ ତ ମୁଁ କହିବି / ସବୁ ନାରୀ ଚରିତ୍ରହୀନା ।" (୧ମ ସଂକଳନ) ତାଙ୍କର ଏହି ସ୍ୱାଭିମାନ ନାରୀବାଦଜନିତ ନୁହେଁ, ଅନୁଭବପ୍ରସୂତ । ମୋ ମତରେ 'ବାଦ'କୁ ନେଇ ରଚିତ ସାହିତ୍ୟ କଳାତ୍ମକତା ହରାଇବାର ପ୍ରମାଦକୁ ଭେଟିଥାଏ । ବିଜୟଲକ୍ଷ୍ମୀଙ୍କ କବିତା ପାଠକକୁ ଘେନିଯାଏ ନିର୍ଜନ ନଈବାଲିକୁ, ବରଗଛ ମୂଳକୁ, ଫୁଲବଣ ଓ ଚନ୍ଦ୍ରାଲୋକର ବିସ୍ତାରକୁ । ତାଙ୍କ ପ୍ରେମସମ୍ପର୍କକୁ ସେ ବର୍ଷା ଛିଟିକା ମଧ୍ୟରେ ପ୍ରତୀକିତ କରିଛନ୍ତି –

ସେ ବର୍ଷା, ଫୁଲ ପରି, ସ୍ୱପ୍ନ ପରି, ଶବ୍ଦ ପରି, ପ୍ରାର୍ଥନା ପରି – ଉଲ୍ଲାସ ଓ ଆଶ୍ୱାସ ପ୍ରଦାୟୀ । ତାହା ବନ୍ୟା ସୃଷ୍ଟି କରେ ନାହିଁ କି ଭସାଇ ନିଏ ନାହିଁ – ଆଂଶିକ ସିକ୍ତ କରିପକାଏ ମାତ୍ର । ତାହା ମଧ ଦୀର୍ଘାୟୁ ନୁହେଁ । ପ୍ରତ୍ୟେକ ସତ୍ ପ୍ରେମିକା ପରି ସେ କଳଙ୍କକୁ ବିନା ପ୍ରତିବାଦରେ ଆପଣାର କରିନିଅନ୍ତି । ତାଙ୍କର ଏହି ଉକ୍ତି ଅହଂକାର ସହ ରସିକତାକୁ ମଧ ଅଭିବ୍ୟଂଜିତ କରେ – "କଳଙ୍କ ବିନା ସୁନ୍ଦରୀ, ସୁନ୍ଦରୀ ହୁଏନି ।"

ତାଙ୍କ ପ୍ରେମାବେଗର ସ୍ମୃତି ଓ ସ୍ୱରୂପ ଏହିପରି – ତାହା ଏକଦା ଥିଲା, ଆଜି ନାହିଁ । 'ପୁରୁଷ ରଜାପୁଅ ଓ ନାରୀ ଦୂରଦେଶୀ ପରୀ ।' ଉଭୟଙ୍କ ମଧରେ ଆସେ ପୁଣି ସାଧାରଣ ପ୍ରଶ୍ନବାଚୀ "ମୁଁ ତୁମର କିଏ ?", "ତୁମେ ମୋର କିଏ କି ?" ଯୁଗ ଯୁଗର ଯେ ପ୍ରଶ୍ନ – ପ୍ରେମୀ ହୃଦୟର । 'କିଏ', ଅର୍ଥାତ୍ ସାଧାରଣ, ସାଂସାରିକ ପରିଚୟର ସୀମା ଭିତରେ ତାହା ଧୃତ ନୁହେଁ – ନାମିତ ହୋଇପାରିବ ନାହିଁ କଦାପି । ସେଠାରେ ରହିଛି ଉତ୍ସର୍ଗିତ ରାଧାଭାବ । କେଉଁ ସତ୍‌ପ୍ରେମିକାଟିଠାରେ ଅବା 'ରାଧାଭାବ' ନାହିଁ ! 'ସ୍ୱକୀୟା', 'ପରକୀୟା' ଶବ୍ଦ ଏଠାରେ ମୁଁ ନେଉ ନାହିଁ – କାରଣ ନାରୀ 'ପତ୍ନୀ' ହୋଇଗଲେ, କାହାର କିଣା ଖର୍ଦ୍ଦି ସ୍ୱକୀୟା ପାଲଟିଯିବାରେ ମୁଁ ବିଶ୍ୱାସ କରେ ନାହିଁ । କିନ୍ତୁ ବିବାହ–ବହିର୍ଭୂତ ଏହି ପ୍ରେମସମ୍ପର୍କ କିପରି କ୍ଷଣସ୍ଥାୟୀ କବି ମୂଳରୁ ବୁଝିସାରିଛନ୍ତି । ଯଦିଓ ଏହି ପ୍ରେମ ସ୍ମୃତିରେ, ସ୍ୱପ୍ନରେ, କଳ୍ପନାରେ ସଂଜୀବିତ, ବାସ୍ତବରେ ତାହା ଅଳ୍ପାୟୁ ।

ମୋ ମତରେ, ଘାସପତ୍ର ଉପରର ଉଜ୍ଜ୍ୱଳ କାକର ବୁନ୍ଦା ପରି ଏହି ପ୍ରେମ । ଥରେ ତଳକୁ ଖସିପଡ଼ିଲେ ତାକୁ ଆଉ ଉଠାଇ ଘାସପତ୍ରଠାରେ ରଖିହୁଏ ନାହିଁ । ଆଉ କାକରବୁନ୍ଦାର ଆୟୁଷକୁ ବା କିଏ ନ ଜାଣେ ? ତେଣୁ ନିଜର ବ୍ୟାକୁଳତାକୁ ନିଜ ଭିତରେ ସମାହିତ କରିନିଅନ୍ତି କବି । ବୁଝାଇଦିଅନ୍ତି – "ଆଜି ପରେ ଗର୍ବ କରିବାନି/ ଦୁହେଁ ଦୁହିଁଙ୍କର ଚିହ୍ନାଥିଲେ/ ଖେଳୁଥିଲେ ମିଛିମିଛି/ପ୍ରଣୟର ଲୁଚକାଳି ଖେଳ ।"

ତାଙ୍କ କବିତାରେ 'ନଈ' – ପ୍ରବହମାନ ସଂପର୍କର, ଭଲପାଇବାର ଓ ହରାଇବାର ପ୍ରତୀକ – ଗୋଟେ ପଟେ ତା'ର ଦୀର୍ଘ ବିସ୍ତାର, ଅପରପଟେ ତା'ର ଅଟକି ନ ଯିବାର ଅଲଂଘ୍ୟ ସତ୍ୟ, ପୁଣି ତୀବ୍ର ଛଳ । ବିଜୟଲକ୍ଷ୍ମୀ ଏକ ମରମୀ ସ୍ୱର – ସେ ଦୂରରେ ଥିଲେ ବି ଭୌଗୋଳିକ ଦୂରତାକୁ ପରାସ୍ତ କରି, ସୃଜନକର୍ମରେ ବ୍ୟାପୃତ ରହିବେ – ମୁଁ ଆଶା କରୁଛି । ନୂତନ ସଂକଳନର ଶୁଭଜନ୍ମଦିନରେ ମୋର ଶୁଭେଚ୍ଛା ।

# କବି ଡକ୍ଟର ପ୍ରତିଭା ଶତପଥୀଙ୍କ
# କୃତି ଓ କୃତିତ୍ୱ

ଠିକଣା :

୧, ଗ୍ରୀନ୍ ପାର୍କ
ପଟିଆ ଷ୍ଟେସନରୋଡ୍
ପୋ : କିଟ୍
ଭୁବନେଶ୍ୱର – ୨୪
ଦୂରଭାଷ – ୯୪୩୮୩୦୫୨୨୪, ୨୭୨୫୩୫୨

## କୃତି

(କ) କାବ୍ୟକବିତା

- ଅସ୍ତୁଜନ୍ମର ଏଲିଜି (୧୯୬୯)
- ଗ୍ରସ୍ତ ସମୟ (୧୯୭୪)
- ସାହାଡ଼ା ସୁନ୍ଦରୀ (୧୯୭୮)
- ନିୟତ ବସୁଧା (୧୯୮୦)
- ନିମିଷେ ଅକ୍ଷର (୧୯୮୫) – ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୮୬ ପୁରସ୍କାରପ୍ରାପ୍ତ ସଂକଳନ ।
- ମହାମେଘ (୧୯୮୮)
- ଶବରୀ (୧୯୯୧) – ଇମ୍ପା ଶିଳ୍ପଗୋଷ୍ଠୀ ପ୍ରଦତ୍ତ ଶାରଳା ପୁରସ୍କାର ପ୍ରାପ୍ତ, ୧୯୯୨ ।
- ତନ୍ମୟ ଧୂଳି(୧୯୯୬) – କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ, ୨୦୦୧ ।
- ଅଧା ଅଧା ନକ୍ଷତ୍ର (୨୦୦୧) – କର୍ଣ୍ଣାଟକର ଏନ୍.ଏନ୍.ଥିରୁମଲାମ୍ବା ଜାତୀୟ ପୁରସ୍କାରପ୍ରାପ୍ତ, ୧୯୯୯ ।
- କହି ନ ହେଲେ (୨୦୦୬) – • 'ତୁମପାଇଁ ଥରେ, ସବୁ ଥର (୨୦୧୧)

(ଖ) ନିବନ୍ଧ/ପ୍ରବନ୍ଧ/ରମ୍ୟଗଳ୍ପ/ଭ୍ରମଣକାହାଣୀ/ ଜୀବନୀ/ଆତ୍ମଜୀବନୀ/ସମାଲୋଚନା

- କଳ୍ପନାର ଅଭିଷେକ (୧୯୮୦, ୧୯୯୮)
- ସ୍ପନ୍ଦନର ଭୂମି (୧୯୯୩)
- ପ୍ରତିଫଳନ (୧୯୯୩)
- ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ (୧୯୯୯, ୨୦୦୬) (ଭାରତୀୟ ସମାଲୋଚକ ମଣ୍ଡଳୀ ପୁରସ୍କାରପ୍ରାପ୍ତ)
- ଭାରତମାତାର ଲୁହ (୨୦୦୨)

- ବର୍ତ୍ତୁଳ ଭୋଗପୁର ଭ୍ରମଣ କାହାଣୀ (୨୦୦୪)
- ସ୍ୱର୍ଗତା ସରଳାଦେବୀଙ୍କ ଜୀବନୀ (୨୦୦୮) ଏନ୍.ବି.ଟି.ଦ୍ୱାରା ପ୍ରକାଶିତ
- ଶୈଶବରୁ ସଂସାର (ଆତ୍ମକଥା) ୨୦୦୮/୨୦୧୩
- ନାରୀ ଅସ୍ତିତ୍ୱର ବାସ୍ତବତା : ବିବର୍ତ୍ତିତ ଓଡ଼ିଆ କବିତା (୨୦୦୯)

(ଗ) ଅନୁବାଦ

- ଅରଣା ସ୍ୱପ୍ନର ରାତି (ନୋବେଲପ୍ରାପ୍ତ ପର୍ଲ ବକ୍‌ଙ୍କ ଉପନ୍ୟାସ)
- କ୍ରୀତଦାସ (ନୋବେଲପ୍ରାପ୍ତ ଅଇଜାକ୍ ସିଙ୍ଗରଙ୍କ ଉପନ୍ୟାସ)
- ସାହସର ଶିଖା (ଚିଂଘିଜ୍ ଆଇତ୍‌ମାତଭଙ୍କ ଉପନ୍ୟାସ)
- ନଗର ମନ୍ଥନ (ଡୋଗ୍ରୀ ଉପନ୍ୟାସ, 'ସାରଥି'ଙ୍କର
  କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ)
- କହ୍ଲଣ ଚରିତ (କାଶ୍ମୀରୀ ମନୋଗ୍ରାଫ୍ କେନ୍ଦ୍ର ସାହିତ୍ୟ ଏକାଡେମୀ
  ଆନୁକୂଲ୍ୟରେ)
- ଭିନ୍ନଦେଶୀର ମୁହଁ (ଲାଟ୍‌ଭିଆନ୍ କବିତାର ଅନୁବାଦ)
- ସୁବ୍ରମଣ୍ୟ ଭାରତୀ (ଏନ୍.ବି.ଟି. ଆନୁକୂଲ୍ୟରେ)

ସଂପାଦନା

ରୁଚିପୂର୍ଣ୍ଣ ଅଭିନବ ଓଡ଼ିଆ କବିତା ପତ୍ରିକା 'ଉଦ୍‌ଭାସ'ର ୨୦୦୩ ଠାରୁ ନିୟମିତ ସଂପାଦନା ।

## କୃତିତ୍ୱ

(କ)୧. ପ୍ରଜାତନ୍ତ୍ର ଯୁବକବି ପୁରସ୍କାର, ୧୯୬୨
୨. ବିଷୁବ କବିତା ପୁରସ୍କାର, ୧୯୮୧
୩. ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୬
୪. କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ୨୦୦୧
୫. କର୍ଣ୍ଣାଟକର ଏନ୍.ଏନ୍.ଥିରୁମଲାମ୍ବା ଜାତୀୟ ପୁରସ୍କାର, ୧୯୯୯ (୨୦୦୧ରେ ପ୍ରଦତ୍ତ)
୬. କ୍ରିଟିକ୍ ସର୍କଲ ଇଣ୍ଡିଆ ପୁରସ୍କାର ୧୯୯୬
୭. SBI କବିତା ପୁରସ୍କାର
୮. SAIL କବିତା ପୁରସ୍କାର
୯. J. K. Paper କବିତା ପୁରସ୍କାର
୧୦. ନାଲ୍‌କୋ କବି ସମ୍ବର୍ଦ୍ଧନା
୧୧. କବି ସୁଭଦ୍ରା କୁମାରୀ ଚୌହାନ କବିତା ସମ୍ମାନ (୨୦୦୭) (ଜାତୀୟ ହିନ୍ଦୀ ଏକାଡେମୀ, କଲିକତା ଓ ଏଚ୍.ଆର୍.ଡି ବିଭାଗ ନୂଆଦିଲ୍ଲୀର ମିଳିତ ଆନୁକୂଲ୍ୟରେ)
୧୨. ଉତ୍କଳ ସୂର୍ଯ୍ୟ ସମ୍ମାନ – ଏ.ଆର୍.ଏଫ୍. ତରଫରୁ (୨୦୦୮) ।
୧୩. କବି ସଚ୍ଚିରାଉତରାୟ କବିତା ସମ୍ମାନ ୨୦୦୮ – (ଖୋର୍ଦ୍ଧା ଲୋକଉତ୍ସବ ତରଫରୁ)

୧୪. ସାହିତ୍ୟ ପୃଥିବୀ ପୁରସ୍କାର – ୨୦୧୧, (ବହୁ ସାରସ୍ୱତ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧନା) ।
୧୫. ଗଙ୍ଗାଧର ରଥ ଫାଉଣ୍ଡେସନ (ସାହିତ୍ୟ ଭାରତୀ) ପୁରସ୍କାର – ୨୦୧୪) ।
୧୬. ଭୁବନେଶ୍ୱର ପୁସ୍ତକମେଳା ତରଫରୁ କବି ସଚ୍ଚିଦାନନ୍ଦ ରାଉତରାୟ ସମ୍ମାନ (୨୦୧୫)
୧୭. ବହୁ ସାରସ୍ୱତ ଅନୁଷ୍ଠାନ ତରଫରୁ ପୁରସ୍କାର ଓ ସମ୍ବର୍ଦ୍ଧନା

(ଖ) ଇଂରାଜୀ ଓ ଭାରତୀୟ ଭାଷାରେ ପ୍ରକାଶିତ କବିତାଗ୍ରନ୍ଥ

ହିନ୍ଦୀ

- ସମୟ ନହିଁ ହୈ : ଚୁନୀ ହୁଇ କବିତାଏଁ – ଅନୁ : ପଦ୍ମଶ୍ରୀ ଶ୍ରୀନିବାସ ଉଦ୍‌ଗାତା, ୧୯୯୪ ।
- ରାଧାକୃଷ୍ଣ ପ୍ରକାଶନ, ନୂଆଦିଲ୍ଲୀ ।
- ଶବରୀ – ଅନୁ : ପଦ୍ମଶ୍ରୀ ଶ୍ରୀନିବାସ ଉଦ୍‌ଗାତା, ୧୯୯୬, ବାଣୀ ପ୍ରକାଶନ, ନୂଆଦିଲ୍ଲୀ ।
- ଆଧା ଆଧା ନକ୍ଷତ୍ର – ଅନୁ : ଡଃ ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୨,
- ମେଧା ବୁକ୍ସ, ନୂଆଦିଲ୍ଲୀ ।
- ତନ୍ମୟ ଧୂଳି – ଅନୁ : ଡଃ ରାଜେନ୍ଦ୍ର ପ୍ରସାଦ ମିଶ୍ର, ୨୦୦୪/୨୦୧୪ କେନ୍ଦ୍ର ସାହିତ୍ୟ ଏକାଡେମୀ, ନୂଆଦିଲ୍ଲୀ ପ୍ରକାଶନ ।
- ତୁହ୍ମାରେ ଲିୟେ, ହର୍‌ବାର୍... ଯନ୍ତ୍ରସ୍ଥ, ବାଣୀ ପ୍ରକାଶନ ନୂଆଦିଲ୍ଲୀ

(a) **A Time of Rising** : Translated by : Jayanta Mohapatra, Pub : Har-Ananda Publication, New Delhi.
(b) **If Left Unsaid and other Poems** : Translated by : C.N. Swamy, Pub : Grassroots Publication, Indian Writer Series, Kolkata
(c) **Enchanted Dust** : Translated by : R.P. Samal, Pub : Central Sahitya Akademi, New Delhi.
(d) **Dhoor Kamni (Punjabi)** : Translated by : Dr. Vanita, Pub : Central Sahitya Akademi, New Delhi.
(e) **Magan Dhuli (Rajsthani)** : Translated by : Atul K. Sharma, Pub : Central Sahitya Akademi, New Delhi.
(f) **Tanmaya Dhulee (Telugu)** : Translated by : Prof. N. Gopi, Pub : Central Sahitya Akademi
(g) **Vasikkarikkum Dhoosi (Tamil)** : Translated by : Mrs. Madhumita, Pub : Central Sahitya Akademi, New Delhi.
(h) (କୋଂକଣୀ, (i) ମଲୟାଲମ, (j) ଗୁଜୁରାଟୀ, (k) ବଙ୍ଗଳା ଭାଷାରେ ତନ୍ମୟଧୂଳି ଅନୂଦିତ ହୋଇ ପ୍ରକାଶିତ)
(i) (ଅସମୀୟା, କନ୍ନଡ଼, ଓ ମରାଠୀ ଭାଷାମାନଙ୍କରେ କେନ୍ଦ୍ର ସାହିତ୍ୟ ଏକାଡେମୀ ତରଫରୁ ଅନୂଦିତ ହୋଇ ତନ୍ମୟଧୂଳି ପ୍ରକାଶୋନ୍ମୁଖୀ ।

---



ଯଶସ୍ୱିନୀ କବି ପ୍ରତିଭା ଶତପଥୀ ଭାରତୀୟ ସାହିତ୍ୟ କ୍ଷେତ୍ରରେ ଅନେକ ସମ୍ମାନ ଓ ପୁରସ୍କାରରେ ଅଭିଷିକ୍ତା ହୋଇଛନ୍ତି । ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ସେ କବିତା ରଚନାରେ ବ୍ୟାପୃତ ଥିଲେ ହେଁ ତାଙ୍କର ବିଶ୍ଲେଷଣାତ୍ମକ ଦୃଷ୍ଟିଟି ମଧ୍ୟ ପ୍ରମୁଖ ବିଶିଷ୍ଟତା ଦାବି କରେ । ୧୯୮୦ ମସିହାରୁ ଏଯାବତ୍ ସେ ରଚନା କରିଥିବା ଚାରିଗୋଟି କବିତା-ବୀକ୍ଷଣ ଗ୍ରନ୍ଥ ଉକ୍ତ ଉତ୍କର୍ଷର ପରିଚୟ ଦିଏ । ରଚନାତ୍ମକତାର ନିରୀକ୍ଷଣରେ ମନନଶୀଳତା, ରସବୋଧ, ଔଚିତ୍ୟର ସଂଯୋଗ ହେତୁ ଏହି ପୁସ୍ତକଗୁଡ଼ିକ ପାଠକଙ୍କୁ ମୌଳିକତାର ସ୍ୱାଦ ପରିବେଷଣ କରିଥାଏ । ଏ ସବୁଥିରେ ତତ୍ତ୍ୱ ବା ତଥ୍ୟର ଉଚ୍ଚଘୋଷ ଅନୁପସ୍ଥିତ । ଅଥଚ, ମର୍ମଜ୍ଞ କବି, ପାଠକ ଓ କାବ୍ୟରସିକ ବ୍ୟକ୍ତିଙ୍କ ନିକଟରେ ଏସବୁ ଆଲୋଚନାର ଆବେଦନ ପ୍ରଚୁର । ତାଙ୍କ ଆଲୋଚନାତ୍ମକ ଗ୍ରନ୍ଥଗୁଡ଼ିକର ଏକାଧିକ ସଂସ୍କରଣ ମଧ୍ୟ ପ୍ରକାଶ ପାଇସାରିଛି । ସେହି ଅନୁକ୍ରମରେ ସଦ୍ୟ ପ୍ରକାଶିତ 'କବିତାର ଉଦ୍‌ଭାସନ ଓ ନବ୍ୟାଲୋଚନା' ଗ୍ରନ୍ଥଟି କବିକର୍ମର ଅଭ୍ୟନ୍ତରକୁ ଉନ୍ମୋଚିତ କରିବ, କାବ୍ୟୋପଲବ୍ଧିକୁ ଶବଳିତ କରିବ - ଏହା ବିଶ୍ୱାସ କରାଯାଉ ।

ISBN 81-7411-960-4

ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
www.vidyapuri.com